# ଶ୍ରଦ୍ଧାଞ୍ଜଳି

ଆମକୁ ଛାଡ଼ି ଚାଲିଯାଇଥିବା କେତେକ ବ୍ୟକ୍ତିଙ୍କ ପ୍ରତି ନିବେଦନର ସନ୍ନିବେଶ ହେଉଛି 'ଶ୍ରଦ୍ଧାଞ୍ଜଳି'। ସେମାନଙ୍କ ଭିତରେ ଅଛନ୍ତି ଅନେକ ପ୍ରତିଷ୍ଠିତ ବ୍ୟକ୍ତି ପୁଣି ଅନେକ ସାଧାରଣ ମଣିଷ । କିନ୍ତୁ ପ୍ରତ୍ୟେକଙ୍କର ଜୀବନର ଏକ ଆବେଦନ ରହିଛି । ତାହାହିଁ ନିବେଦନ କରାଯାଇଛି ଲେଖା ଗୁଡ଼ିକରେ । ଏଗୁଡ଼ିକ ଜୀବନୀ ନୁହେଁ, ଜାତି ବା ଦେଶର ନିବେଦନ ମାତ୍ର ।

ଯେତିକି ସଂଗୃହୀତ ହୋଇଛି ସେଗୁଡ଼ିକ ଏହି ଖଣ୍ଡରେ ପ୍ରକାଶିତ ହୋଇଛି । ଅନ୍ୟ ଗୁଡ଼ିକର ସଂଗ୍ରହ ଚାଲିଛି । ସଂଗୃହୀତ ହେଲେ ପରବର୍ତ୍ତୀ ଖଣ୍ଡରେ ପ୍ରକାଶିତ ହେବ । ଅନେକ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପ୍ରତି 'ଶ୍ରଦ୍ଧାଞ୍ଜଳି' ତେଣୁ ଏଥିରେ ସ୍ଥାନ ପାଇପାରି ନାହିଁ ।

ମୁଖର ଭାବାବେଗରେ ଲେଖା ହୋଇଥିବାରୁ ମୂଳ ପାଣ୍ଡୁଲିପି ନ ପାଇଲେ ପୁନର୍ଲିଖିତ ଲେଖାରେ ମୂଳ ଲେଖାର ସ୍ୱାଦ ମିଳିବ ନାହିଁ । ତେଣୁ ପାଠକମାନଙ୍କୁ ଅଧିକ ଲେଖା ପାଇଁ ଅପେକ୍ଷା କରିବାକୁ ପଡ଼ିବ ।

ଲେଖକ ଏବଂ ଲେଖାର ସାଫଲ୍ୟ ହେଉଛନ୍ତି ପାଠକବୃନ୍ଦ । ବହୁ ପାଠକ ଏହି ଲେଖାଗୁଡ଼ିକର ଏକତ୍ର ସଂକଳନ ପାଇଁ ଅନୁରୋଧ ଜଣାଇଛନ୍ତି । ସେମାନଙ୍କର ଅନୁରୋଧ ରକ୍ଷା କରି 'ଦ'ମ୍ଳୁନଭର୍ସ' ଏଗୁଡ଼ିକ ପ୍ରକାଶ କରି ସେମାନଙ୍କ ଆଗରେ ବାଢ଼ି ଦେଉଛୁ ।

**ଶ୍ରଦ୍ଧାଞ୍ଜଳି**

ଲେଖକ :

**ଗିରିଜା ଭୂଷଣ ପଟ୍ଟନାୟକ**

ପ୍ରକାଶକ :
ଦ ଇନଷ୍ଟିଚିଉଟ ଅଫ୍ ଓରିଏଣ୍ଟାଲ ଏଣ୍ଡ ଓଡ଼ିଶାନ୍ ଷ୍ଟଡ଼ିଜ୍
ମୈତ୍ରୀ ସରଣୀ, କଟକ-୧

ମୁଦ୍ରଣ :
ଦ' ପ୍ରିଣ୍ଟୋଭର୍ସ, କଟକ-୧

ପ୍ରଥମ ପ୍ରକାଶ :
୧୯୯୪

ମୂଲ୍ୟ :
ଟ ୫୦-୦୦ ଙ୍କା

**SRADHANJALI**

*Written by :*

**Girija Bhusan Patnaik**

*Published by* :
The Institute of Oriental & Orissan Studies
Maitree Sarani, Cuttack-1

*Printed at :*
The Printoverse, Cuttack-1

*First Edition :*
1994

*Price :*
Rs. 50.00

# ଉତ୍ସର୍ଗ

ଯେଉଁମାନେ

ଆମ ଭିତରେ ଆଜି ନାହାନ୍ତି,

ଯେଉଁମାନଙ୍କ ପାଇଁ

ଏହି ଲେଖାଗୁଡ଼ିକ ନିବେଦିତ

ସେଇମାନଙ୍କର

ମହାନ୍ ସ୍ମୃତିରେ ।

# କୈଫିୟତ୍ କଥନ

ମୁଁ ଲେଖକ ନୁହେଁ । କଲମ ମୋର ପୋଷା ମାନ ନାହିଁ । ଆଜକୁ ଅନେକ ବର୍ଷ ତଳର କଥା । ଜଣେ କେହି ଗ୍ଲଲଗଲେ ସେମାନଙ୍କ ମୃତ୍ୟୁ ସଂବାଦ ଛଡ଼ା ଅନ୍ୟ କୌଣସି ନିବେଦନ, ଜାତି ବା ଦେଶ ତରଫରୁ ପ୍ରକାଶ ପାଉନଥିଲା । ବେଳେବେଳେ ମୋର ଗୁରୁଦେବ ଡାକ୍ତର ସଦାଶିବ ମିଶ୍ର ବା ସେଇଭଳି ଖୁବ୍ କମ ବ୍ୟକ୍ତି ଲେଖିଥିଲେ କେବେକେବେ । କଥାଟା ମୋତେ କମିତି ବାଧିଥିଲା । ଜଣେ ବ୍ୟକ୍ତି ତା'ଜୀବନକୁ ଶେଷ କରି ଦେଇଯିବ କୌଣସି ଏକ କାର୍ଯ୍ୟରେ ଅଥଚ ଜୀବଦଶାରେ ତ ତାଙ୍କୁ କେହି ସମ୍ମାନିତ କରିନ୍ତି କି ନାହିଁ ସନ୍ଦେହ, ଗଲା ପରେ ବି ପଦେ କେହି ଲେଖିବେ ନାହିଁ । ଖାଲି ଏକ ଲଣ୍ଡା ମୃତ୍ୟୁ ସମ୍ବାଦ ମାତ୍ର ତା'ର ପ୍ରତିଦାନ !

ଲେଖିଲି । ଲେଖିବାକୁ ଆରମ୍ଭ କଲି । କାଳକ୍ରମେ ସେଥିପାଇଁ ପ୍ରଶଂସା, ନିନ୍ଦା ଶୁଣିବାକୁ ପଡ଼ୁଛି । ବନ୍ଧୁ ଜଷ୍ଟିସ ଲିଙ୍ଗରାଜ ରଥ କହିଲେ "ତମେ ଓବିଚୁଆରିକୁ ଏକ ସାହିତ୍ୟରେ ପରିଣତ କରି ଦେଇଛ" । ପୁଣି ଅଧ୍ୟାପକ ଗ୍ରଧାନାଥ ରଥ କହିଲେ "ମୁଁ ମଲା ପରେ ତମେ କଣ ଲେଖିବ ସେଇଟା ଆଗରୁ ଲେଖିଦେଲେ ମୁଁ ଦେଖି ଯାଆନ୍ତି" ।

ମୋ ପାଇଁ ମଧ୍ୟ ଲେଖିବ —ଏଇଭଳି ଅନୁରୋଧ ବହୁ ଲୋକଙ୍କଠାରୁ ଶୁଣିଛି । ଅଧା ହସ, ଅଧା ଲୁହର କଥା । ବିୟୋଗାନ୍ତ ଲେଖାପାଇଁ ତଥାକଥିତ ସୁନାମ ଲାଭ କରିଛି । କିଏ ଜଣେ ଗ୍ଲଲଗଲେ, ଲୋକେ ତା' ଆରଦିନ ପଗ୍ଲରନ୍ତି, "କଣ ଆପଣଙ୍କ ଲେଖା ଏ ପର୍ଯ୍ୟନ୍ତ ଆମେ ପଢ଼ିଲୁ ନାହିଁ ?" ପୁଣି କିଏ କିଏ କହନ୍ତି, ଆମେ ଲେଖିଲେ ଲାଭ କଣ ? ଗିରିଜା ପଟ୍ଟନାୟକ ପାଖରେ ତ ସମସ୍ତଙ୍କର ଜୀବନୀ ରଖାଯାଇଛି !

କିନ୍ତୁ ପ୍ରକୃତରେ ଏଇ ଲେଖାଗୁଡ଼ିକ ଜୀବନୀ ଆଦୌ ନୁହେଁ । ସଂକ୍ଷିପ୍ତ ଜୀବନୀ ତ ପ୍ରତ୍ୟେକ ମୃତ୍ୟୁ ସମ୍ବାଦ ସହ ଗୁନ୍ଥା ହୋଇ ରହିଛି । ଏଗୁଡ଼ିକ ଶ୍ରଦ୍ଧା ନିବେଦନ ଓ ପ୍ରୀତି ମାତ୍ର ! ଏଥିରେ କୌଣସି ତାରିଖ ନାହିଁ, ଜନ୍ମ ତାରିଖ ନାହିଁ, ପରିବାର ବିଷୟରେ କିଛି ନାହିଁ, କେବଳ ଛାଡ଼ି ଯାଇଥିବା ବ୍ୟକ୍ତିର ଆମ ପାଇଁ ଅବଦାନର ଏକ ନିବେଦନ ମାତ୍ର ।

ସେଇଯୋଗୁଁ ଅନେକ ସମୟରେ ଖବର କାଗଜ ଅଫିସରେ ଲେଖା ପହଞ୍ଚିଲେ ଗୁଜ୍ଜରଣ ସୃଷ୍ଟି ହୁଏ । କଣ ଶବ ଶ୍ମଶାନକୁ ଯାଇ ନାହିଁ, ଲେଖା ପହଞ୍ଚିଗଲା ? ଠିକ୍ ସେଇପରି ପ୍ରଶ୍ନ ଶୁଣିବାକୁ ମିଳେ ମୃତ୍ୟୁର ଠିକ୍ ପରଦିନ, କଣ ଆମେ ଆପଣଙ୍କର ଲେଖା ଏପର୍ଯ୍ୟନ୍ତ ଦେଖିଲୁ ନାହିଁ ? କି ଅବସ୍ଥା କହିଲେ ?

ଏଇପରି ଲେଖା ନିସ୍ପନ୍ଦିତ ଲେଖୁ ଲେଖୁ ପ୍ରଶଂସା ନିଶ୍ଚୟ ମିଳିଛି । ୰ ଚକ୍ରଧର ମହାପାତ୍ରଙ୍କ ଉପରେ ଏକ ସଂକ୍ଷିପ୍ତ ଲେଖା ଲେଖି ଦେଇଥିଲି ଗ୍ରଧାନାଥ

ବାବୁଙ୍କ ଟେବୁଲ ପାଖରେ । ଲେଖାଟି ତାଙ୍କ ହାତକୁ ବଢ଼ାଇ ଦେଲି, ପ୍ରକାଶନ ପାଇଁ । ତାଙ୍କ ଆଖିରୁ ଲୁହ ବୋହିଲା ଲେଖାଟି ପଢ଼ି ।

"ପହିଲି ପାଳି ବୋଉ ଦେଲୁ ପଠେଇ,
ଯାଙ୍ଗରେ ଯାଇଥିଲେ ସାନ କକେଇ
ଅଧ ବାଟକୁ ବୋଲି ମୋ ନନା ଗଲେ,
ଝିଅ ଯାଉଛୁ ବୋଲି ମେଲାଣି ଦେଲେ ...."

ଅଜିତ ଝିଅ ପାଳି ନୁହେଁ । ଆଜି ନନାଙ୍କର ପାଳି, ନନାଙ୍କୁ ଯିବାକୁ ହେବ । ପହିଲି ପାଳି ନୁହେଁ, ଶେଷ ପାଳି.... ଏଇପରି କିଛି ଥିଲା ଲେଖା ।

ରାଧାନାଥ ବାବୁଙ୍କର ଆଖିର ଲୁହରେ ଲେଖାଟି ଭିଜିଗଲା । ଆଉ ଥରେ ଲେଖିବାକୁ ହେଲା ସତ୍ୟ । କିନ୍ତୁ ମୋ ଲେଖାର ଏହାଠାରୁ ବଡ଼ ସାଫଲ୍ୟ ଅଛି କେଉଁଠି ?

ଠିକ୍ ସେଇପରି ଡକ୍ଟର ମହତାବଙ୍କର ପରଲୋକ ଦିନ ହିଁ ମୋର ଲେଖା 'କଲେସସ୍‌ର ବିଦାୟ' ପ୍ରକାଶିତ ହେବାକୁ ଯାଇଥାଏ । ଅପରାହ୍ଣରେ ଦେଖା ହେଲା ଶ୍ରୀଯୁକ୍ତ ବାଙ୍କ ବିହାରୀ ଦାସଙ୍କ ସହିତ । ସେ କହିଲେ ଡକ୍ଟର ମହତାବଙ୍କୁ କେବଳ ବିଶେଷଣ ଦିଆ ଯାଇ ପାରେ—କଲୋସସ୍ ଏବଂ ମାର୍ତ୍ତଣ୍ଡ । ସଞ୍ଜରେ ବସିକୁ 'ସମାଜ' କାଗଜ ପଢ଼ୁଥିଲି । ଏ ଦୁଇଟି ଶବ୍ଦ ବ୍ୟବହାର ହୋଇଥିବା ଦେଖି ପ୍ରଶଂସାରେ ମୁଖର ହୋଇ ଉଠିଥିଲେ ।

ଗାଳି ବି ମିଳିଛି । ଦୁଃଖ ପ୍ରକାଶ କରି ଚିଠି ପାଇଛି ।

ମୋର ବନ୍ଧୁ ରଣଜିତ ମହାନ୍ତିଙ୍କର ପରଲୋକରେ ଲେଖିଥିବା ପ୍ରବନ୍ଧରେ ମୁଁ ତାଙ୍କର ଏକ ଉକ୍ତି ଉଲ୍ଲେଖ କରିଥିଲି । ବୁଢ଼ାଭାଇ (ରଣଜିତ୍) ଏହା କହିଥିଲା ଲୁଚି, ଗୋପରେ ନୁହେଁ । ସେଦିନ ଶ୍ରୀ ରବି ରାୟ ଓ ଶ୍ରୀ ଚନ୍ଦ୍ରମଣି ନାୟକଙ୍କର ଉପସ୍ଥିତିରେ ସେ ଏହା କହିଥିଲା ।

"ମଦ ଏବଂ ସିଗାରେଟ୍" ଏ ଦୁଇଟିକୁ ମୁଁ ଛାଡ଼ି ପାରିବି ନାହିଁ ଶେଷ ପର୍ଯ୍ୟନ୍ତ । କାର୍ଯ୍ୟ ସହିତ । ଏହି ଉକ୍ତି ଆମକୁ ମୁଗ୍ଧ କରିଥିଲା, ତାର ବଳିଷ୍ଠ ଦୃଷ୍ଟିକୋଣ ପାଇଁ । ମଦ ଓ ସିଗାରେଟ ଭଲ କି ଖରାପ, ସେ ସ୍ୱତନ୍ତ୍ର କଥା । କିନ୍ତୁ ଏହାକୁ ପାପ ବୋଲି ଆମେ ବିଚାର କରୁନା । ତେଣୁ ଏପରି ଉକ୍ତିର ଉଲ୍ଲେଖକୁ ମୁଁ ଭୁଲ ବୋଲି ଗଣନା କରିନଥିଲି ।

ଏଇ ଲେଖା ପ୍ରକାଶିତ ହେବା ପର ଦିନ ଓଡ଼ିଶାର ପ୍ରତିଷ୍ଠିତ ଲେଖକ ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ 'ସମାଜ' ସମ୍ପାଦକଙ୍କ ପାଖକୁ ଏକ ଚିଠି ଲେଖିଲେ ଏବଂ ତାହା ପ୍ରକାଶିତ ହେଲା । ମୃତ୍ୟୁ ପରେ ଜଣେ ବ୍ୟକ୍ତି ସମ୍ପର୍କରେ ଏପରି ଲେଖିବା ଭାରତୀୟ ପରମ୍ପରା ତଥା ସୌଜନ୍ୟତାର ବିରୋଧୀ ବୋଲି ସେ ମତ ଦେଇଥିଲେ ।

ରାଜ କିଶୋର ରାୟ ମୋର ସ୍କୁଲ ଶିକ୍ଷକ,କ୍ଲାସ ଟିଚର ଏବଂ କଲେଜରେ ମଧ୍ୟ ଅଧ୍ୟାପକ । ତାଙ୍କୁ ମୁଁ କଣ ଉତ୍ତର ଦେବି ? ଏହାଛଡ଼ା ଏହା କଣ ବାଦ ବିସମ୍ବାଦର ବସ୍ତୁ !

କିନ୍ତୁ ରାଧାନାଥ ବାବୁ ତ ଇମୋସନାଲ ବା ଭାବପ୍ରବଣ ଲୋକ । ପୁଣି ମନ୍ତବ୍ୟଟା ଆସିଛି ଜଣେ ଅଧ୍ୟାପକଙ୍କ ପାଖରୁ । ତେଣୁ ରାଧାନାଥବାବୁ 'ସମାଜ'ର ପ୍ରଥମ ପୃଷ୍ଠାରେ ଏଥିପାଇଁ ଦୁଃଖ ପ୍ରକାଶ କରି ଏକ ଲେଖା ଲେଖିଲେ ।

ଏହାର ସାରା ଦେଶ ବ୍ୟାପୀ ପ୍ରତିକ୍ରିୟା ମୋତେ ମୁଗ୍‌ଧ କଲା । ଶହ ଶହ ସଂଖ୍ୟାରେ ଚିଠି ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ପାଖରୁ ଆସିବାକୁ ଲାଗିଲା । ଲେଖାର ସମର୍ଥନରେ । ସେମାନଙ୍କ ଭିତରେ ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଢ଼ୀ, ଶ୍ରୀ ଭୁବନେଶ୍ୱର ବେହେରା, ଅଧ୍ୟାପକ ବିଧୁଭୂଷଣ ଦାସ ପ୍ରମୁଖଙ୍କ ନାମ ମନେ ପଡ଼ୁଛି । 'ସମାଜ' ଅଫିସରେ ଏବଂ ମୋ ପାଖରେ ସେ ଲେଖାସବୁ ଗଦା ହୋଇଗଲା । ମୋ ଲେଖା ସାର୍ଥକ ହୋଇଗଲା ।

ମୁଁ ଲେଖା ଲେଖିଦିଏ । କିନ୍ତୁ ଲେଖା କେବେ କିମିତି ଛପା ହେବ ତା'କଣ ମୋ ଉପରେ ନିର୍ଭର କରେ ? ଅଧ୍ୟାପକ ଶ୍ରୀରାମ ଚନ୍ଦ୍ର ଦାଶଙ୍କ ଉପରେ ଲେଖିଦେଲି କିନ୍ତୁ ଖବର କାଗଜ କର୍ତ୍ତୃପକ୍ଷ ସ୍ଥିର କଲେ ଯେ ଦଶାହ ଦିନ ସ୍ୱତନ୍ତ୍ର ସଂଖ୍ୟାରେ ଏହା ପ୍ରକାଶିତ ହେବ । ଏଣେ କିଛି ଲୋକଙ୍କ ଇଚ୍ଛା ଯେ ସେଇଦିନ କାହିଁକି ପ୍ରକାଶିତ ହେଲା ନାହିଁ ।

ପୁଣି ହୁଏତ ମୋର ସବୁ ଲେଖା ପ୍ରକାଶ ପାଇପାରି ନାହିଁ ନାନା କାରଣରୁ । ମୁଁ କାହାକୁ କହିବି ଏ ଦୁଃଖ । ଯାହାଙ୍କର ପ୍ରକାଶ ପାଇଲା ନାହିଁ, ତାଙ୍କ ଅଞ୍ଚଳର, ତାଙ୍କ ପରିବାରର ଦୁଃଖ । କିନ୍ତୁ କଣ କରିପାରିବି ମୁଁ ?

ଏହା ଛଡ଼ା ସମସ୍ତଙ୍କ କଥାତ ମୁଁ ଲେଖି ପାରିବି ନାହିଁ । ଆଗରୁ କହିଛି, ମୁଁ ଜୀବନୀ ଲେଖିନାହିଁ । ତାଙ୍କର ଜୀବନର ଯେଉଁ ବିଭବ ସମାଜକୁ ପୁଷ୍ଟ କରିଚି ସେଇଥିରୁ କିଛି ମୁଁ ବାଢ଼ି ଦେଇଛି ମାତ୍ର । ତେଣୁ ସେ ବ୍ୟକ୍ତି ସହିତ ପରିଚିତି ଏକାନ୍ତ ଆବଶ୍ୟକ । ଥରେ ଥରେ ଇମିତି ଅନୁରୋଧ ଆସିଛି ଯାହା ଶକ୍ତିର ବାହାରେ, କିନ୍ତୁ ହଁ ବି କହି ହୋଇ ନାହିଁ ।

ଲେଖା ଆରମ୍ଭ କରିଥିଲି କୋଡ଼ିଏ ବର୍ଷ ତଳେ କି ତା'ଠାରୁ ବେଶୀ ହେବ । କହିଛି, ସେତେବେଳେ କିଏ ରହିଗଲେ ବିସ୍ମୋରାନ୍ତ ଲେଖା ସେତେବେଳେ ପ୍ରକାଶ ପାଉନଥିଲା । ବର୍ତ୍ତମାନ ତା'ଆଉ ନାହିଁ । ମୋର ଲେଖା ସେ ଦୃଷ୍ଟିରୁ ସାଫଲ୍ୟ ଲାଭ କରିଛି । ବହୁ ବ୍ୟକ୍ତି ବର୍ତ୍ତମାନ ବିସ୍ମୋରାନ୍ତ ଲେଖା ଲେଖୁଛନ୍ତି । ମୋର ଆବଶ୍ୟକତା କମି ଯାଉଛି । ସେଇଥିରେ ମୋର ଆନନ୍ଦ । ଲକ୍ଷ୍ୟ ସଫଳ ହୋଇଛି । ସେଇ ଯଥେଷ୍ଟ ।

ଅନେକଙ୍କର ପ୍ରଶ୍ନ । ତମେ ଗଲାପରେ, ଏଭଳି ଲେଖା କିଏ ଲେଖିବ ଏବଂ ତମ ପାଇଁ କିଏ ଲେଖିବ ? ଏ ଦୁଇଟି ପ୍ରଶ୍ନର ଉତ୍ତର ମିଳି ଯାଇଛି । ବହୁ ବ୍ୟକ୍ତି ଲେଖିବାକୁ ବାହାରି ଆସିଲେଣି ।

କେତେ ଲେଖକଙ୍କ ପାଇଁ ଲେଖିଛି । ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ରାଧାନାଥ ରଥ, ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶଙ୍କର ଲେଖା ମୋତେ ଲେଖିବାକୁ ଶିଖାଇଛି । ଠିକ୍ ସେଇପରି ଶ୍ରୀ ମନମୋହନ ମିଶ୍ର, ଶ୍ରୀ ଗୁରୁଚରଣ ପଟ୍ଟନାୟକ, ୰ ଶ୍ରୀ ବଳଦେବ ଚନ୍ଦ୍ର ଦାସ, ଶ୍ରୀ ବନମାଳୀ ଦାସ ମୋତେ ଲେଖିବାକୁ ଅନୁପ୍ରାଣିତ କରିଛନ୍ତି ।

'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ଅକୁଣ୍ଠିତ ଚିତ୍ତରେ 'ସମାଜ' କାଗଜର ପୃଷ୍ଠା ଉନ୍ମୁକ୍ତ କରି ଦେଇଛନ୍ତି ମୋ ପାଇଁ । ନ ହେଲେ ଲେଖି ଛାପିଥାନ୍ତି କେଉଁଠି ?

ଏହି ସମସ୍ତ ଭିତରେ କେବଳ ଏଇପରି ଲେଖା ପାଇଁ ନୁହେଁ, ପ୍ରବନ୍ଧ ପାଇଁ ମଧ୍ୟ ଡକ୍ଟର ହରେକୃଷ୍ଣ ମହତାବ, ୰ ନବକୃଷ୍ଣ ଚୌଧୁରୀ ମୋତେ ଉତ୍ସାହିତ କରିଛନ୍ତି । ତାଙ୍କୁ ମୁଁ ଭୁଲି ପାରିବି ନାହିଁ ।

ସାପ୍ତାହିକ ପ୍ରଗତିବାଦୀର ପୃଷ୍ଠାତ ମୋ ପାଇଁ ରିଜର୍ଭ କରି ରଖିଥିଲେ ବନ୍ଧୁ ଶ୍ରୀ ପ୍ରଦ୍ୟୁମ୍ନ ବଳ ! ସେଇପରି 'ମରୁତୀର୍ଥ'ର ପୃଷ୍ଠାରେ ବିବିଧମାନ ଲେଖା ପାଇଁ ସ୍ୱର୍ଗତ ନଳିନୀ ଦେବୀ କେବେ କୁଣ୍ଠିତ ହୋଇ ନାହାନ୍ତି । ଯଦିଓ ସେତେବେଳେ ଶ୍ରୀ ନୀଳମଣି ରାଉତରାୟ ଓଡ଼ିଶାର ସରେଇ ସରକାରର ମନ୍ତ୍ରୀ । 'ସମ୍ବାଦ'ର ସମ୍ପାଦକ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ତ ମୋ ଉପରେ ଲେଖା ସହିତ ଅନ୍ୟ ଲେଖାର ଦାୟିତ୍ୱ ଲଦି ଦେଇଛନ୍ତି । ସେମାନଙ୍କର ଭୂମିକା ମୁଁ ଭୁଲି ପାରିବି ନାହିଁ । ଲେଖା କିଏ, ମୁଁ କିଏ ? ତଥାପି ଲେଖକ ଭାବରେ ଗଣ୍ୟ ହେବା ପାଇଁ ଆଗ୍ରହୀ !

ଥରେ 'ଜ୍ଞାନମଣ୍ଡଳ'ର ପ୍ରଥମ ଖଣ୍ଡ ଉନ୍ମୋଚନ କରି ଡକ୍ଟର ମହତାବ କହିଥିଲେ Enemy of good is better and not had : ଏଇ ଲେଖା ଗୁଡ଼ିକୁ ସଂଗ୍ରହ କରି ଛାପିବା ପାଇଁ ଅନେକ ବନ୍ଧୁ ଅନୁରୋଧ କରିଥିଲେ । ତାହା ଏପର୍ଯ୍ୟନ୍ତ ପୂରଣ ହୋଇପାରି ନଥିଲା । କାରଣ କେବେ ଲେଖକ ତାଲିକାରେ ମୋ ନାଁ ଉଠିବ ଏହା ମୋର ସ୍ୱପ୍ନରେ ନଥିଲା । ତେଣୁ ପାଣ୍ଡୁଲିପି କିଛି ରଖିନଥିଲି । ବର୍ତ୍ତମାନ ସଂଗ୍ରହ କରି କରି ଯେତିକି ମିଳିଛି ସେତିକି ପ୍ରକାଶ କରି ଦେଉଛି । ପରେ ବାକିତକ !

ପାଠକେ ଦୋଷ ତ୍ରୁଟି ଧରିବେ ନାହିଁ । ଜୀବନରେ ପରୀକ୍ଷା ଖାତାଠାରୁ ଆରମ୍ଭ କରି ଲେଖା ପର୍ଯ୍ୟନ୍ତ କୌଣସି ଲେଖାକୁ ପୁଣି ପଢ଼ି ସଂଶୋଧନ, ପରିବର୍ତ୍ତନ ଇତ୍ୟାଦି କରି ପାରି ନାହିଁ । ମୋର ସେଇଟା ଗୋଟାଏ ଦୋଷ । ଆଉ ଥରେ ପଢ଼ିବା ମାନେ ସେ ଲେଖା ଗଲା, ଆଉ ଥରେ ଲେଖ । ରିଭାଇଜ୍ କରିବା କଣ ମୁଁ ଜାଣିନାହିଁ । ଲେଖା ଅଧାରେ ରହିଲେ ମଧ୍ୟ ସେଇ ବିପଦ । ସେ ଲେଖା ରହିଲା ସେତିକିରେ । ମାନସିକ ଉଦ୍‌ବେଳନରେ ଲେଖା । ଏହାକୁ ସେଇ ଦୃଷ୍ଟିରୁ ଗ୍ରହଣ କଲେ ମୁଁ ସୁଖୀ ହେବି ।

୧୫ ଅଗଷ୍ଟ, ୧୯୯୦ — ଗିରିଜା ଭୂଷଣ ପଟ୍ଟନାୟକ

# କୃତଜ୍ଞତା ଏବଂ କୈଫିୟତ୍

ଯିଏ ସବୁ ଆମକୁ ଛାଡ଼ି ଚାଲିଗଲେ ସେମାନଙ୍କ ଉପରେ 'ଶ୍ରଦ୍ଧାଞ୍ଜଳି' ବାଢ଼ି ଦେଇ ବିଭିନ୍ନ ଖବରକାଗଜ, ମେଗାଜିନ୍‌ରେ ଛାପିବାକୁ ଦେଉଥିଲି । କିନ୍ତୁ କପି ରଖିନଥିଲି । ରଖିବାର ଅବକାଶ ନଥିଲା । କାରଣ ସେଗୁଡ଼ିକ କେବେ ବହୁସଂଖ୍ୟାରେ ପରିଣତ ହୋଇ ପୁସ୍ତକାକାରରେ ପ୍ରକାଶିତ ହେବ ଇମିତି ଏକ ଆଶା ବା ଆଶଂକା ମୋର ନ ଥିଲା ।

ସମସ୍ତ ଅଚାନକ ହେବାକୁ ଲାଗିଲା । ବୟୋଜ୍ୟେଷ୍ଠାନୁଜ ବା ଓବିଚୁଆରି ଲେଖକ ଭାବରେ ଗୋଟାଏ ନାଁ ବି ହୋଇଗଲା । ସେ ଦେଉଳ ତୋଳା ହେଉ ବା ନହେଉ । ଲେଖାଗୁଡ଼ିକର ପ୍ରକାଶନ ପାଇଁ ଅନୁରୋଧ, ଆଦେଶ ବି ଆସିଲା । କିନ୍ତୁ ମୂଳଲେଖା ?

ଏହା ଭିତରେ ଶ୍ରୀ ବ୍ରଜ ମୋହନ ମହାପାତ୍ର 'ସୃଜନଭର୍ସ' ପରିବାରରେ ଯୋଗ ଦେଇଛନ୍ତି । ସେ ଯୋଗ ଦେବାର କିଛି ସମୟ ପରେ ଯେଉଁସବୁ ଲେଖା ପ୍ରକାଶିତ ହେବାକୁ ଯାଉଛି, ତାହାର କପି ରଖିଛନ୍ତି । ସେଇ ଯୋଗୁଁ ଏହାର ପ୍ରକାଶନ ସମ୍ଭବ ହେଲା । ତାଙ୍କୁ ଧନ୍ୟବାଦ ।

ଏ ଭିତରୁ ବହୁତ ଲେଖା ଆଗରୁ "ସମାଜ"ରେ ପ୍ରକାଶ ପାଇଛି । ଶ୍ରୀ ବ୍ରଜ ମୋହନ ମହାପାତ୍ର ପୁରୁଣା 'ସମାଜ' ଦେଖିବେ ଏବଂ ସଂପୃକ୍ତ ଲେଖାଗୁଡ଼ିକୁ ଠାବ କରି ଜେରକ୍ସ କରି ଆଣିବେ ସୃଜନଭର୍ସର ଖର୍ଚ୍ଚରେ । ଏହା ଏଇ ଭିତରେ ସମ୍ଭବ ହେବ ବୋଲି ଭାବୁଛି । ଯଦି ସମ୍ଭବ ହେବ ତା'ହେଲେ ସେଗୁଡ଼ିକ ସନ୍ନିବେଶିତ ହେବ ଏଇ ବହିରେ । ନଚେତ୍ ସେଗୁଡ଼ିକ ଦ୍ୱିତୀୟ ଖଣ୍ଡରେ ପ୍ରକାଶିତ ହେବା ଛଡ଼ା ଉପାୟ ନାହିଁ । କାରଣ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଉପରେ ଲେଖା ରହି ଯାଇଛି 'ସମାଜ'ର ପୁରୁଣା ପୃଷ୍ଠାରେ । ସେମାନଙ୍କ ଭିତରେ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ବିନାୟକ ଆଚାର୍ଯ୍ୟ, ଶ୍ରୀ ବିରେନ ମିତ୍ର, ଗାନ୍ଧିକ ଶ୍ରୀ ଅଖିଳ ମୋହନ ପଟ୍ଟନାୟକ, କବି ଓ ଗାଳ୍ପିକ ଶଶୀ ଭୂଷଣ ପଟ୍ଟନାୟକ, ଶ୍ରୀ ଦୟାନନ୍ଦ ଶତପଥୀ, ଡାକ୍ତର ରବି ଘୋଷ, ଶ୍ରୀ ଚକ୍ରଧର ମହାପାତ୍ର ପ୍ରଭୃତି ଅନ୍ତର୍ଭୁକ୍ତ ।

'ଦ' ସୃଜନଭର୍ସ' ଏହାର ପ୍ରକାଶନ ଦାୟିତ୍ୱ ନେଇଛନ୍ତି । କିନ୍ତୁ ଅର୍ଥ ? ବହୁ ବନ୍ଧୁ କହିଛନ୍ତି ଏ ବହି ଛାପିବା ପାଇଁ । ସେ ସବୁ ଶୁଣିଛନ୍ତି ଶ୍ରୀ ବିଭୁ ରଞ୍ଜନ ଦାସ

ଶ୍ରୀ ସନ୍ତୋଷ କୁମାର ରାୟଚୌଧୁରୀ, ଶ୍ରୀ ଉମେଶ ଚନ୍ଦ୍ର ନାୟକ, ଶ୍ରୀ କୈଳାସ ଚନ୍ଦ୍ର ଦାସ ଏବଂ ଶ୍ରୀ ସୁବ୍ରତ ତ୍ରିପାଠୀ । ସେ ସଂଖ୍ୟା ଉପରେ ଭରସା କରି ସେମାନେ ଏ ବହିର ଏକ ପ୍ରାକ୍ ପ୍ରକାଶନ ମୂଲ୍ୟ ବି ରଖିଛନ୍ତି । ଆଶା କରିଛନ୍ତି ଯେ ବହି ପାଇଁ ଯେତିକ ଲୋକ ଆଗ୍ରହ ଦେଖାଇଛନ୍ତି ତାହାର ଶତକଡ଼ା ଦଶ ପ୍ରାକ୍-ପ୍ରକାଶନ ମୂଲ୍ୟରେ କିଣିଲେ ଛପା ଖର୍ଚ୍ଚ ଉଠିଯିବ । କିନ୍ତୁ ବହି ପାଇଁ ଆଗ୍ରହ ପ୍ରକାଶ କରିବା ଆଉ ବହି କିଣିବା କଣ ସମାନ ? ଦେଖାଯାଉ, ଆଶା ତ ବୈତରଣୀ ନଦୀ !

ଆଜି ଅଗଷ୍ଟ ପନ୍ଦର, ୧୯୯୪ । ଯିବାକୁ ହେବ ଦିଲ୍ଲୀ ବିଭିନ୍ନ କାର୍ଯ୍ୟରେ, ସ୍ୱାସ୍ଥ୍ୟ ପରୀକ୍ଷା ସହିତ । ଫେରିଲା ବେଳକୁ ବହିର ଉନ୍ମୋଚନ ସମୟ ପାଖେଇ ଯାଇଥିବ ଏବଂ ଆଶା କେତେ ପୂରଣ ହୋଇଛି ତା'ବି ଜଣାପଡ଼ି ଯାଇଥିବ ।

ବହିର ପ୍ରଚ୍ଛଦପଟ୍ଟର ଡିଜାଇନ କରିଛନ୍ତି ବନ୍ଧୁ ସୁପରିଚିତ ଶିଳ୍ପୀ ଶ୍ରୀ ଶିବ ପାଣିଗ୍ରାହୀ । ସେ ତ ପରିବାରର ଲୋକ । ତାଙ୍କୁ କୃତଜ୍ଞତା ଜଣାଇବା ଏକ ଲୌକିକତା ହୋଇଯିବ ।

ଶ୍ରୀ କିଶୋର ତ୍ରିପାଠୀ, ଏ ବହି ଛପିବେ, ସହକର୍ମୀ ଅମି, ସୁରେଶ ପ୍ରଭୃତିଙ୍କ ସହଯୋଗରେ । ସେମାନେ ହିଁ ପ୍ରକାଶକ । ତଥାପି ବ୍ୟକ୍ତିଗତ ପରିଶ୍ରମ ପାଇଁ ଧନ୍ୟବାଦ ଜଣାଉଛି ।

ଅରବିନ୍ଦ, ବିଶ୍ୱ, ପୁରି ପ୍ରଭୃତି ସାହାଯ୍ୟ କରିଛନ୍ତି ବିଭିନ୍ନ କାର୍ଯ୍ୟରେ । କପିଂ କରିବା, ସଂଶୋଧନ କରିବା ମୋ ଦ୍ୱାରା ହୋଇ ପାରିନଥାନ୍ତା । ସେମାନଙ୍କୁ ଧନ୍ୟବାଦ ।

ପରିଶେଷରେ ଅଧ୍ୟାପକ ପଠାଣି ପଟ୍ଟନାୟକ ଏ ମଧ୍ୟରୁ ଅନେକ ଲେଖା ପଢ଼ି ସଂଶୋଧନ କରି ଦେଇଛନ୍ତି । ଲେଖା ପରିମାର୍ଜିତ ଏବଂ ସମୃଦ୍ଧ ହୋଇଛି । ତାଙ୍କ ପାଖରେ ମୁଁ ଗଭୀର କୃତଜ୍ଞ ।

ୟୁନିଭର୍ସ, ଗ୍ରିଣ୍ଡୋଭର୍ସ ପରିସରର ସବୁ ସଭ୍ୟ, ସମର୍ଥକ, ସହଯୋଗୀ, ଶୁଭେଚ୍ଛୁମାନଙ୍କ ପାଖରେ କୃତଜ୍ଞତା ଜଣାଉଛି ।

୧୫ ଅଗଷ୍ଟ, ୧୯୯୪ — ଗିରିଜା ଭୂଷଣ ପଟ୍ଟନାୟକ

# ସୂଚୀପତ୍ର

□

# ତୁମେ ତ ଜାଣିଲ ନାହିଁ

କଟକ ନଗର ସହସ୍ର ବାର୍ଷିକୀ ପୁସ୍ତକର ଦ୍ୱିତୀୟ ଖଣ୍ଡ । କଟକ ନଗରରେ ଜନ୍ମ ବା ପରିବର୍ଦ୍ଧିତ ହୋଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୀବନୀ । ଅଜିତ ବନ୍ଧୁ ଗୋସ୍ୱାମୀ ଦେଖୁଛନ୍ତି ତନ୍ମୟ ଚିତ୍ତରେ । ତାଲିକାରେ ଜୀବିତ ବ୍ୟକ୍ତି କେହି ନାହାନ୍ତି । ବହି ଦୁଇଖଣ୍ଡ ବ୍ୟାଙ୍କ ପାଇଁ ରଖି ଅଜିତ ବନ୍ଧୁ ହସି ହସି ପଚାରିଲେ ମୁଁ ଭାବୁଛି ବହି ଲେଖା ପୂର୍ବରୁ ଚାଲି ଯାଇଥିଲେ ମୋ ନାମ ବି ଆପଣ ଯୋଡ଼ି ଦେଇଥାନ୍ତେ । ବୟସ ମୋଠାରୁ ବହୁତ କମ୍ । ମୁଁ ରେଭେନ୍ସା ଗ୍ରାଡ଼ଲବେଲକୁ ସେ ରେଭେନ୍ସା କଲେଜରେ ନାମ ଲେଖାନ୍ତି ଏବଂ ତାଙ୍କ ସହିତ ଆତ୍ମୀୟତା ଜମି ଉଠେ । ଆଉ ସେଇ ଆତ୍ମୀୟତା ରହିଛି ସେମିତି ଅତୁଟ । ଦେଖାହେଲେ ଛିଣ୍ଡି ଯାଇଥିବା ଖିଅକୁ ଯୋଡ଼ି ପଚାରନ୍ତି କ'ଣ ହେଲା ରୁଷରେ ? କ'ଣ ହେଲା ସାମ୍ୟବାଦର ? ଆଜି ଜାନୁଆରୀ ୯ ତାରିଖ । କାଲି ୧୦ ତାରିଖରେ ସମୟ ଦେଇଥିଲେ ଭେଟିବା ପାଇଁ । ଯିବା ସାଙ୍ଗ ହୋଇ ଜମି ଦେଖିବାକୁ ଯେଉଁଠି ତିଆରି ହେବ ୟୁନିଭର୍ସର ନୂତନ ଆଶ୍ରମ । କ'ଣ ଟଲଷ୍ଟୟ ପାଲଟିଯିବେ କି ଆପଣ ? ସେ ପଚାରନ୍ତି । କାଲି ଯିବାର କଥା, ସାଙ୍ଗ ହୋଇ, କିନ୍ତୁ ଆଜି ଅଜିତ୍ ତମେ ଏକାକୀ ଚାଲିଗଲ କୁଆଡ଼େ ? କାହାକୁ ପଚାରିବି ? ସମସ୍ତେ ହତବାକ୍ । ଭିଡ଼ ଜମିଛି, ନିସ୍ତବ୍ଧ ନୀରବ ସେଇ ଭିଡ଼ । କାରଣ ସେ କାଲି ଥିଲେ । କେତେ ପରିକଳ୍ପନା, କେତେ ସ୍ୱପ୍ନ, କେତେ ଯୋଜନା । ଏଇ ଫେରିଥିଲେ ଏକ ଦୀର୍ଘ ଯାତ୍ରାରୁ ପଶ୍ଚିମ ଓଡ଼ିଶାରୁ । ହଠାତ୍ କ'ଣ ଦରକାର ପଡ଼ିଲା ପୁଣି ଏକ ଯାତ୍ରାର ? କିନ୍ତୁ ଏହି ଯାତ୍ରା ତ ଫେରିବ ନାହିଁ । ତା'ହେଲେ ସେଇ ପରିକଳ୍ପନା ? ସେଇ ସ୍ୱପ୍ନ ! ସବୁତ ରହିଗଲା ସେତିକିରେ । କିନ୍ତୁ ତାହାହିଁ ତ ଜୀବନ । ସବୁ ସରିବ ନାହିଁ । କିନ୍ତୁ ଏଇ ଜାତି, ଏଇ ଦେଶ, ଏ ଜାତିର ସମବାୟୀତ ତୁମକୁ ଦେଖିବ ବହୁ କାଳ ଧରି । ତମର ସ୍ପନ୍ଦନ, ତମର ମାନବିକତା, ସମବାୟ ପାଇଁ ତମର ଦରଦ ସବୁ ମନେ ରହିବ ସେମାନଙ୍କର । ତମର ଶୀତଳ ଦେହ ଉପରେ ଫୁଲମାଳ ଦେଇ ମନେ ହେଲା ତମେ ଯେମିତି ଚଗଲଙ୍କ ପରି ଶୋଇ ରହିଛ ମିଛରେ । ଉଠି ବସିବ ହଠାତ୍ । ତମ ଦେହରେ, କପାଳରେ ହାତ ମାରିବାକୁ ଇଚ୍ଛା ହେଲା । କାଳେ ତମେ ଉଠି ବସିବ ପରା । କିନ୍ତୁ ତମେ ତ ଆଉ ଉଠିବ ନାହିଁ, କି ଫେରିବ ନାହିଁ । ରେଭେନ୍ସା କଲେଜର ଅଜିତ ବନ୍ଧୁ ଗୋସ୍ୱାମୀ, ସମବାୟ ଆନ୍ଦୋଳନର ଅଜିତ ଆଉ ଫେରିବ ନାହିଁ । ତମେ ମୋ ପାଇଁ ଲେଖିଥାଆନ୍ତ, ଲୁହ ଢାଳି ଥାଆନ୍ତ । କିନ୍ତୁ ମୋତେ ହିଁ ଲେଖିବାକୁ ହେଲା ସତରେ ତମ ପାଇଁ ।



# ଲେଖକଙ୍କ ସହିତ ଗୋଟିଏ ଦିନ

ମୋର ଦାଦାଙ୍କ ନାମ ଥିଲା ବ୍ରଜବନ୍ଧୁ ଧୀର । ସେ ଆଉ ନାହାନ୍ତି । ସେ ସମବାୟ ବିଭାଗରେ ଚାକିରି କରୁଥିଲେ । ଶ୍ରୀଯୁକ୍ତ ଅନନ୍ତ ପ୍ରସାଦ ପଣ୍ଡାଙ୍କର ସେ ଥିଲେ ସହକର୍ମୀ ।

ଦିନ, ମାସ, ବର୍ଷ କିଛି ଆଉ ମନେ ନାହିଁ । ବିସ୍ମୃତିର ଗର୍ଭରେ ସବୁ ହଜିଗଲାଣି । ତେବେ ଯେତିକି ମନେପଡ଼ୁଛି ।

ଦିନେ କୌଣସି ଏକ ସନ୍ଧ୍ୟାରେ ଅନନ୍ତବାବୁ ଓ ଦାଦା ବାହାରିଲେ ତାଙ୍କର ସରକାରୀ ଗସ୍ତରେ । କୌଣସି ଏକ ଅହେତୁକ କାରଣରୁ ମୁଁ ଦାଦାଙ୍କ ସଙ୍ଗରେ ଯିବାକୁ ବାହୁ ରଖିଲି । ଉଭୟେ ଆନନ୍ଦରେ ସମ୍ମତ ହେଲେ ।

ଓଡ଼ିଶାର ସମବାୟ ଆନ୍ଦୋଳନଟା ସୁସ୍ଥ ନୁହେଁ । ସବୁଯାକ ନନ୍-କୋ-ଅପରେଟର ବୋଧହୁଏ ଏଇ ପୀଠରେ ସେତେବେଳେ ଠୁଳ ହେବାକୁ ଲାଗିଲେଣି । ଆଜିତ ସ୍ୱତନ୍ତ୍ର କଥା । ଅବଶ୍ୟ ଓଡ଼ିଶାରେ ଦିନ ଗୋଟିଏ ଭଲ ସମବାୟ ସମିତି ଯେ ନଥିଲା ବା ନାହିଁ ତା ନୁହେଁ । କିନ୍ତୁ ବାକିତକ .... ଛାଡ଼ନ୍ତୁ, ଆମେ ଅସଲ କଥାଟା ଛାଡ଼ି ଆସିଲେଣି । ସମବାୟ ଆନ୍ଦୋଳନଟା ଅନନ୍ତ ବାବୁଙ୍କର ଅସ୍ଥିମଜ୍ଜାଗତ । ପେଷା ଓ ନିଶା ଉଭୟ । ସମବାୟ ଆନ୍ଦୋଳନକୁ ଗଢ଼ି ତୋଳିବା ହେଲା ତାଙ୍କର ନିଶା । ସେଇଥିପାଇଁ କଲମ ଚାଳନା ମଧ୍ୟ କରିଥିଲେ ସେ ।

ଉପନ୍ୟାସ ପରେ ଉପନ୍ୟାସ ।

ପରିଣତ ବୟସରେ ସେ ଡ୍ରାଇଭିଂ ଶିଖିଥିଲେ । ବ୍ରଜବାବୁ, ଆପଣ ଡ୍ରାଇଭିଂଟା ଶିଖି ନେଉନାହାନ୍ତି । କିଛି ଅସୁବିଧା ହେବ ନାହିଁ । ଦାଦା ମୁଣ୍ଡ ହଲାଇ ନାହିଁ କଲେ । ଶିଖିବା ପାଇଁ ବୟସ କ'ଣ ଦରକାର ? ଅନନ୍ତ ବାବୁଙ୍କର ଜୀବନାଦର୍ଶ ।

ଆମେ ରହିଲୁ ମଫସଲ ଗାଁ । ଏକ ଡାକବଙ୍ଗଳା । ଗୋଟାଏ ରୁମ୍‌ରେ ଦାଦା ଓ ମୁଁ । ଆର କୋଠରିଟିରେ ଅନନ୍ତବାବୁ । ବୋଧହୁଏ ବିଜୁଳିବତୀ ନଥିଲା । ବଡ଼ ବଡ଼ ହାରିକେନ ଲଣ୍ଠନ ।

ସେମାନେ ତାଙ୍କର ସମବାୟ କାମ ବୁଝିଲେ । ମୁଁ ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବାକୁ ଲାଗିଲି । କୌଣସି ଗୋଟିଏ ଲୋକ ଅନନ୍ତବାବୁଙ୍କ ହାବୁଡ଼ରେ ପଡ଼ିଲା । ତାର ଜୀବନ କାହାଣୀର କୌଣସି ଅଂଶ ଅନନ୍ତବାବୁଙ୍କର ପ୍ରାଣକୁ ସ୍ପର୍ଶ କରିଛି । ତାଙ୍କ କଲମର ଡାକ ଶୁଭୁଛି । ବେଳ ରାତିରାତି । ଅଫିସ କାମ ସରିଲା । କିନ୍ତୁ ସେ ଲୋକଟି ସହିତ ଅନନ୍ତ ବାବୁଙ୍କର କାମ ଆରମ୍ଭ ହେଲା । ସେ ତା ସଙ୍ଗରେ ଗପିବାକୁ ଆରମ୍ଭ କଲେ । ଗପ ସରିଲା ।

ରାତ୍ରିଭୋଜନ ପରେ ଆମେ ଶୋଇବାକୁ ଗଲୁ । କିନ୍ତୁ ଅନନ୍ତବାବୁ ଶୋଇ-ନାହାନ୍ତି ରାତିସାରା । କଲମ ଚାଲିଛି ଅବିରତ । ସକାଳ ହେଲା । ନିତ୍ୟକର୍ମସାରି ଅନନ୍ତବାବୁ କହିଲେ—ବୁଝିଲେ ବ୍ରଜବାବୁ, କାଲି ରାତିରେ ସେଇ ଲୋକଟିକୁ କେନ୍ଦ୍ରକରି ମୁଁ ଉପନ୍ୟାସ ଖଣ୍ଡିଏ ଲେଖି ଦେଇଛି ରାତାରାତି ।

ସେ ଉପନ୍ୟାସର ନାଁ ମୋର ଆଉ ମନେପଡ଼ୁନାହିଁ । ତେବେ "ସଭ୍ୟତାର" ....ଏଇଭଳି କୌଣସି ଏକ ନାମ ।

ଅନନ୍ତବାବୁଙ୍କୁ ମୁଁ ଦେଖିଛି ବହୁବର୍ଷଧରି । ସୂଜନଅର୍ପିର ଶନିବାର ସଭାରେ (ଏବେ ଶୁକ୍ରବାର) ସେ ଓ ଡାକ୍ତର ହରିଶ୍ଚନ୍ଦ୍ର ରାୟ ନିଶ୍ଚୟ ଉପସ୍ଥିତ ରହିବେ, ଏଥିରେ ଆଦୌ ସନ୍ଦେହ ନାହିଁ ।

ରାମଚନ୍ଦ୍ର ଭବନର ବହୁ ସଭାରେ ତାଙ୍କୁ ଦେଖିଛି । ବିନମ୍ର, ତାଙ୍କଠାରୁ ତରୁଣ ଲେଖକମାନଙ୍କୁ ସେ ଗଭୀର ସ୍ନେହର ସହିତ ପରିଚୟ କରାଇଦିଅନ୍ତି ଅନ୍ୟ-ମାନଙ୍କୁ । ମୋର ମନେ ପଡ଼ୁଛି । ଜଣେ ପ୍ରଖ୍ୟାତ ବୈଦେଶିକ ସାହିତ୍ୟିକଙ୍କୁ ମୁଁ ପରିଚୟ କରାଇ ଦେଉଥିଲି ଆମର ସାହିତ୍ୟିକମାନଙ୍କୁ । ବିଭୂତି ପଟ୍ଟନାୟକଙ୍କ ସହିତ ପରିଚୟ କରାଇଦେଲାବେଳେ ସେ କହିଲେ ସ୍ନେହାପ୍ଲୁତ ଭାଷାରେ "ଦି ମୋଷ୍ଟ ପ୍ରଲିଫିକ୍ ଏମଙ୍ଗଷ୍ଟ ଆଓ୍ୱାରସେଲଭ୍‌ସ" ।

ସେନ୍‌ସ ଅଫ ହ୍ୟୁମର ମଧ୍ୟ ତାଙ୍କର ବେଶ୍ । ଥରେ "ସାମ୍ମୁଖ୍ୟ" ନାମକ ପତ୍ରିକାରେ କୌଣସି ଜଣେ କବିଙ୍କର ଏକ ମଡ଼ର୍ଣ୍ଣ କବିତା ପ୍ରକାଶ ପାଇଥିଲା । ତାହାଥିଲା ଦୁର୍ବୋଧ । ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ତାର ଏକ ସମାଲୋଚନା ଲେଖିଲେ । ତାହା ପ୍ରକାଶିତ ହେଲା "ସାମ୍ମୁଖ୍ୟ"ରେ । ସେଥିରେ ସେ ଲେଖିଥିଲେ, ମୁଁ ଜଣେ ଲେଖକ, ମୁଁ ଇଂରାଜୀ ସାହିତ୍ୟରେ ଏମ.ଏ. ପଢ଼ିଛି । ମୁଁ ତ ଏ କବିତା ବୁଝିପାରୁ ନାହିଁ । ତେବେ ଏହାକୁ ବୁଝିଛି କିଏ ?

ଏହାର ଉତ୍ତରରେ ଉକ୍ତ କବିତାର ଲେଖକ ଅନନ୍ତବାବୁଙ୍କୁ ବେଶ୍ କଡ଼ା ଦି ପଦ ଶୁଣାଇଥିଲେ । ଭାଷା ଥିଲା କଠୋର, ସୌଜନ୍ୟତାଠାରୁ ଟିକିଏ ଦୂରରେ ।

ଅନନ୍ତବାବୁ ତାର ଉତ୍ତରରେ ଲେଖିଥିଲେ, ଏଇଥର ମୁଁ ସେ କବିତା ବେଶ୍ "ବୁଝିପାରିଲି"।

ମହାକାଳ ସମସ୍ତଙ୍କୁ ଖାଇଯାଇଥାଏ । କିନ୍ତୁ ଅନନ୍ତବାବୁ ଯେ ଆମ ସମସ୍ତଙ୍କ ଗହଣରେ ଅଛନ୍ତି ସେଇତ ଆମର ଗର୍ବ ଓ ଆଶ୍ୱାସନା ।

ମୁଣ୍ଡ ଉପରେ ଛାତଟିଏ ଅଛି । ଆଉଜି ପଡ଼ିବାପାଇଁ କାନ୍ଥଟିଏ ଅଛି । ସେମାନେ ସବୁ ଦାନ୍ତ ଭଳି । ଗଲାପରେ ମୂଲ୍ୟ ବେଶୀ ଜଣାପଡ଼େ । ସେତେବେଳକୁ କିନ୍ତୁ ସେମାନେ ନଥାନ୍ତି । ଖାଲି ହେବା ସାର ହୁଏ । ହେ ପରମେଶ୍ୱର ! ଆମକୁ ଆଶୀର୍ବାଦ କର ।



# ଚାଲ, ଯାତ୍ରୀ ଚାଲ

ସେଦିନ ସବୁଦିନ ପରି ସକାଳ ଆସିଥିଲା । ସକାଳଟା ଏତେ ଖୁବ୍ ଉଷ୍ମ; କିନ୍ତୁ ହଠାତ୍ ସେଇ ଜୁନ ପଚିଶ ତାରିଖ ସକାଳଟା ଶୀତଳ ହୋଇଗଲା ବହୁଲୋକଙ୍କ ପାଇଁ, ମରଣର ଶୀତଳ ସ୍ପର୍ଶରେ ।

"ଆଲୋ ଆଲୋ ନୂଆବୋଉ ଏତେ ତୋର ବଢ଼େଇ
ଦୁନିଆର ଖାଇକୁ ତୁ ନେବୁ ଆଜି ଛଡ଼େଇ ।
ବଣହାତୀ ସମ ସେହୁ ଅଙ୍କୁଶ ମାନିନ,
ଗଡ଼ ତାର ଗ୍ରେକବକ ସତେ ତୋର ଭଗିଣୀ ।"

୧୯୪୫ ମସିହାରେ ଖାଇ ଗୁରୁଚରଣ ଲେଖିଥିଲେ କବିତା ଅନନ୍ତ ପଟ୍ଟନାୟକଙ୍କ ବିବାହରେ । ଆଜି ଦୁନିଆର ଖାଇକୁ ଆଉ ଜଣେ ଛଡ଼ାଇ ନେଲା ସବୁଦିନ ପାଇଁ । ହଠାତ୍ ପଚାଶବର୍ଷରୁ ଊର୍ଦ୍ଧ୍ୱ କାଳ ଚାଲିଥିବା କଲମ ରହିଗଲା ଚୁପ୍ ହୋଇ ।

"ତୋତେ ଭୁଲିଯିବ ଆଇନଶାଳା ଲୋ
ଭୁଲିବ ମନ୍ତ୍ରୀ ଗାଦି
ଛିଟକିନି ଅଠ କଟକ ନଗରୀ
ତୋତେ କି ରଖିବ ବାନ୍ଧି ।
ଭୁଲିବନି ତୋତେ ଶାଳିଆ ବସିନ
ଭୁଲିବନି କାଳିଜାଇ...."

ଗୋଦାବରୀଶ ମିଶ୍ରଙ୍କର ପରଲୋକରେ ଅନନ୍ତ ପଟ୍ଟନାୟକଙ୍କ କବିତା ଆଜି ତ ତାଙ୍କର ପାଇଁ ପ୍ରଯୁଜ୍ୟ ! ପଛରେ ରହିଗଲା ସବୁ···

ରହିଗଲା ଗଡ଼ଜାତ ପ୍ରଜା ଆନ୍ଦୋଳନ, ନବଯୁଗ ସାହିତ୍ୟ ସଂସଦ, ଆଧୁନିକ, ସବୁଜସଂଘ, ପ୍ରଗତିଶୀଳ ଲେଖକ ସଂଘ.... ।

"ସହଜରେ ଯାହା ନ ପଡ଼େ ଜଣା
କରିଦିଏ ତାହା ମନକୁ ବଣା"

(ଛବିଟିକ ଗପଟିଏ)

ଇଞ୍ଜିନିୟରଙ୍କ ଗନ୍ତାସ୍ଥଳ ବସିଛନ୍ତି ସ୍ତବ୍ଧ ହୋଇ । ଆଖି ପଥର ପାଲଟିଛି । ପଶ୍ଚିମବର୍ଷର ବନ୍ଧୁତା । ସେ ଆସିଥିଲେ ସୁରା ଖାଇବା ପାଇଁ ବନ୍ଧୁ ଅନନ୍ତ ପଟ୍ଟନାୟକଙ୍କ ସାଙ୍ଗରେ । ବନ୍ଧୁଙ୍କୁ ଯେ ଆଉ କେଉଁଠି ସୁରା ଖାଇବା ପାଇଁ ଡାକରା ଆସିଗଲାଣି ତାହା ତାଙ୍କୁ ଜଣା ନ ଥିଲା । ସେ ହେଉଛନ୍ତି....

"ମୂଳକ ଯାକର ମାଲିକ ଚାଷୀ
ମଜୁରିଆ କୁଲି ହେ ଉପବାସୀ
ଢୋଲଧର ତୋର ପତାକା ଅସୀ
ତୋହର ରକତେ ଲାଲ
ଚାଲରେ ଚାଲରେ ଚାଲ ।"

ଚାଲ, ଚାଲ, ଆଗେଇ ଚାଲ । ଚରୈବେତି, ଚରୈବେତି । ଅନନ୍ତ ପଟ୍ଟନାୟକଙ୍କ ଏଇ ଦୁର୍ବାର ଚାଲିବାର ଆହ୍ୱାନ ।

"ଗଙ୍ଗା ରେ ତୋର ଫେରାଅ ମୁହାଣ
ଫେରାଅ ଆଜ,
ପୂର୍ବଘାଟ ରୁ ସଞ୍ଚାଳ ଚାଲ ପାଦରେ ତୋର
ଦୂରେ ଦେଖ ଏଇ ପଣ୍ଡିଚେରୀଜର ଗୀର୍ଜା ପରେ
ଝରେ ଝର ଝର ଦୁର୍ମଦ ଯୀଶୁ ରକ୍ତଲେର ।"

ସେଇ ଅନନ୍ତ ଆଜ ଅନନ୍ତ ପଥର ପଥିକ । ଲୁହ ଝରୁଛି ବନ୍ଧୁ ବୈଦ୍ୟନାଥଙ୍କ ଆଖିରୁ । ସେ ଆଖିରୁ ସହଜରେ ଲୁହ ଝରେନା । ପଥର ଆଖି । ପଥର ଫାଟି ଝରୁଛି ଲୁହ ।

"ଯେବେରେ କେବେ ବନ୍ୟା ଆସେ ଝଡ଼ର ବେଗେ
ଆସେରେ ଛୁଟି
ପ୍ରେୟସୀ ଏଠି ପ୍ରେମିକ ବୁକେ, ଶୁଅଇ ଯେବେ
ମୃତ୍ୟୁ ବୁକେ,
ଦେବତା ତୋର ମନ୍ଦିରେ ହସେ
ଗମ୍ଭୀରରେ ଲୁଚକ ବସେ
ଦଗନ୍ତ ଭଗ ଜଳଇ ସିନା ଠାକୁରତାର ଦୀପ୍ତନୁଇ ।"

ସେ ହେଉଛନ୍ତି । ସତରେ ଅ'ନ୍ତାଟା ଚାଲିଗଲା । କାହିଁକି ? କାହିଁକର ଉତ୍ତର କିଏ ଦେବ ? ସେଇ ଉତ୍ତର ମିଳନାହିଁ ବୋଲି ତ ମୃତ୍ୟୁ ରହସ୍ୟମୟ । ଗୌତମ ତ ସେଇଆ ଖୋଜିବାକୁ ଯାଇ ପାଲଟିଲେ ବୁଦ୍ଧ ।

ସତ୍ୟସାଇ-ମଣ୍ଡଳୀର ଭଜନ ଶୁଭୁଛି । ଜୀବନ ଯେପରି ସତ୍ୟ, ମୃତ୍ୟୁ ବି ସେହିପରି ସତ୍ୟ । ଶୁଭୁଛି ଆବାଜ…ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ ଲାଲ ସଲାମ, ଲାଲ ସଲାମ ।

ଚିତା ଜଳୁଛି । ଜଳୁଛି ସତୀଚଉରାରେ । ଏଇଠି ସାଥୀ ଭଗବତୀଙ୍କର ଚିତା ଜଳିଥିଲା ।

"ଆଜି ଏ ତୁମରି ସମାଧି ଶଯ୍ୟା ପାଶେ,
ଅଟଳ ଦମ୍ଭେ କମ୍ପିତ ଗୁରୁ ଶ୍ୱାସେ,
ବିଷାଦେ ନମ୍ର ଶପଥ କରୁଛୁ ସାଥୀ
ଲଢ଼ିବୁ ତୁମରି ସ୍ମୃତି ଇଙ୍ଗିତେ ମାତି
ବିଶ୍ୱଜନର ସୁଖ ସମ୍ପଦ ପାଇଁ
ମୁକ୍ତିର ଗୀତ ଗାଇ
ଶପଥ କରୁଛୁ ଅଣି
ତୁମରି ଜନନୀ ଜାୟା ନନ୍ଦନ ପ୍ରାଣେ
ଅନ୍ତର ତଟ ଭରି ।"

ପରଶମଣି ଅପାର କାନ୍ଦ ଶୁଭୁଛି । ସେ ହେଉଛି । ବିବାହ ଉତ୍ସବରେ ସାଥି ମନମୋହନ ମିଶ୍ର ଲେଖିଥିଲେ—

"କାକଟପୁରର ଅପନ୍ତରା ପାଟ
କଳା କଇଁସିରି ଶାଗ,
ଆଣିଛି ତୋ ସାଥୀ କଣ୍ଠା ମୁକୁଟ
ବାନ୍ଧରେ ତହିଁ ପାଗ,
ଅନ୍ୟାୟ ଶିରେ ବରଷି ପାହାର
ଅକ୍ଷୟ ହେଉ ଅସ୍ତ୍ର ତାହାର
ଲଭ ରୁ ତରୁଣ ପରାଣେ ପରାଣେ
ପ୍ରୀତିର ହୁତାଶ ଜାଳ,
ବନ୍ଧୁଆଣ ସାଥୀ ନବଯୁଗଳ ହେ
ନବ ଆଲୋକର ଥାଳ ।"

ସବୁତ ସେମିତି ଅଛି । ଓଡ଼ିଶାରେ ମରୁଡ଼ିର ପଦଧ୍ୱନି । ପୃଥିବୀରେ କେତେ ପ୍ରକାରର ଆତଙ୍କ । କାକଟପୁରର ଗୁମ୍ଫୀ ଆଜି ମଧ୍ୟ ମୂର୍ଚ୍ଛିତ । ତେବେ ସେ ଗଲେ କାହିଁକି ?

ଥରେ ସଚ୍ଚି ରାଉତରାୟ ଲେଖିଥିଲେ ଭଗବତୀ ପାଣିଗ୍ରାହୀଙ୍କର ମୃତ୍ୟୁରେ—

"ଏହାଠୁ କି ବଳି ଅଛି କାମ,
ହୃଦ ଝିବ ଯଦି ଯାଅ ତେବେ
ଯେନ ଯାଅ ମୋ ରକ୍ତପ୍ରଣାମ ।"

ଚିତା ଜଳୁଛି । ଅପାର କାନ୍ଦ ଶୁଭୁଛି । ଶୁଭୁଛି ସାଥୀମାନଙ୍କର ମିଳିତ ଆବାଜ ।

"ଏ ଶିଖା ଦେଇଛି ଆଜି
ଇତିହାସେ ହାତ ଟେକ ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ, ମୁକୁଳିତ ମୃତ୍ୟୁସ୍ନାନ ପ୍ରାଣ ।"
( ବାଜିରାଉତ—ସଚ୍ଚି ରାଉତରାୟ )

ଗୋବିନ୍ଦ ମହାନ୍ତିଙ୍କ ଆଖିରୁ ଲୁହ ଝରୁଛି । ବହୁ ଦୂରରେ ଦିଗ୍‌ବଳୟର ସୀମାରେଖାରେ ଖାନନଗର । ସେଇଠି ସେଦିନ ଚିତା ଜଳିଥିଲା ବାଜିରାଉତର । ଆଜି ଜଳୁଛି ସେଦିନର ଅନ୍ୟତମ ସାଥୀ ଅନନ୍ତ ପଟ୍ଟନାୟକଙ୍କର ।

"ମୁଁ ଭଗବାନ ବିଶ୍ୱାସ କରେନା । କିନ୍ତୁ ମୋର କାମନା, ମୋର ଅନନ୍ତ ପଟ୍ଟନାୟକଙ୍କ ପରି ମୃତ୍ୟୁ ଆସୁ ।"

ଏଇ ଭଳି ଥିଲେ । ଗାଡ଼ି ଆସିଲା ଯିବା ପାଇଁ । କିନ୍ତୁ ସେପଟରୁ ଯେ ଗାଡ଼ି ଆସି ଯାଇଥିଲା ସେ କଥାତ କେହି ଜାଣନ୍ତି ନାହିଁ ! ଗାଧୋଇବା ପାଇଁ ଯାଇଥିଲେ । ସ୍ନାନସିକ୍ତ ଦେହ । ଯାତ୍ରା ଆରମ୍ଭ ହେଲା ସେଇଠାରୁ । ଏଇ ଯାତ୍ରା ଅନନ୍ତଯାତ୍ରା । ଏହା କେଉଁଠାକୁ ବା କେତେଦିନ ପାଇଁ କିଏ କହିବ ?

"ମରଣ ଏତେ ଲମ୍ବା ଦୀର୍ଘ କି ଏତେ ହୁଏ ।
ଚିଢ଼ା ତ ଲାଗିଲାଣି କି ଭ୍ରମ ମନେହୁଏ ?
( ସଚ୍ଚି ରାଉତରାୟ )

ଜୀବନ ଯଦି ଦୀର୍ଘ ହୋଇପାରେ ତାହାହେଲେ ମରଣ କାହିଁକି ଦୀର୍ଘ ନ ହେବ ? ସଚ୍ଚି ରାଉତରାୟ ସ୍ମୃତି ପଖାଳୁଛନ୍ତି । ସ୍ମୃତି ବହୁ ଦିନର । କିନ୍ତୁ ମରଣ ଦୀର୍ଘ ହେଲେ ବି ତ ତାହା ସରିବ ନାହିଁ । ସେ ଫେରିବେ ନାହିଁ ।

"ଚଇତି ଚିଠି ଆଜି ଲେଖିଛି ପ୍ରିୟତମା
ଜୀବନ-ଖାତାରେ କି ନୋହିବ କିଛି ଜମା
ଖୋଜେ ମୁଁ ପୂର୍ଣ୍ଣଚ୍ଛେଦ, ଖୋଜେ ମୁଁ ତହିଁ କମା ।"

ଆଜି କିନ୍ତୁ ପୂର୍ଣ୍ଣଚ୍ଛେଦ ପରେ ଆଉ ତ କମା ନାହିଁ । ତା' ପରେ ଖାଲି ସ୍ମୃତିର ଅଙ୍ଗାର । ଦାଉ ଦାଉ ଜଳିବ କିଛିଦିନ ପାଇଁ । ଧୀରେ ଧୀରେ ଶୀତଳ

ହୋଇ ଆସିବ । କିନ୍ତୁ ଅନନ୍ତ ପଟ୍ଟନାୟକ ତ ରହିବେନି ଅଲୋଡ଼ାଲୋଡ଼ା ହୋଇ । ସେ ସବୁଦିନେ ଲୋଡ଼ା ହୋଇ ରହିବେ ଆଗାମୀର ବଂଶଧର ପାଇଁ ।

"ମୁଁ ଆସିଛୁ,
ବନ୍ଧୁକର ବର୍ତ୍ତି, ରୋଧ କରି ମୁଁ ଆସିଛୁ
ପର୍ବତର ସ୍ରୋତ ଦ୍ୱିଖଣ୍ଡ କରି ମୁଁ ଆସିଛୁ
ଜୀବନର ଗତି ରୋଧ କରି କିଏ ?
ଦୂର ହୁଅ, ତଫାତ୍ ହୁଅ,
ମୁଁ ଆସିଛୁ ।"

ସେ ଆସିବେ ବାରମ୍ବାର ଏଇ ଜାତି ପାଇଁ । ଏଇ ଦେଶ ପାଇଁ ।

ଠିଆ ହୋଇଛନ୍ତି କାଳନ୍ଦୀଚରଣ ପାଣିଗ୍ରାହୀ । ଅନନ୍ତ ପଟ୍ଟନାୟକ ବୟସରେ ସାନ । ମନେପଡ଼ୁଛି ସ୍ମୃତି । ପୁଣି ହଜିଯାଉଛି ।

"ନବୀନ ମୁକୁଳେ ନବ ପଲ୍ଲବେ ଆଜି
କରେ ସଚେତନ ଧରଣୀକୁ ଋତୁରାଜ
ତେମନ ତୁମର ଅମଳ ମଳୟ ଲାଗି
ସବୁ ଜଡ଼ତାରେ ଚେତନା ଉଠୁ ହେ ଜାଗି ।"

ଅନନ୍ତର ବିବାହ ଉପଲକ୍ଷେ ନିଜେ ଲେଖିଥିବା କବିତା କବିଙ୍କର ହୁଏତ ଅବା ସ୍ମରଣ ହେଉଛି । ସେଇ ପଲ୍ଲବିତ ମୁକୁଳ ଆଜି ଝରିଯାଉଛି । ଦେହରେ ଯେଉଁ ଜଡ଼ତା ଆସିଛି ମରଣର ଶୀତଳ ସ୍ପର୍ଶରେ, ତାହା ତ ଆଉ ଭାଜିବ ନାହିଁ ।

"ଆଜି ପୋଡ଼ା ମୁହଁ କାଲିକି ବାସି ଲୋ ।"

ନିଜର କବିତା ଆଜି ତାଙ୍କର ପାଇଁ ପ୍ରଯୁଜ୍ୟ । ରାମନାମ ଶୁଭୁଛି, ଶୁଭୁଛି ଲାଲ ସଲାମ୍ ।

ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦେଖୁଛନ୍ତି, 'ଝଙ୍କାର'ରେ କବି ଅନନ୍ତ ପଟ୍ଟନାୟକଙ୍କର ନବକଳେବର କଥା । କବିଙ୍କର ଲେଖଣୀ ଶୋଇପଡ଼ିଥିଲା । 'ଝଙ୍କାର' ପରିବାର ବିଶେଷତଃ ସତ୍ୟାନନ୍ଦ ଚମ୍ପତିରାୟ ତାଙ୍କୁ ପୁଣି ଥରେ ଜୀବନ୍ୟାସ ଦେଲେ । ସମସ୍ତେ ଠିଆ ହୋଇଛନ୍ତି ତାଙ୍କୁ ଘେରି । ବହୁଦଳ, ବହୁମତ, ବହୁଜନଶୀଳର ମଣିଷ । ସେଇତ ଅନନ୍ତ ପଟ୍ଟନାୟକଙ୍କର ବୈଚିତ୍ର୍ୟ !

'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା କାଲି ବାହାରିବ । କବିତାଟିଏ ଲେଖିଥିଲେ ରବି ସିଂ । ବିପ୍ଳବୀ କବିମାନଙ୍କ ମଧ୍ୟରେ ଶେଷ ଫୁଲିଙ୍ଗ ! ନିବେଦିତ

କରିଥିଲେ ଅନନ୍ତ ପଟ୍ଟନାୟକଙ୍କୁ । .ସମ୍ପାଦକ ରାଧାନାଥବାବୁଙ୍କ ମନକୁ ପାଉ ନଥିଲା । ଅନନ୍ତବାବୁ ଅଛନ୍ତି । ତାଙ୍କୁ କ'ଣ ନିବେଦିତ କରାଯାଇଛି । ସେ ଧାଡ଼ିଟିକୁ ସେ କାଟି ଦେଇଥିଲେ ।

ଆଖିରୁ ଲୁହ ଝରୁଛି । ସେ ହେଉଛନ୍ତି ୰କୃଷ୍ଣମୋହନ ପଟ୍ଟନାୟକଙ୍କ କବିତା । ଦିନେ ଏଇ କବିତା ତାଙ୍କୁ ଯେପରି ଅନୁପ୍ରାଣିତ କରିଥିଲା ଠିକ୍ ସେଇପରି ଅନୁପ୍ରାଣିତ କରିଥିଲା ଅନନ୍ତ ପଟ୍ଟନାୟକଙ୍କୁ । 'ବାପୁ ତର୍ପଣ କରେ ଆଜ'ର ଲେଖକଙ୍କ ପାଇଁ ସେ ତର୍ପଣ କରୁଛନ୍ତି ଅଶ୍ରୁର ଧାରାରେ ଏବଂ କଟା ଧାଡ଼ିଟିକୁ ପୁଣି ଯୋଡ଼ି ଦିଆଯାଉଛି ରବି ସିଂଙ୍କର କବିତାରେ । ରବି ସିଂ କ'ଣ ପ୍ରଫେଟିକ୍ ? ରବି ସିଂଙ୍କର ଆଖିରୁ ଲୁହ ଝରୁଛି ।

କାନ୍ଦୁଛନ୍ତି ରାମଚନ୍ଦ୍ର ରାମ । 'ସପ୍ତଶଯ୍ୟା' ଚଳଚିତ୍ରର ଭିଲେନ୍ ବା ଖଳନାୟକ । 'ସପ୍ତଶଯ୍ୟା'ର ପ୍ରଯୋଜକ ଢେଙ୍କାନାଳର ଟିକ ଆସିଛନ୍ତି ନିବେଦନ କରିବା ପାଇଁ । 'ସପ୍ତଶଯ୍ୟା'ର ଲେଖକ ଶୋଇପଡ଼ିଛନ୍ତି ଅନ୍ତିମ ଶଯ୍ୟାରେ ।

ଖବର ଛୁଟିଛି ଦ୍ରୁତଗତିରେ । ସୋଭିଏତ୍ ଦେଶର କର୍ତ୍ତୃପକ୍ଷ, ଶାନ୍ତି ଆନ୍ଦୋଳନର ନେତୃବୃନ୍ଦ ମର୍ମାହତ ହୋଇ ପଠେଇଛନ୍ତି "ଶାନ୍ତିଶିଖା" ପାଇଁ ଆପଣାର ବାର୍ତ୍ତା, ଯେଉଁ ଶିଖା ଦିନେ ଜଳୁଥିଲା ଆଉ ପଠାଉଥିଲା ଶାନ୍ତି କପୋତକୁ ।

"ଶାନ୍ତି କପୋତ ଉଡ଼ ଉଡ଼ ଯାଆରେ"

ସେ କପୋତର ଡେଣା ଆଉ ଖୋଲିବ ନାହିଁ । କାରଣ ବାହାରେ ଯୁଦ୍ଧର ଝଡ଼ । ରବୀନ୍ଦ୍ରନାଥଙ୍କ ଭାଷାରେ—

"ଓରେ ବିହଙ୍ଗ ବିହଙ୍ଗମ, ଏଖୋନି ଅନ୍ଧ,
ବନ୍ଧ କରୋନା ପାଁଖା ।"

କାରଣ ସେ ଡେଣା ତ ଆଉ ଖୋଲିବ ନାହିଁ । ପଛରେ ରହିଯିବ ସବୁ ! ଜନନୀ, ଜାୟା କ୍ରନ୍ଦନ । ଜୀବନ ସଂଗ୍ରାମରେ ୭୪ ବର୍ଷ ! କେତେ ସଂଗ୍ରାମ ! ବାପା ମାଆ ପିଲାଦିନୁ ହରାଇ ସଂଗ୍ରାମ । ସାମ୍ରାଜ୍ୟବାଦ, ସାମନ୍ତବାଦ, ଶୋଷଣ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ । ମୃତ୍ୟୁର ରୋଗ ବିରୁଦ୍ଧରେ ସଂଗ୍ରାମ । ସବୁ ସଂଗ୍ରାମର ଶେଷ ! ତୁମେ କ'ଣ କ୍ଳାନ୍ତ !

"ଲଢ଼ିବାକୁ ଯା'ର ସାହସ ନାହିଁ
ସେ କି ବୀର ଯଶ ପାଇ ?"

× × ×

"ଯାଅ ବୀର ପରି କରି ଯା ଲଢ଼ାଇ
ଆଣ ତା ମୁହଁରୁ ସୂର୍ଯ୍ୟ ଛଡ଼ାଇ
ଯାଅରେ
ଅନ୍ଧାର, ଯାଉ ଆଲୁଅର ଧାରା ପାଅରେ ।"

"ଲାଲ ଝୁଲୁ ଝୁଲୁ ସୂକୁଜଟିଏ, କଏ ସେ କଏ"ର ସମଗ୍ର କବିତାକୁ ମୋର ଝିଅ ପ୍ରଜ୍ଞାର ଗୁଲୁଗୁଲୁ କଥାରେ ଶୁଣି, ଅନନ୍ତ ପଟ୍ଟନାୟକ କହୁଥିଲେ ମୋ କବିତାର ସାର୍ଥକତା ଏଇଠି ! ଝିଅ ସେ କଥା ହେଉଛି ।

"ଅନ୍ଧାର ଯାଉ ଆଲୋକର ଧାର ପାଖରେ ।"

ପୃଥିବୀରେ ତଥାପି ରହିଛି ଦାରିଦ୍ର୍ୟର ଅନ୍ଧକାର, ଯୁଦ୍ଧର ଅନ୍ଧକାର ! ତାହେଲେ ଅନନ୍ତ ପଟ୍ଟନାୟକ ଗଲେ କାହିଁକି ?

ବାମପନ୍ଥୀ, ଭଗବଦ୍ଭକ୍ତବିଶ୍ୱାସୀ, ଶ୍ରମିକ, ଶିଳ୍ପପତି, ଲେଖକ, କଳାକାର, ଆଉ ସର୍ବୋପରି ସାଧାରଣ ମଣିଷର ଭିଡ଼ ଜମିଛି । ବାଦାମବାଡ଼ିରୁ ସତୀଚଉରା ।

ଜୀବନ ଯେପରି ସତ୍ୟ । ମୃତ୍ୟୁ ବି ସେଇପରି । ସମସ୍ତେ ଯିବେ । ଯିଏ ଗଲେ, ପଛରେ ଥିବା ଲୋକ ହେଜିବେ ତାହାରି ଜୀବନ ତ ସାର୍ଥକ ।

"ଚୁଲିଲି ମୁଁ ଚୁଲିଲି,
ଦୁଃଖର ଦୁର୍ଭେଦ୍ୟ ପ୍ରାଚୀର ଲଙ୍ଘି ମୁଁ ଚୁଲିଲି"

ଚୁଲି ଚୁଲି....

"ଆଣରେ ତୋର ଲାଲ ପାଇକ
ବଜାଇ ତୋର ମୁକ୍ତି ବାଜା
ବିପ୍ଳବର ଜନମ ଦିନେ ଲୁହାର ହାତ
ପଜା ରୁ ପଜା ।"

ସେଇ ଲୁହାର ହାତ ପୋଡ଼ି ପାଉଁଶ ହୋଇଯାଉଛି । ଚିତା ଜଳୁଛି ଧୂ ଧୂ । ସ୍ୱ ଦିର ଚିତା । ଅନନ୍ତ ପଟ୍ଟନାୟକ ଆଉ ନାହାନ୍ତି ।

"ବିଦାୟ ବନ୍ଧୁ,
ଗୌରବମୟ ପଥ
ବଣନେଲ ତୁମେ
ମୁକ୍ତି ସ୍ୱପନାହତ
ପରପାଇଁ ଦେଲ,
ଦେଲ ଆପଣାରେ ଦାନ
ସମସ୍ତ ଏହାର କଳନା କରିବ ଜାଣ
ରଚ ବନ୍ଦନା ଗାନ
ହେ ବୀର ବିଜୟୀ
ଈଶ୍ୱର ଅଭିମାନ ।"



# ଆତତାୟୀର ଗୁଳିରେ

ମୃତ୍ୟୁ ଆସେ । ଆସିବା ନିଶ୍ଚିତ ଅଲଙ୍ଘନୀୟ ସତ୍ୟ । କିନ୍ତୁ ମୃତ୍ୟୁ କଣ ଇମିତି ଆସେ ? ଅଶୋକ ମିଶ୍ରଙ୍କର ବୟସ ମାତ୍ର ୩୮ ବର୍ଷ । ଯୌବନର ତରଙ୍ଗ ମଥା ପିଟୁଛି ଦେହ ଉପରେ । ବାପା ଅଛନ୍ତି, ମାଆ ଅଛି, ଅଛନ୍ତି ସ୍ତ୍ରୀ, ପୁଣି ନାବାଳକ ପିଲାଦୁଇଟି । ତା'ହେଲେ ? କିନ୍ତୁ ସେ ଅନନ୍ତ ପ୍ରଶ୍ନର ଉତ୍ତର ମିଳିନାହିଁ । ରାଜା ପଚାରିଲେ ପଣ୍ଡିତଙ୍କୁ । ଆପଣ ତ ସର୍ବବିଦ୍ୟାସମ୍ପନ୍ନ । କହିଲେ କାହିଁକି ମୃତ୍ୟୁ ହୁଏ ସ୍ତ୍ରୀ ଆଗରେ ସ୍ୱାମୀର ? କଣ ଏହାର ଗୂଢ଼ ରହସ୍ୟ । ନିସ୍ତବ୍ଧତା ନଇଁ ଆସିଥିଲା ରାଜସଭାରେ । ଆଉ ତା'ପରେ ଶୁଭିଥିଲା ପଣ୍ଡିତଙ୍କର ବାଣୀ ମନ୍ଦ୍ରମ୍ଭ ଶ୍ଳୋକ ପରି । ରାଜନ୍, ସେ ପ୍ରଶ୍ନ ହେଉଛି ଅନନ୍ତ । ସେ ପ୍ରଶ୍ନର ଉତ୍ତର ମିଳି ନାହିଁ । ମିଳିବବି ନାହିଁ । ଆପଣ ସତ୍ୟକୁ ସ୍ୱୀକାର ମାତ୍ର କରିନେବେ । ପ୍ରଶ୍ନ ପଚାରି ଲାଭ ନାହିଁ । କାରଣ ଉତ୍ତର ଦେବ କିଏ ?

ଅଶୋକ ଏଇ କଟକ ସହରରେ ପଢ଼ୁଥିଲା । ସାଙ୍ଗରେ ଆହୁରି ଅନେକ ମେଧାବୀ ଛାତ୍ର ଥିଲେ । ଯେମିତି ଅଜନ୍ତ କୁମାର ତ୍ରିପାଠୀ । ଅଶୋକ ମାଟ୍ରିକୁଲେଶନ ପରୀକ୍ଷାରେ ସାରା ଓଡ଼ିଶାରେ ପ୍ରଥମ ହୋଇଥିଲା । ଆଜି ମଧ୍ୟ ତାର ଶିକ୍ଷକମାନେ ତା'କଥା ସ୍ମରଣ କରନ୍ତି । ମୃତ୍ୟୁ ସମ୍ବାଦ ପାଇଲାପରେ ଛାତ୍ର ପାଇଁ ଶିକ୍ଷକଙ୍କର ଆଖି ଦୁଇ ଟଳମଳ ହେବା ଦେଖିଛି । ଅଶୋକ ପରେ ଆଇ.ଏ.ଏସ୍. ହୋଇଥିଲା । ପୋଷ୍ଟିଂଗ ହୋଇଥିଲା ପଞ୍ଜାବରେ । ଭାରତର ଶସ୍ୟର ଗନ୍ତାଘର ପଞ୍ଜାବ, ଭାରତର ଶିଳ୍ପ ବିପ୍ଳବର ସାଫଲ୍ୟ ଭୂମି ପଞ୍ଜାବ ବିପଦଶଙ୍କୁଳ ହୋଇ ଉଠୁଥିଲା । ଅଶୋକ କିନ୍ତୁ କାମ କରି ଚାଲିଥିଲା । ବିପ୍ଳବୀ ଭଗତ ସିଂଙ୍କର ପଞ୍ଜାବ, ବର୍ତ୍ତମାନ ନୂତନ ସନ୍ତ୍ରାସବାଦର ପୀଠ । ଅଶୋକର ପୋଷ୍ଟିଙ୍ଗ୍ ହୋଇଥିଲା ପଞ୍ଜାବରେ ।

ସାର୍ (ଅଧ୍ୟାପକ ତ୍ରିଲୋଚନ ମିଶ୍ର ଅଶୋକର ବାପା)ଙ୍କ ସାଙ୍ଗରେ ଦେଖାହୁଏ ମଝିରେ ମଝିରେ । ଗର୍ବିତ ପିତା କୁହନ୍ତି । ହସର ଏକ କ୍ଷୀଣ ରେଖା ଫୁଟିଯାଏ ମୁହଁ ଉପରେ । ଅଶୋକ ପଠାଉଛି ଟଙ୍କା ମୋ ପାଖକୁ । ପଚାରୁଛି ଆମକୁ । ଆଉ କରପ୍ଟ ନୁହେଁ ବୋଲି ସମସ୍ତେ କହୁଛନ୍ତି । ମୁଁ ପଚାରିଥିଲି । ବାପର ଇମିତି ପ୍ରଶ୍ନରେ ପୁଅ ଆଶ୍ଚର୍ଯ୍ୟ ହୋଇଥିଲା । ବୁଝିଲି ଗିରିଜା, ଦକ୍ଷ ଏବଂ ସଚ୍ଚୋଟ ଅଫିସର ଭାବରେ ତା'ର ନାଁ ଅଛି ବୋଲି ଶୁଣିଲି । ପିତାର ଉତ୍ତର । ବାପାମାଆଙ୍କୁ ପଚାରୁଛି ଏବଂ ସଚ୍ଚୋଟ ଦକ୍ଷ ଅଫିସର ଭାବରେ ନାଁ କରିଛି । ଜଣେ ପିତାର ତା'ଠାରୁ ବଳି ଗର୍ବର କଥା କଣ ହୋଇପାରେ ?

ସେ ଗର୍ବ ରହିବାକୁ ବିଧି ଦେଲା ନାହିଁ । ଆତତାୟୀର ଗୁଳିମାଡ଼ରେ ଅଶୋକ ମୃତ । ମାତ୍ର ୩୮ ବର୍ଷ ବୟସରେ ଏଇ ଫୁଲ ଝଡ଼ି ପଡ଼ିଲା । କିନ୍ତୁ ତାଙ୍କୁ ହତ୍ୟାକରି କଣ ପାଇଲେ ଆତତାୟୀମାନେ ? ଖଲିସ୍ଥାନ, ନାଁ ଏକ ନିର୍ବୋଧ ପ୍ରତିଶୋଧ ? ପଞ୍ଜାବ ବର୍ତ୍ତମାନ ଏକ ଅବରୁଦ୍ଧ ରାଜ୍ୟ । ଦ୍ୱିଧାବିଭକ୍ତ ଖଲିସ୍ଥାନ ଦାବୀ କରୁଥିବା ଗୋଷ୍ଠୀମାନେ ଯେପରି ଲକ୍ଷ୍ୟଭ୍ରଷ୍ଟ, ପଞ୍ଜାବର ମୁଖ୍ୟ ଜୀବନସ୍ରୋତ ସହିତ କୌଣସି ସମ୍ପର୍କ ନଥିବା ସାମରିକ ବାହିନୀ ସେହିପରି ହିଂସ୍ର, ଉନ୍ମତ୍ତ । ହିଂସାର ଶିକାର ଅଶୋକ ମିଶ୍ର । ଜାତୀୟ ସଂହତି ରକ୍ଷା ପାଇଁ ଯାହାର ପୌରୁଷ ହୋଇଥିଲା ସେ ହିଁ ବଳି ପଡ଼ିଲା ତାହାର ଯୂପକାଠରେ ।

ଏ ଶୋକର ସୀମା ନାହିଁ । ଯାହାର ଶୋକ ନାହିଁ ସେ ଅଶୋକ । ସେଥିଯୋଗୁଁ ଯେଉଁ ଶୋକ ସେ ଛାଡ଼ିଯିବ ତାହାର ଅନ୍ତ କାହିଁ ? କିଏ ଦେବ ତାହାର ସମବେଦନା ? ମହାକାଳ ସମସ୍ତ ସର୍ବଦୁଃଖହର ।

ସେ ହିଁ ପୋଛିପାରେ ଏହି ଦୁଃଖର ତମିସ୍ରାକୁ । ଅଶୋକ ହୋଇଛି ଏକ ବଳିଦାନ ମହାଯଜ୍ଞର ପୂଜାବେଦୀରେ । ସେ ବଳିଦାନ ସାର୍ଥକ ହେଉ । ତାହା ହିଁ ହେବ ତାହାର ମୃତ୍ୟୁର ଯଥାର୍ଥ ଶୋକ ।



# ରୋଗୀରୁ ଡାକ୍ତର

୧୯୫୧ ମସିହା ଜୁଲାଇ ୧୯ ତାରିଖ । ଠିକ୍ ଆଜିକୁ ଚାଳିଶ ବର୍ଷ ତଳେ । ଏଇଦିନ । କଟକ ଜେଲଖାନାର ପନ୍ଦର ନମ୍ବର ଗେଟ୍ ଦେଇ ଚାରିଜଣ ଯୁବକ ଗୋବିନ୍ଦ ଦାସ (ବାରିଷ୍ଟର), ରାଜେନ୍ଦ୍ର ପ୍ରସାଦ ଦାସ (ଐତିହାସିକ) ସହଦେବ ମିଶ୍ର (ପରେ ପୋଷ୍ଟାଲବିଭାଗର ଜଣେ କର୍ମଚାରୀ) ଏବଂ ଅକ୍ଷୟ ମହାନ୍ତି । ବାହାରେ ପ୍ରସିଦ୍ଧ ଦରମା ବୃଦ୍ଧି ବିରୋଧୀ ଆନ୍ଦୋଳନ । ଚରିକୁଚରିତ ଭାବରେ ଆମେସବୁ ସେମାନଙ୍କୁ ସ୍ୱାଗତ କରିନେଲୁ ଆମ ଓ୍ୱାର୍ଡ଼କୁ । କାଲି ଖଟ, ଗଦି, ଆସିବ କିନ୍ତୁ ଆଜି ସେମାନେ ଆଡ଼ଜଷ୍ଟେଡ଼ ହୋଇଯିବେ ଆମ ସାଙ୍ଗରେ । ପୁରୁଣା ମେସ ବା ହଷ୍ଟେଲ ଜୀବନର ସ୍ମୃତି । ସମସ୍ତେ ଖୁସିଲେ । ରହିଲେ । କେବଳ ଅକ୍ଷୟ ମହାନ୍ତିଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ଡାକ୍ତର ଗୌରାଙ୍ଗ ପଟ୍ଟନାୟକ ଡକାଇ ନେଇଗଲେ ଅନ୍ୟ ସେଲକୁ । କଣ ହେଲା, କାହିଁକି ? ସୁପରିଣ୍ଟେଣ୍ଡେଣ୍ଟଙ୍କ ସହିତ ଆମର ସମ୍ପର୍କ ନିବିଡ଼ ହୋଇ ଯାଇଥାଏ ତାଙ୍କର ପୁଅ କନ୍ୟାମାନଙ୍କ ସାହାଯ୍ୟରେ । ଗୌରାଙ୍ଗ ପଟ୍ଟନାୟକ ଇମିତି ଆଦେଶ ଦେଲେ କାହିଁକି ? ଅକ୍ଷୟ ମହାନ୍ତି ମୁହଁରେ ବେଶ୍ ଦାଢ଼ି । ମାର୍କ୍ସବାଦ ବିରୋଧୀ ଅକ୍ଷୟ, ମୋର ସହପାଠୀ ଅକ୍ଷୟ । ଦାଢ଼ି କିନ୍ତୁ ରଖିଥାନ୍ତି ମାର୍କ୍ସଙ୍କ ପରି । ଗୌରାଙ୍ଗବାବୁ ନିର୍ଦ୍ଦେଶ ଦେଲେ ଦାଢ଼ିକୁ କାଟିଦବା ପାଇଁ । କଣ ସେ କଇଦୀ ବୋଲି ? ପ୍ରତିବାଦ ଉଠିଲା, ଉଠିବା ସ୍ୱାଭାବିକ । ଗୌରାଙ୍ଗବାବୁ ବନମାଳୀ ଦାସଙ୍କୁ ଡାକି କହିଲେ ଚୁପ୍ କରି । ଆପଣ ତାଙ୍କୁ ବୁଝାନ୍ତୁ । ମୋର ସନ୍ଦେହ ଯେ ରୋଗାକ୍ରାନ୍ତ ଆଉ ଦାଢ଼ି ନ କାଟିଲେ ପରୀକ୍ଷା ହୋଇ ପାରିବ ନାହିଁ । ଦାଢ଼ି କଟା ହେଲା, ପରୀକ୍ଷା ହେଲା ଏବଂ ଦେଖାଗଲା ଯେ ଗୌରାଙ୍ଗ ବାବୁଙ୍କ ଆଶଙ୍କା ସତ୍ୟ । ଅକ୍ଷୟ ମହାନ୍ତି କୁଷ୍ଠ ରୋଗାକ୍ରାନ୍ତ । ସେତେବେଳେ କୁଷ୍ଠ ରୋଗ ଥିଲା ଦୁରାରୋଗ୍ୟ ବେମାରି । ହିନୋକପସ ତେଲ ଛଡ଼ା ଆଉ ଔଷଧ କିଛି ନଥିଲା । ଆଉ ଯେ ଚିକିତ୍ସା ଦେଖିଛି ସେ ହିଁ ଅନୁଭବ କରିପାରିବ ବେଦନା । କି ଯନ୍ତ୍ରଣା, ପୁଣି ଓଭରଡୋଜ୍ ହୋଇଯିବାର ବିପଦ ଏବଂ ଓଭରଡୋଜ ହୋଇଗଲେ ରକ୍ଷା ନାହିଁ ।

ଦୁଃଖରେ ମ୍ରିୟମାଣ ଅକ୍ଷୟ ଜେଲଖାନାରୁ ବାହାରିଲେ ଏବଂ ବାହାରିଲେ ଏକ ଦୀର୍ଘ ଯାତ୍ରା ପଥରେ । ଜୀବନର ମୋଡ଼ ବଦଳିଗଲା । ସେଥିରୁ ଆଉ ସେ ପଛକୁ ଫେରି ଅନେଇ ନାହାନ୍ତି । ଏକ ନୂତନ ବିପ୍ଳବର ସ୍ୱପ୍ନ ତାଙ୍କୁ ଆଚ୍ଛନ୍ନ କରି ରଖିଲା । ସେ ବୁଲିଲେ ସତାର, ମହାରାଷ୍ଟ୍ରକୁ ଆପଣାର ଚିକିତ୍ସା ପାଇଁ । ଆମେରିକାର

ମିଶନାରୀମାନେ ସେଇଠି ଶିବିର ଖୋଲିଥାନ୍ତି ନୂତନ ପଦ୍ଧତିରେ କୁଷ୍ଠରୋଗର ଚିକିତ୍ସା ପାଇଁ । ଅକ୍ଷୟ ମହାନ୍ତି ସମାଜବାଦୀ ଥିଲେ । ଦେଖିଲେ ଆଉ ଏକ ନୂତନ ଧରଣର ସମାଜବାଦ । ଭାରତର ବିଭିନ୍ନ ଅଞ୍ଚଳରୁ ଆସିଛନ୍ତି ଦୁରାରୋଗ୍ୟ ରୋଗର ଶିକାର ହୋଇ ବିଭିନ୍ନ ଭାଷାଭାଷୀ, ବିଭିନ୍ନ ବୟସ, ବିଭିନ୍ନ ରଙ୍ଗର ଲୋକ । ରୋଗର ବିଭୀଷିକା ସୃଷ୍ଟି କରିଛି ମହାଶୂନ୍ୟର ସାମ୍ୟ । ଅକ୍ଷୟ ମହାନ୍ତି ଅଟକି ଗଲେ, ନିଜ ରୋଗର ଚିକିତ୍ସା ବଡ଼ କଥା ନୁହେଁ, ତା'ଠାରୁ ବଡ଼ ହେଉଛି ଏହି ରୋଗର ଉପଶମ ପାଇଁ ଉଦ୍ୟମ, ନିରାକରଣ ପାଇଁ ବ୍ୟବସ୍ଥା ।

ରୋଗୀ ପାଲଟିଲା ଡାକ୍ତର । ଚିକିତ୍ସା ବିଜ୍ଞାନର ଧାର ଧାରି ନଥିଲା ସେ । କିନ୍ତୁ କିଛି ପାଠ ନପଢ଼ି ଯଦି ବିନୋଦ କାନୁନ୍‌ଗୋ ପାଠୁଆ ଲୋକଙ୍କୁ ପାଠ ପଢ଼ାଇ ପାରିଲେ ତାହା ହେଲେ ଅକ୍ଷୟ ମହାନ୍ତି କାହିଁକି ରୋଗୀରୁ ଡାକ୍ତର ହୋଇ ପାରିବ ନାହିଁ ?

ସେ ରୋଗୀରୁ ଡାକ୍ତର ପାଲଟିଲା । ଆଉ ଧୀରେ ଧୀରେ ତାର ଖ୍ୟାତି ଚହଟିବାକୁ ଲାଗିଲା । ସ୍ଥାନୀୟରୁ ପ୍ରାଦେଶିକ, ରାଜ୍ୟରୁ ଜାତୀୟ, ଜାତୀୟରୁ ଆନ୍ତର୍ଜାତିକ କୁଷ୍ଠ ରୋଗ ବିଶେଷଜ୍ଞ ହେଲେ ଏବଂ ସତାରାକୁ ହିଁ ତାଙ୍କର କର୍ମସ୍ଥଳୀ ଏବଂ ବିଶ୍ରାମସ୍ଥଳୀ କରିନେଲେ । ଖ୍ୟାତି ଆସିଛି । ଆସିଛି ସମ୍ମାନ । କିନ୍ତୁ ଓଡ଼ିଶାକୁ ସେ ଭୁଲି ନାହାନ୍ତି । କେନ୍ଦ୍ରାପଡ଼ାରେ ବିବାହ କରିଛନ୍ତି । ଏବଂ ମଝିରେ ମଝିରେ ଆସନ୍ତି ଗାଁକୁ ଭାଣ୍ଡପୁର । କଟକ ଭୁବନେଶ୍ୱର ରାସ୍ତାକଡ଼ରେ । ଖୋଜନ୍ତି ରୋଗୀ, ଖୋଜନ୍ତି ଆଗ୍ରହୀ ବ୍ୟକ୍ତି । ଅନେକଙ୍କୁ ସେ ନେଇ ଯାଇଛନ୍ତି ସାଙ୍ଗରେ ଆଉ ତାଲିମ ଦେଇ ଫେରାଇ ଦେଇଛନ୍ତି ଓଡ଼ିଶାକୁ । ଯାଅ, କାମ କର, ରୋଗୀର ଚିକିତ୍ସା କର ।

କ୍ରମେ ଅବସର ନେବାର ସମୟ ଆସିଛି । ବୃତ୍ତିରୁ ଅବସର ନେଇଛନ୍ତି । କର୍ମରୁ ନୁହେଁ । ବହୁମୂତ୍ର, ରକ୍ତଚାପ ରୋଗ ଧୀରେ ଧୀରେ ଦେହକୁ ଖାଇଯିବାକୁ ଆରମ୍ଭ କରିଛି । ସେଥିରେ ଚିନ୍ତିତ, ବିବ୍ରତ ହୋଇ ନାହାନ୍ତି । ଜାତସ୍ୟ ହିଁ ଧ୍ରୁବ ମୃତ୍ୟୁ । ଦେହ ଏକ ବସ୍ତୁ । ଏହାର ଧ୍ୱଂସ ଅବଶ୍ୟମ୍ଭାବୀ । ତେଣୁ ବିବ୍ରତ ହୋଇ ଲାଭ କ'ଣ ? ଏବେ ଆସିଥିଲେ ଓଡ଼ିଶା । ପୁରାତନ ସହଯୋଦ୍ଧା, ସମାଜବାଦୀ ସହଯୋଦ୍ଧା ରବିରାୟ ନିର୍ବାଚନରେ ପ୍ରାର୍ଥୀ । ଅଭ୍ୟାସ ତଥାପି ଛାଡ଼ି ନାହିଁ । କିଛି କରିବାକୁ ହେବ । ତାର ଭିତରେ ପୁଣି କେଉଁ ରୋଗୀର ରକ୍ତ ସାମ୍ପଲ ନଆସିବ ଇତ୍ୟାଦି ।

କିନ୍ତୁ ଡାକ୍ତର ପାଲଟିଥିବା ରୋଗୀର ଯେ ସମୟ ହୋଇଯାଇଛି ଏ କଥା କିଏ ଜାଣିଥିଲା ? ଏବଂ ଜାଣି ନାହାନ୍ତି ବୋଲି ତ ମୃତ୍ୟୁ ରହସ୍ୟମୟ । ଅକ୍ଷୟ ମହାନ୍ତି ଆଉ ନାହାନ୍ତି । ତାଙ୍କର ହଠାତ୍ ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇ ପରଲୋକ ହୋଇ-ଯାଇଛି । ତଥାପି ତ କୁଷ୍ଠରୋଗ ବ୍ୟାପୁଛି ଗାଁ ଗାଁରେ । ଲୋକଙ୍କ ଭିତରେ ତ ତଥାପି

ଭସ୍ମ ରହିଛି ଏଇ ରୋଗ ପ୍ରତି । ସେମାନଙ୍କର ଚିକିତ୍ସା ପାଇଁ, କୁଷ୍ଠ ରୋଗର ମୂଳୋତ୍ପାଟନ ପାଇଁ ଚାଲିଛି ସଂଗ୍ରାମ । କିନ୍ତୁ ଏଇ ସଂଗ୍ରାମ, ଏଇ ବିଶ୍ୱବ୍ୟାପି ସଂଗ୍ରାମର ମହାରଥୀ ଅକ୍ଷୟ ମହାନ୍ତି ଆଉ ନାହାନ୍ତି । ଦୀର୍ଘ ଚାଳିଶବର୍ଷର କଠୋର କର୍ମକ୍ଳାନ୍ତ ଶରୀର ମାଟିରେ ମିଶି ଯାଇଛି । କେହି ରହିବେ ନାହିଁ, ଏହା ସତ୍ୟ । କିନ୍ତୁ ରୋଗର ଚିକିତ୍ସା ପାଇଁ ଯେତେବେଳେ ଧୁକୁ ଧୁକୁ ଆଲୋକର ରେଖା ପଡ଼ିବ, ସେତେବେଳେ ଅକ୍ଷୟ ମହାନ୍ତି ମନେପଡ଼ିବେ ଅସୁମାର ମନରେ । ଆଉ ସେଇ ହେଉଛି ତାଙ୍କର ଜୀବନର ସାର୍ଥକତା ।



# ହେ ପୁରବନ୍ଧୁ ବିଦାୟ

ଗଲା ସପ୍ତାହରେ ଦୁଇଜଣ ବନ୍ଧୁ, ସହପାଠୀ ହଜିଗଲେ । ହଠାତ୍ ଦୁଇଜଣଙ୍କର ଯାତ୍ରା ସେଇଠିକୁ, ଯେଉଁଠାରୁ ଆଉ କେହି ଫେରି ନାହାନ୍ତି । ସେମାନେ ପାଲଟିଗଲେ ଇତିହାସ ।

ପ୍ରଥମେ ଗଲେ ସିଦ୍ଧେଶ୍ୱର ବିଦ୍ୟାଧର । ସହପାଠୀ ଥିଲେ । ପେଶାରେ ଡାକ୍ତର । ସ୍ତ୍ରୀ ଅଧ୍ୟାପିକା । ପୁଅଟିଏ ଓ ଝିଅଟିଏ । କେବେ କୌଣସି ଚିନ୍ତା, ଦୁଃଖ, ଉଦ୍‌ବେଗ ତାଙ୍କୁ ପାରି ନଥିଲା । ସଫାସୁତୁରା ସୁନ୍ଦର । ହସ ହସ ମୁହଁ । ମେଡ଼ିସିନ ବିଭାଗର ଡାକ୍ତର । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଡାକ୍ତରଖାନାର ସୁପରିଣ୍ଟେଣ୍ଡେଣ୍ଟ । ଅବସର ପରେ କିଛି ସମୟ ପାଇଁ ନାଲକୋରେ ଡାକ୍ତର । ନାଁ, ଆଉ କିଛି କରିବି ନାହିଁ । ଏଣିକି ବୁଲିବି । ମହାନଦୀ ବିହାରର ନିଜ ଘରେ ରହିବି । ବିଦେଶ ଯାଇ ଏତେ କଷ୍ଟରେ ଘର କରିଛି । ଏଣିକି ନିଜେ ସେ ଘରେ ରହିବି । ସାମାଜିକ କାର୍ଯ୍ୟରେ ନିଜକୁ ନିୟୋଗ କରିବି । ପୁଅ ବିବାହର କାର୍ଡ ବାଣ୍ଟିଲାବେଳେ ଏଇଥିଲା ତାଙ୍କର ହସ ହସ ମୁହଁର ଉକ୍ତି । କିଣ ପୁଣି ନିବେଶି ପତ୍ନୀ ପାଖେ, ଅଥବା ଚାଲିବି ସନ୍ନ୍ୟାସେ ? ନୁହେଁ କିଣ ।

ସେଦିନ ଉଣେଇଶ ଶହ ତେସ୍ତାନବେ ସାଲ ମଇ ମାସ ଉଣେଇଶ ତାରିଖ ମଧ୍ୟରାତ୍ରି । ହଠାତ୍ ସେ ଯନ୍ତ୍ରଣା ଅନୁଭବ କଲେ ଛାତିରେ । ପଡ଼ୋଶୀ ଡାକ୍ତର ଯଦୁନାଥ ପ୍ରସାଦ ଦାସ । ସେ ଖବର ପାଇ ଦୌଡ଼ି ଆସିଲେ । କିନ୍ତୁ ସବୁ ସରି ଯାଇଥିଲା ସେତେବେଳକୁ । ପତ୍ନୀ କାନ୍ଦୁଛନ୍ତି । କିଛି ତ ହୋଇ ନଥିଲା, କିଛି ତ କୁଅଭ୍ୟାସ ନଥିଲା । ପାନ, ବିଡ଼ି, ଗୁଡ଼ାଖୁ, ମଦ୍ୟ, କିଛି ନାହିଁ । ତଥାପି କିଣ ହେଲା ଇମିତି ? କିଏ ଦେବ ଉତ୍ତର ? ଏ ଉତ୍ତର ତ ଅନନ୍ତ । ସୃଷ୍ଟିର ଆରମ୍ଭରୁ ଏଇ ପ୍ରଶ୍ନ । ଅମୀମାଂସିତ ଏବଂ ରହସ୍ୟମୟ ।

ସପ୍ତାହେ ପୂରି ନାହିଁ । ହଠାତ୍ ବନ୍ଧୁ ଡାକ୍ତର ବିଜୟ ପଟ୍ଟନାୟକ ଫୋନ କଲେ । ଶୁଣିଲଣି, ଡାକ୍ତର ଆକୁଳାନନ୍ଦ ଷଡ଼ଙ୍ଗୀ ଏଇନା ଚାଲିଗଲେ । ମଇ ମାସ ୨୫ ତାରିଖ ମଙ୍ଗଳବାର । ରୋଟାରୀ ଦିବସ । ରୋଟାରୀ କ୍ଲବର ପୂର୍ବତନ ଗଭର୍ଣ୍ଣର ପ୍ରସିଦ୍ଧ ଡାକ୍ତର ଆକୁଳାନନ୍ଦ ଷଡ଼ଙ୍ଗୀ ଚାଲିଲେ ସିଦ୍ଧେଶ୍ୱରଙ୍କ ସାଙ୍ଗରେ, ପାଖକୁ କି ନାହିଁ କିଏ କହିବ ?

ଆକୁଳାନନ୍ଦ ସହପାଠୀ ଥିଲେ । ଜୀବନର ବନ୍ଧୁ ବିଶ୍ୱବ ସହିତ ତାଙ୍କର ସମ୍ପର୍କ ଥିଲା ନିବିଡ଼ । କଲେଜରେ ପାଠ ପଢ଼ିବା ଦିନଠାରୁ ସାମାଜିକ କାର୍ଯ୍ୟ ପ୍ରତି

ଆଗ୍ରହ । ତାହା ପରେ ରୂପାନ୍ତରିତ ହୋଇଛୁ ଶ୍ୱେତାଶ୍ୱ କ୍ଲବରେ । ସାଧାରଣ ସଭ୍ୟ ପଦରୁ ଶ୍ୱେତାଶ୍ୱ ଗଭର୍ଣ୍ଣର ହୋଇଛନ୍ତି । ଦେଶ ବିଦେଶ ବୁଲିଛନ୍ତି । ବିଭିନ୍ନ ସାମାଜିକ କାର୍ଯ୍ୟରେ ହାତ ଦେଇଛନ୍ତି । ମେଡ଼ିସିନ୍ ବିଶେଷଜ୍ଞ । କିନ୍ତୁ କ୍ୟାନସର ରୋଗ ପ୍ରତି ତାଙ୍କର ବିଶେଷ ଆଗ୍ରହ । କ୍ୟାନସର ଇନ୍‌ଷ୍ଟିଚ୍ୟୁଟର ଡାଇରେକ୍ଟର । ବ୍ରହ୍ମପୁର ମେଡ଼ିକାଲ କଲେଜର ପ୍ରିନ୍‌ସିପାଲ ହୋଇଛନ୍ତି । ପ୍ରତିଷ୍ଠା ଲାଭ ମଧ୍ୟ କରିଛନ୍ତି ।

ଅବସର ପରେ ସେ କୋଷ୍ଠା ଲେଭଲ କ୍ରସିଂ ପାଖରେ ଘର କରିଛନ୍ତି । ଦୁଇ ପୁଅ । ଗୋଟିଏ ଝିଅ । ପୁଅଟିଏ ଝିଅଟିଏ ଡାକ୍ତର । ଆଉ ପୁଅଟି ବ୍ୟବସାୟ କରନ୍ତି । ଘର ସମ୍ପୂର୍ଣ୍ଣ ହୋଇନାହିଁ । ସମ୍ପୂର୍ଣ୍ଣ ନ ହେବା ତ ଜୀବନ । ସବୁ କାମ କିଏ ସାରିପାରେ ଜୀବନରେ ? କିନ୍ତୁ ମୃତ୍ୟୁ କିଏ ଇମିତି ଆସେ ? ଅସ୍ପନ୍ଦ । କିଛି ନାହିଁ । ହଠାତ୍ ଛାତିରେ ଯନ୍ତ୍ରଣା, ତା'ପରେ ଡାକ୍ତରଖାନା ଏବଂ ତା'ପରେ ମହାଯାତ୍ରା ।

ଆକୁଳାନନ୍ଦଙ୍କର ପ୍ରଶାନ୍ତ ମୁଖ ମଣ୍ଡଳରେ ଯନ୍ତ୍ରଣା ବା ମୃତ୍ୟୁର ଚିହ୍ନ ନାହିଁ । ଚାରିଆଡ଼େ ଚୁପା ଚୁପା କାନ୍ଦଣା, ଲୁହର ସୁଅ । ସାନ ଝିଅଟିଏ ମା'ଟିକୁ ପଚାରି ଚାଲିଛି, ମ ସେ ମଲେ କାହିଁକି ? ସେ କେବେ ଫେରିବେ ? କାହିଁକି ମରିଯାନ୍ତି କହୁନ ମା ? ମା'ର ଉତ୍ତର କେବଳ ଅଧିକ କୋହ ଏବଂ ଅଧିକ ଲୁହରେ । ଘର ବାହାରେ ଦମକଳଟିଏ ଆସି ପହଞ୍ଚିଛନ୍ତି ସୁଦୂର ଫୁଲବାଣୀରୁ ଚିକିତ୍ସା ପାଇଁ ଡାକ୍ତରଙ୍କ ପାଖକୁ । କିନ୍ତୁ ଡାକ୍ତର ଯେ ଆହୁରି ଦୂରକୁ ଚାଲିଗଲେଣି ସେମାନେ ଜାଣି ନାହାନ୍ତି । ରିକ୍ସା ଉପରେ ସେମାନେ ପଥର ପରି ବାନ୍ଧିହେଉଛନ୍ତି, ଆମେ ଯିବୁ କୁଆଡ଼େ ?

ରଜନୀଗନ୍ଧା ଫୁଲର ମହକ ଭିତରେ ଆକୁଳାନନ୍ଦ ଯେପରି ଧ୍ୟାନମଗ୍ନ । ନିର୍ଲିପ୍ତତାର ଢେଉ ଖେଳି ପଡୁଛି ମୁହଁ ଉପରେ । ଏହା ମୃତ୍ୟୁ ନା ଧ୍ୟାନର ଭ୍ରମ ସୃଷ୍ଟି କରୁଛି ।

ଉଭୟେ ସିଦ୍ଧେଶ୍ୱର ବିଦ୍ୟାଧର ଏବଂ ଆକୁଳାନନ୍ଦ ଷଡ଼ଙ୍ଗୀ ଜଗନ୍ନାଥଙ୍କର ଭକ୍ତ ଥିଲେ । ଅନ୍ତିମ ଇଚ୍ଛା ଥିଲା ଯେ ସ୍ୱର୍ଗଦ୍ୱାରରେ ସେମାନଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ ଏବଂ ସେମାନେ ଲୀନ ହୋଇଯିବେ ଅନନ୍ତ ବ୍ରହ୍ମ ଭିତରେ ।

ଯିବେ ସମସ୍ତେ । କେହି ରହିବେ ନାହିଁ । କିନ୍ତୁ ସିଦ୍ଧେଶ୍ୱର ଏବଂ ଆକୁଳାନନ୍ଦ ସ୍ମୃତି ହୋଇ ରହିବେ ବହୁକାଳ ଧରି ଆପଣାର ଅଗଣିତ ବନ୍ଧୁମାନଙ୍କର ସ୍ମୃତିରେ । ହେ ଦୁଇବନ୍ଧୁ ବିଦାୟ ।

ଓଁ, ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।



# ଆଲୋକେଶ

# ତମେ ହଠାତ୍ ଗଲ କୁଆଡେ ?

ଆଲୋକେଶ, ତମେ ହଠାତ୍ ଇମିତି କଣ ଚାଲିଗଲ ? ଯିବାର ଥିଲେ ତ ତମେ ୧୭ ବର୍ଷ ତଳେ ଯାଇଥାନ୍ତ । ସେତେବେଳେ ତ ଗଲ ନାହିଁ । ଜୀବନ ମୃତ୍ୟୁ ଭିତରେ କଠୋର ସଂଗ୍ରାମର ତ ତମେ ହୋଇଛ ବିଜେତା । ପାଠ ପଢ଼ୁଥିଲ ଇଞ୍ଜିନିୟରିଂ କଲେଜରେ । କେତେ ସ୍ୱପ୍ନ ଦେଖିଥିବ, ନିଜପାଇଁ, ପରିବାର ପାଇଁ ଦେଶ ପାଇଁ । ବାପା ଅନନ୍ତ ପଟ୍ଟନାୟକ ଆପଣାର କବିତାରେ ଲେଖିଥିଲେ "ସ୍ୱପ୍ନେ ନିସ୍ୱନ ମାଜି"; କିନ୍ତୁ ସେଦିନ ଏକ ଛୋଟ ଘଟଣା ତମର ଜୀବନକୁ ସବୁ ଓଲଟ ପାଲଟ କରିଦେଲା, ମନେପଡ଼ୁଛି ? ପାଠ ପଢ଼ା ଇତି ହୋଇଗଲା । ଆରମ୍ଭ ହେଲା ଡାକ୍ତରଖାନାରେ ଜୀବନ-ମୃତ୍ୟୁ ମଧ୍ୟରେ ସଂଗ୍ରାମ । କଟକ, କଲିକତା, ମସ୍କୋ, ଆମେରିକା, ଭେଲୋର । ଏଇ ଅଛି, ଆଉ ଟିକିକରେ ରହିବ କି ନାହିଁ, ତାର କୌଣସି ଠିକଣା ନଥିଲା । ମୃତ୍ୟୁ ସହିତ ଏଭଳି ଐତିହାସିକ ସଂଗ୍ରାମ କ୍ୱଚିତ ଦେଖାଯାଏ । ଡାକ୍ତରୀ ବିଦ୍ୟାର କୃତିତ୍ୱ ତ ଥିଲା ନିଶ୍ଚୟ । କିନ୍ତୁ ତା' ଠାରୁ ବେଶି ଥିଲା ମାନସିକ ଶକ୍ତି । ମୁଁ ସଂସାରକୁ ଆସିଛି । ଅନେକ କାମ ବାକିଅଛି, ଯିବି କୁଆଡେ ? ତମର ବିଦାୟ ହେଲା ।

ଜୀବନର ଏକ ନୂତନ ପର୍ଯ୍ୟାୟ ଆରମ୍ଭ ହେଲା । ପ୍ରତ୍ୟେକ ମୁହୂର୍ତ୍ତରେ ମୃତ୍ୟୁର ପଦଧ୍ୱନି । ତଥାପି ଜୀବନ ହୋଇଛି ସତ୍ୟ ଏହା ହିଁ ତ ପ୍ରମାଣ କରିଗଲ ଜୀବନରେ । ଶିଳ୍ପ ତିଆରି କଲ । ଜଣେ ସଚ୍ଚୋଟ ଶିଳ୍ପପତି ଭାବରେ ତମର ସୁନାମ, ତମର ଆଲେଖ୍ୟ, ତମର ସହଯୋଗୀମାନେ ସ୍ମରଣ କରନ୍ତି । ଘର ତିଆରି କଲ, ପରିବାର ନିଜେ ଗଢ଼ିଲ ନାହିଁ, କିନ୍ତୁ ଦୁଇ ଭାଇ ଭଉଣୀର ପରିବାର ଭିତରେ ଖୋଜିଲ ଏବଂ ପାଇଲ ତୃପ୍ତି । ତମେ କଣ ଦେଖି ପାରୁନ, ଭଉଣୀ କିମିତି କାନ୍ଦୁଛି ତମକୁ ଧରି ? ନାଇଁମ, ଭାଇର କିଛି ହୋଇ ନାହିଁ । ହେବାର ଥିଲେ କେତେ ଆଗରୁ ହୋଇଥାନ୍ତା ? ଉଠ ଆଲୋକେଶ, ଉଠ । ବାପାଙ୍କର ସମାଧି ଆରମ୍ଭ କରିଛ ପରା ଏବେ ? ସମାଧି ସରିନାହିଁ ।

"ଧୂମରି ଜନନୀ, ଜାଗ୍ରତ ବନ୍ଧନ ଗ୍ରାସେ ଅନ୍ତରତଟ ଭରି"

ବାପାଙ୍କର ଏଇ କବିତା ଲେଖା ହୋଇନାହିଁ ଏ ପର୍ଯ୍ୟନ୍ତ ସମାଧି ପ୍ରସ୍ତରରେ ? ତା ପୂର୍ବରୁ ତମ ବିଦାୟ ବେଳ ଆସିଗଲା କମିତି ? ବୋଧେ ତଟସ୍ଥ ହୋଇ ବସି ରହିଛ । ଲୁହ ଗଡ଼ୁନାହିଁ । ସେ ପଥର ପାଲଟି ଯାଇଛ ନା କଣ ?

କିନ୍ତୁ ତମେ ଅଲୋକେଶ ବଞ୍ଚି ରହିବ ଆମ ଭିତରେ ଚିରକାଳ । ତମେ ଥିଲ ବୟସରେ ମୋଠାରୁ ବହୁତ ସାନ । ତମେ ମୋର ଚିତା ଜାଳିଥାନ୍ତ । କିନ୍ତୁ ନିୟତିର କ୍ରୂର ପରିହାସରେ ମୋତେ ଲେଖିବାକୁ ପଡ଼ୁଛି ତମର ବିୟୋଗାନ୍ତ ଲେଖା । କି କଷ୍ଟ ! ତମେ ବୁଝୁଚ ନା ନାହିଁ ? ଉଠ ପୁଣି ଥରେ ଉଠ, ଅଲୋକେଶ !



# ପଥଭ୍ରାନ୍ତର ଅଭିନେତା ଉତ୍ପଳଦତ୍ତ

ଉତ୍ପଳ ଦତ୍ତ ଆଉ ନାହାନ୍ତି । କେବେ ସେ ରୋଗାକ୍ରାନ୍ତ ହେଲେ, କିନ୍ତୁ କେବେଠାରୁ ଖରାପ ହୋଇଯାଇଥିଲା ସେ ଖବର ଜାଣି ନଥିଲି । ଦୁଇବର୍ଷ ତଳେ ଦେଖା ହୋଇଥିଲା ଗର୍କି ସଦନରେ । ଉତ୍ପଳ ସେଇଦିନ ଫାମବୋୟେଣ୍ଟ ଥିଲେ । ପଚାରିଥିଲେ ଓଡ଼ିଶା କଥା, ଓଡ଼ିଶାରେ ସବୁ ପରିଚିତ ବ୍ୟକ୍ତିଙ୍କ କଥା । ଉତ୍ପଳ ଜନ୍ମ ହୋଇଥିଲେ ଏକ ମଧ୍ୟବିତ୍ତ ପରିବାରରେ । କିନ୍ତୁ ପିଲାଦିନୁ ସେ ମେହନତୀ ମଣିଷପାଇଁ ଜୀବନକୁ ଉତ୍ସର୍ଗ କରିଥିଲେ । ନିଖିଳ ଭାରତ ଛାତ୍ର ସଂଘ, ଗଣତାନ୍ତ୍ରିକ ଯୁବ ସଂଘ, ଭାରତୀୟ ଗଣନାଟ୍ୟ ସଂଘ ତାଙ୍କର ଭିତ୍ତିଭୂମି । ପରେ ଯେତେବେଳେ ଭାରତୀୟ ଗଣନାଟ୍ୟ ସଙ୍ଘ ପ୍ରାୟ ଅସ୍ତମିତ ହୋଇଗଲା ସେତେବେଳେ ସେ ନିଜର ନାଟ୍ୟ ସଂସ୍ଥା ଗଠନ କଲେ ।

ପିଲାଦିନୁ ଅଭିନୟର ନିଶା ତାଙ୍କୁ ଘାରିଥିଲା । ବୋଧହୁଏ ଏଇ ନିଶା ଏତେ ଜୋରରେ ତାଙ୍କୁ ଧରିଥିଲା ଯେ ଜୀବନର ଆଉ କୌଣସି ଦିଗକୁ ନଜର ଦେବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥିଲା । ଖିଆଲ ବା ଖାତିର ନଥିଲା ସେଥିପାଇଁ । ଉତ୍ପଳ ମାଟିର ମଣିଷ ଆଉ ସେ ମାଟିର ମଣିଷ ପାଇଁ ହିଁ ଥିଲା ତାଙ୍କର ଅଭିନୟର ନିବେଦନ । ବଙ୍ଗଳା, ହିନ୍ଦୀ ଏବଂ ଇଂରାଜୀ ତିନି ଭାଷାରେ ବ୍ୟୁତ୍ପତ୍ତି କେବଳ ନୁହେଁ ସାବଲୀଳ ଅଭିନୟ କରିପିବାରେ ବୋଧହୁଏ ତାଙ୍କର ସମକକ୍ଷ ସମଗ୍ର ଭାରତବର୍ଷରେ ବର୍ତ୍ତମାନ କେହି ନାହାନ୍ତି । କ୍ୟାରେକ୍ଟର ରୋଲ କରିବା, ଖଳନାୟକ ଭୂମିକାଠାରୁ ସାକ୍ଷାତ୍କାର ଭୂମିକା ପର୍ଯ୍ୟନ୍ତ ସବୁ ବିଭାବକୁ ସେ ସ୍ପର୍ଶ କରିଥିଲେ ଏବଂ ଆପଣାର ସାଫଲ୍ୟ ପ୍ରଦର୍ଶନ କରିଥିଲେ ।

କେ.ଏ. ଆବାସ ଯେତେବେଳେ 'ସାତ୍ ହିନ୍ଦୁସ୍ଥାନୀ' ଚଳଚ୍ଚିତ୍ର ନିର୍ମାଣ କଲେ ସେତେବେଳେ ସେ ପ୍ରଥମେ ଉତ୍ପଳଙ୍କୁ ହିଁ ବାଛିଥିଲେ ଏବଂ ତାଙ୍କ ସହଯୋଗରେ ଯେ ଯେଉଁ ଅଭିନେତାଙ୍କୁ ପ୍ରଥମଥର ପାଇଁ ରୂପେଲି ପର୍ଦ୍ଦାକୁ ଆଣିଲେ ସେ ହେଉଛନ୍ତି ଆଜିର ଅମିତାଭ ବଚନ । 'ଭୁବନସୋମ' ଠାରୁ ଅମାନୁଷ ପର୍ଯ୍ୟନ୍ତ ବହୁ ଚଳଚ୍ଚିତ୍ରରେ ଉତ୍ପଳ ଦତ୍ତ ଅଭିନୟ କରିଛନ୍ତି ନିଖୁଣ ଭାବରେ । କିନ୍ତୁ ଉତ୍ପଳ ଦତ୍ତଙ୍କର ପରିଚୟ ହେଉଛି ରାଜପଥରେ ।

ରାଜପଥ ଏବଂ ସାଧାରଣ ମଣିଷ ହେଉଛନ୍ତି ଉତ୍ପଳ ଦତ୍ତଙ୍କର ପ୍ରକୃତ ପରିଚୟ । ପ୍ରସିଦ୍ଧ ବଙ୍ଗ ଦୁର୍ଭିକ୍ଷଠାରୁ ଆରମ୍ଭ କରି ଖାଦ୍ୟ ଆନ୍ଦୋଳନ ପର୍ଯ୍ୟନ୍ତ ସବୁ ସ୍ଥାନରେ ଦେଖା ମିଳୁଥିଲା ଉତ୍ପଳଙ୍କୁ । ମେହନତୀ ମଣିଷର କଠୋର ସଂଗ୍ରାମରେ ସୈନିକ ଉତ୍ପଳ ଦତ୍ତ ମଣିଷ ପାଇଁ ଅଭିନୟ କରିଯାଇଛନ୍ତି । ଜୀବନ ସଂଗ୍ରାମଠାରୁ ଅଭିନୟ ସ୍ୱତନ୍ତ୍ର ନୁହେଁ । ଉତ୍ପଳ ମଣିଷକୁ, ତାଙ୍କର ଉତ୍ତର ପୁରୁଷକୁ ସେଇ ଶିକ୍ଷା ଦେଇଯାଇଛନ୍ତି ।



# ମାଟିର ମଣିଷ ଆଜି ମିଶିଲା ମାଟିରେ

ମାଟିର ମଣିଷ ଯିନା ଉପନ୍ୟାସରେ ଲୁହାର ମଣିଷରେ ପରିଣତ ହେଲା । କିନ୍ତୁ ଲେଖକ ଫେରି ଯାଇଛି ମାଟିକୁ, ସେଇ ମାଟିକୁ ଯେଉଁଠୁ ସେ ଆସିଥିଲ ଦିନେ । ସେଇ ବେରବୋଇ ଗାଁ ରହିଛି, ଯେଉଁଠି ଦିନେ 'ମାଟିର ମଣିଷ' ଜନ୍ମଲାଭ କରିଥିଲା ଲେଖକର ମନରେ । ଆହୁ ରହିଛି ମଧ୍ୟ ବିରୂପା ନଦୀକୂଳରେ ସେଇ ପଧାନପଡ଼ା । ଚରିଜ କାଳନକ କିନ୍ତୁ ଗାଁକୁ ଗଲେ ଲୋକେ ଡିହ ପରେ ଡିହକୁ ଦେଖାଇ ଦିଅନ୍ତି—ଏଇ ଥିଲା ଶାମ ପଧାନର ଘର, ଏଇଥିଲା ହରି ମିଶ୍ରଙ୍କର । ମାତ୍ର ୪୦ ବର୍ଷ ଭିତରେ, ପୁଣି ଲେଖକର ଜୀବଦ୍ଦଶା ଭିତରେ ଇମିତ ଆଇଡେଣ୍ଟିଫିକେଶନ ପୃଥିବୀର ଖୁବ୍ କମ୍ ଉପନ୍ୟାସର ଭାଗ୍ୟରେ ଘଟିଛି । ତାହାହିଁ ସେଦିନ ଚମତ୍କୃତ କରିଥିଲା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଚଳଚିତ୍ର ନିର୍ଦ୍ଦେଶକ ମୃଣାଲ ସେନଙ୍କୁ । ସେ ଯେତେବେଳେ ରୂପ ଦେଉଥିଲେ 'ମାଟିର ମଣିଷକୁ' ।

"ଆରେ ମରଣର ଦାସ,  
କହ କେତେ ଜଣ ମରିଥିଲେ ଏଥି  
ଗଢ଼ିବାକୁ ଇତିହାସ ।" (କାଳନ୍ଦୀ ଚରଣ)

ସତରେ ତ, ସମସ୍ତେ ଦିନେ ଯିବେ । ବଡ଼ ସାନ, ସମସ୍ତେ ତ ମରଣର ଦାସ । କିନ୍ତୁ କେତେଜଣଙ୍କର ଜୀବନ ଇତିହାସରେ ପରିଣତ ହୁଏ । ଏବଂ ଯେଉଁମାନେ ମରଣର ସେଇ ସୀମାରେଖାକୁ ଡେଇଁ ବଞ୍ଚି ରହନ୍ତି ସମାଜରେ, ସେଇମାନଙ୍କ ଜୀବନ ହିଁ ତ ସାର୍ଥକ ।

ଆଉ ତା' ଭିତରେ କାଳନ୍ଦୀ ଚରଣ ପାଣିଗ୍ରାହୀ ନିଶ୍ଚୟ ଅନ୍ୟତମ । ସବୁଜ ଯୁଗ ଉପରେ ଏ ପର୍ଯ୍ୟନ୍ତ ଖୁବ୍ ବେଶି ଗବେଷଣା ହୋଇନାହିଁ । ଯେଉଁମାନେ ଏଇ ଯୁଗ ଉପରେ ଆଲୋକପାତ କରିବାକୁ ଉଦ୍ୟମ କରିଛନ୍ତି, ସେମାନେ ପାଇଓନିଅର-ମାନଙ୍କର କାମ କରିଛନ୍ତି । ତା' ପୂର୍ବରୁ ଏଇ ଯୁଗର ଅନ୍ୟତମ ମହାରଥୀ ଆମକୁ ଛାଡ଼ି ଚାଲିଯାଇଛନ୍ତି ।

"ଦୁନିଆଁର ହାଟେ କୋଟି ସାଗ୍ରମିଳା,  
ମଣି ମାଣିକର ମୂଲ ।  
ମାଟିର ପିତୁଳା ଗଢ଼ି ରଖିଦେଲି  
କିଏ ପରୁଖିବ ମୂଲ ।" (କାଳନ୍ଦୀ ଚରଣ)

କାଳନ୍ଦୀ ବାବୁ ବହୁଦିନ ଧରି ଅସୁସ୍ଥ ଥିଲେ । ତାଙ୍କର ସ୍ମୃତି ବିଭ୍ରମ ଏତେ ବେଶି ହୋଇଥିଲା ଯେ ସେ ପୁଅ ଶିଶିର ବା ଜାମାତା ଗୋପାଳଚରଣ ବା ଦେବେନ୍ଦ୍ର-ଙ୍କର ପରଲୋକ କଥା ଜାଣି ପାରିନାହାନ୍ତି । କାଳନ୍ଦୀଚରଣ ସ୍ମୃତିରେ ଅନେକ ଦିନ ହେଲା ବିସ୍ମୃତ ହୋଇ ଯାଇଥିଲେ ମାଟିର ପିଲାଙ୍କ ପରି । ବେଳେ ବେଳେ ପୁରୁଣା ବନ୍ଧୁମାନେ ଆସନ୍ତି, ସଙ୍ଖୋଳି ଯାଆନ୍ତି । ମନେତ ଆଉ କିଛି ରହୁ ନାହିଁ । କାଳନ୍ଦୀ ବାବୁ ଖାଲି ହସନ୍ତି । ଏ ହସ କଣ ହସ ନାଁ କାନ୍ଦର ବିକାର ? କିଏ କହିବ ?

"ନବୀନ ମୁକୁଳେ ନବ ପଲ୍ଲବେ ଆଜ,
କଲ ସଚେତନ ଧରଣୀକୁ ଋତୁରାଜ,
ତେମନ ତୁମର ଅମଳ ମଳୟ ଲାଗି,
ସବୁ ଜଡ଼ତାରେ ଚେତନା ଉଠୁହେ ଜାଗି ।
(କାଳନ୍ଦୀ ଚରଣ)

ବନ୍ଧୁ କବି ଅନନ୍ତ ପଟ୍ଟନାୟକଙ୍କର ବିବାହ ଉପଲକ୍ଷେ ସେ ଏଇ ସ୍ୱପ୍ନ ଦେଖିଥିଲେ । ସବୁ ଜଡ଼ତାରେ, ମଣିଷର ଚଳିବାର ଜଡ଼ତାରେ ମଧ୍ୟ ଚେତନାର ଜାଗ୍ରତ ହେବ ସାମ୍ୟବାଦ ଓ ଗାନ୍ଧୀବାଦର ମିଶ୍ରଣରେ ଗଢ଼ା କାଳନ୍ଦୀ ଚରଣଙ୍କର ଏଇ ଥିଲା କଳ୍ପନା । ସେ ଚେତନା ଜାଗରୂକ ହେବା ପୂର୍ବରୁ ସେ ବିଦାୟ ନେଇଛନ୍ତି ।

ଆଜି ମଧ୍ୟ ଦେଶରେ "ବସ୍ତ୍ରର ବୃଦ୍ଧି" ଫିକା ପଡ଼ି ରହିଛି । ଆଜି ମଧ୍ୟ "ସଂସାରରେ ବୃଦ୍ଧି ବିବେକ ପଶୁ ତହୁଁ ହୀନ ହୋଇ" ମୂକ ହୋଇ ପଡ଼ି ରହିଛି । ମଣିଷକୁ ଏକ ନୂତନ ସମାଜ ଗଢ଼ିବାର ଆଲୋକ ବର୍ତ୍ତିକା ଯିଏ ଦିନେ ଆପଣାର ସାହିତ୍ୟରେ ଦେଇ ଯାଇଥିଲେ, ସେଇ କାଳନ୍ଦୀ ଚରଣ ଆଉ ନାହାନ୍ତି ।

ଆଜି ମଧ୍ୟ ମଣିଷ 'ଶଳା ସଇତାନ' ହୋଇ ରହିଛି ଏଇ ମାଟିରେ । ଆଜି ମଧ୍ୟ ବାଜ ଘଉଡ ଝଲ ପଡ଼ୁଛି ଗୁଳ ଷ୍ଟ୍ରେଟରେ । ଆଜି ମଧ୍ୟ 'କୁଳନାଶୀର ଇଜ୍ଜତମାନ କାଢ଼ି' ସଭ୍ୟତାର କଥା କୁହାଯାଉଛି ।

କିନ୍ତୁ ଏହି ସତ୍ୟକୁ ତୋଳି ଧରିଥିବା କଲମ ତ କ୍ଲାନ୍ତ ହୋଇ ପଡ଼ିଥିଲା ଅନେକ ଦିନୁ । ଆଜି ନୀରବତ ହୋଇଗଲା । ଯେତେଦିନ ପର୍ଯ୍ୟନ୍ତ ଦୁଃଖ ଭରିସା ସଂସାରରେ ଥିବ ସେତେଦିନ ପର୍ଯ୍ୟନ୍ତ କିନ୍ତୁ ମାଟିର ମଣିଷ ସ୍ୱପ୍ନ ପରି ମଣିଷକୁ ଦ୍ୟୋତନା ଦେଉଥିବ ।

କାଳନ୍ଦୀ ଚରଣ ଆଉ ନାହାନ୍ତି ।

# ଓଡ଼ିଆ ସାହିତ୍ୟର ମହାରଥୀ
# —କାହ୍ନୁଚରଣ

ଫକୀର ମୋହନଙ୍କ ପରେ । ଓଡ଼ିଆ ସାହିତ୍ୟର ସବୁଠାରୁ ବେଶୀ ପାଠକ ବୋଧହୁଏ ପାଇଥିଲେ କାହ୍ନୁଚରଣଙ୍କୁ । ଗାଁ ଗଣ୍ଡା ସହର ବଜାର ପାଠପଢ଼ିଥିବା ଏଭଳି ଲୋକ-ନଥିବ ଯିଏ କାହ୍ନୁଚରଣଙ୍କୁ ପଢ଼ିନାହିଁ । ହଁ। ଅନ୍ୟ ଠାରୁ ଉଣ୍ଡବାଇଦ, ଶାନ୍ତିଠାରୁ ଝଞ୍ଜା କାହ୍ନୁଚରଣ ଓଡ଼ିଆ ସାହିତ୍ୟର ସବୁଠାରୁ ଲୋକପ୍ରିୟ ସାହିତ୍ୟିକ । କାହ୍ନୁଚରଣଙ୍କୁ ହୃଦୟ ଦେଇ ବୁଝିହୁଏ କିନ୍ତୁ ଗୋପୀନାଥଙ୍କୁ ବୁଝିବା ପାଇଁ ମସ୍ତିଷ୍କର ଆବଶ୍ୟକତା ପଡ଼େ ।

କାହ୍ନୁଚରଣଙ୍କ ଲେଖା ଝରଣା ଭଳି । ବୋହିଯାଏ ସାବଲୀଳ ଗତିରେ । ତାର କୁଳୁକୁଳୁ ଶବ୍ଦରେ ହୃଦୟ, ମନ ଭରିଯାଏ । ପଢ଼ିଯାଏ ଗାଁ ଝିଅଟି ଏକ ନିଶ୍ୱାସରେ, ଏକ ଗତିରେ ଠିକ୍ ଯେମିତି ପଢ଼ିଯାଏ କଲେଜରେ ନୂଆ ନାଁ ଲେଖାଇଥିବା ପିଲାଟି । କାହ୍ନୁଚରଣଙ୍କ ଉପନ୍ୟାସ ଠିକ୍ ସେଇମାନଙ୍କ ଭଳି ।

କାହ୍ନୁଚରଣଙ୍କ ଘର କଟକ ଜିଲ୍ଲାରେ । କିନ୍ତୁ ଜନ୍ମ ସୋନପୁରରେ । କାହ୍ନୁଚରଣଙ୍କର ନିଶା ଥିଲା ଉପନ୍ୟାସ । କିନ୍ତୁ ପେଷାଥିଲା ଚାକିରି । ଓଡ଼ିଶା ସରକାରଙ୍କର ଶାସନ ବିଭାଗରେ ଅଫିସର । ସେ ଚାକିରି ଆରମ୍ଭ କଲାବେଳକୁ ହାତ ଗଣତି ଅଫିସର ଓଡ଼ିଶାରେ । ସେଇଯୋଗୁଁ କାହ୍ନୁଚରଣ ବୁଲିଥିଲେ ସାରା ଓଡ଼ିଶା —କଟକରୁ କୋରାପୁଟ, ସୋନପୁରରୁ ଅନୁଗୋଳ । ଏକ ସମ୍ବେଦନଶୀଳ ମନ ନେଇ ସେ ଓଡ଼ିଶାସାରା ସାଧାରଣ ମଣିଷ ସହିତ ମିଶିଥିଲେ, ରହିଥିଲେ, ସେମାନଙ୍କ ଆନନ୍ଦରେ ହସିଥିଲେ ଦୁଃଖରେ କାନ୍ଦିଥିଲେ । ଏବଂ ସେଇଥିରୁ ହିଁ ଉପାଦାନ ସଂଗ୍ରହ ହୋଇଥିଲା ଆପଣା ଉପନ୍ୟାସର । ସେଇଯୋଗୁଁ କାହ୍ନୁଚରଣଙ୍କ 'ଚରିତ୍ର' କଥା କହୁଥିଲା । ମନେ ହେଉଥିଲା ଯେମିତି, ହେଇଟି ଜଗୁ ଯାଉଛି ବା ଏଇତ କ୍ଷଣପ୍ରଭା । ସାଧାରଣ ମଣିଷ ସହିତ ତାଙ୍କର 'ଚରିତ୍ର' ମିଶି ଯାଉଥିଲା ଏବଂ ଉପନ୍ୟାସ ହୋଇଯାଉଥିଲା ସୁଖପାଠ୍ୟ ବିଶେଷତଃ ତରୁଣ ତରୁଣୀମାନଙ୍କ ପାଇଁ । ସହରରେ ଥିବା ଭାଇପାଖକୁ ଗାଁରେ ଥିବା ଭଉଣୀ, ସହରରେ ଥିବା ସ୍ୱାମୀ ପାଖକୁ ଗାଁରେ ଥିବା ସ୍ତ୍ରୀ ଚିଠି ଲେଖୁଥିଲା, କଟକରୁ ଫେରିଲାବେଳେ କାହ୍ନୁଚରଣଙ୍କ ବହି ଖଣ୍ଡିଏ ନେବାପାଇଁ ।

କାହ୍ନୁଚରଣ ସରଳ, ଅମାୟିକ, ସ୍ନେହୀ ମଣିଷ । ଅଫିସରର ପ୍ରୋଢ଼ି, ସାହିତ୍ୟିକର ଅହମିକା, ପ୍ରତିଷ୍ଠାଭିଗର୍ବ କିଛି ନଥିଲା । କଥାବାର୍ତ୍ତାରେ ଜାଣିପାରିବ ନାହିଁଯେ ଏଇ ହେଉଛନ୍ତି ପ୍ରସିଦ୍ଧ ଲେଖକ କାହ୍ନୁଚରଣ ବା ବନ୍ଦୋବସ୍ତ ବିଭାଗର ହାକିମ କାହ୍ନୁଚରଣ ବୋଲି । ହାକିମଥିଲେ କିନ୍ତୁ ହାକିମୀ ନଥିଲା । ଗପ କରୁଥିବେ, ଶୁଣୁଥିବେ, ଆଉ ସେଇଥିରୁ ହିଁ ସଂଗ୍ରହ କରୁଥିବେ ଉପାଦାନ ଆପଣାର ଉପନ୍ୟାସ ପାଇଁ । ସେଇଯୋଗୁଁ ତାଙ୍କ ଉପନ୍ୟାସର ଚରିତ୍ର ସବୁ ଏତେ ଜୀବନ୍ତ ଏତେ ସରସ ଏବଂ ସାଧାରଣ । ମଣିଷର ମନକୁ ଛୁଇଁଯାଏ ।

ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ କଟିଛି ସାହିତ୍ୟ ସେବାରେ । ବହୁ ଉପନ୍ୟାସ ଲେଖି ଯାଇଛନ୍ତି ସେ ପାଠକମାନଙ୍କ ପାଇଁ । ସଂଖ୍ୟା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । କିମିତି ଲେଖିଲି ଏତେ ଉପନ୍ୟାସ, ସମୟ ପାଇଲି କେତେବେଳେ ? ସରକାରୀ ଚାକିରି, ପୁଣି ପରିବାର ଭିତରର ମଣିଷ । ତାରି ଭିତରେ, ସେଇ ଜଞ୍ଜାଳ ଭିତରେ ଲେଖିଗଲି ଏତେ ଉପନ୍ୟାସ ? ବିଶ୍ୱାସ କରି ହୁଏନା ।

ମଣିଷର ମନ ପାଇଁ ଯେଉଁ ଲୋକ ଏତେ କଥା ଲେଖିଗଲେ, ସେଇ ଲେଖକଙ୍କୁ କ'ଣ ଏତେ ଶାସ୍ତି ଭୋଗ କରିବାକୁ ହେଲା । କାହିଁକି କ'ଣ ଥିଲା ଅପରାଧ ଯେ ତା'ପାଇଁ ଏତିକି ଶାସ୍ତି । 'ଶାସ୍ତି' ଉପନ୍ୟାସର ଲେଖକ କାହ୍ନୁଚରଣଙ୍କୁ ଶଯ୍ୟାରେ ଅଚଳ ଅବସ୍ଥାରେ ଗଡ଼ି ରହିବା ଦେଖି ଏଇ ପ୍ରଶ୍ନ ଉଠିଚ ବାରମ୍ବାର । ଭଗବାନ ବିଶ୍ୱାସ ମୋର ନାହିଁ । କାହ୍ନୁଚରଣଙ୍କୁ ଦେଖି ମୋର ସେଇ ଅବିଶ୍ୱାସ ଦୃଢ଼ିଭୂତ ହୋଇଛି । ଜୀବନରେ ଯିଏ ପଦେ ହେଲେ କଡ଼ା କଥା କହିନାହିଁ । ଯିଏ ରାଗି ପାରିନାହିଁ ମଣିଷ ଉପରେ ମଣିଷକୁ ପରା ଯିଏ ସବୁବେଳେ ଦୟାର୍ଦ୍ର ଏବଂ କରୁଣାସିକ୍ତ ମନରେ ଦେଖି ଆସିଛି, ବନ୍ଦୋବସ୍ତ ବିଭାଗର ଅଫିସର ହୋଇ ଜୀବନର କିଛି 'ବନ୍ଦୋବସ୍ତ' ଯିଏ କରି ପାରିନାହିଁ, ତାହାରି ପାଇଁ ଏପରି କଷ୍ଟ କାହିଁକି ?

କାହ୍ନୁଚରଣ ଆଉ ନାହାନ୍ତି । ଓଡ଼ିଆ ସାହିତ୍ୟର ଗୋଟାଏ ପୃଷ୍ଠା ଓଲଟି ପଡ଼ିଛି ଏବଂ ସେଇ ପୃଷ୍ଠାକୁ ବାରମ୍ବାର ଓଲଟାଇବେ ଆଗାମୀ ଯୁଗର ବଂଶଧର । ଓଡ଼ିଆ ସାହିତ୍ୟ ଥିବା ପର୍ଯ୍ୟନ୍ତ କାହ୍ନୁଚରଣ ରହିବେ ଜୀବନ୍ତ, ଅମଳିନ । ମାଟିର ଏ ଦେହ ମାଟିରେ ମିଶିବା ତ ଧ୍ରୁବ, ଅଲଙ୍ଘନୀୟ । କିନ୍ତୁ ତାଙ୍କର ଲେଖନୀତ କାଳଜୟୀ । ଇତିହାସର କପାଳରେ କାହ୍ନୁଚରଣ ଉଜଳି ରହିବେ ଟୋପାଏ ଅଶ୍ରୁଜଳ ପରି । 'ଜଗୁ'ର ଗ୍ରୀବା ଉପରକୁ ନଇଁ ଆସୁଥିବା 'ଉମାର' ଅଶ୍ରୁ ପରି ।

□

# ପହିଲି ପାଳି
# ବୋଉ ଦେଲୁ ପଠେଇ

''ପହିଲି ପାଳି ବୋଉ ଦେଲୁ ପଠେଇ'' (ଲୋକଗୀତ)

କିନ୍ତୁ ଆଜି ତ ଶେଷ ପାଳି । ଆଜି ପିଲାମାନେ, ପିଲାମାନଙ୍କର ମା' ଓଡ଼ିଶାର ଜନସାଧାରଣ ଶେଷ ପାଳିର ପର୍ବରେ । ତାଙ୍କର ଆଜି ଶେଷ ପାଳି ।

ଅନେକ ଦିନ ହେବ ଅସୁସ୍ଥ ଥିଲେ । ଦେହ ହାତ ଅବଶ ହୋଇ ଆସୁଥିଲା । ତଥାପି ଜିଜ୍ଞାସାର ପୂର୍ଣ୍ଣଚ୍ଛେଦ ପଡ଼ିନଥିଲା । ଓଡ଼ିଶାର ବୁକୁରେ ତ ଅଜସ୍ର ଲୋକଗୀତ ଏବେ ବି ରହିଛି । ସେ ସବୁର ତ ସଂଗ୍ରହ ସରିନାହିଁ । କିନ୍ତୁ ଅଧ୍ୟାପକ କୁଞ୍ଜବିହାରୀ ଦାସ ଆଉ ନାହାନ୍ତି ।

ତଥାପି ତାଙ୍କରି ଆସିଛି ଶେଷ ପାଳିର । ବହୁ ଦଶନ୍ଧିର ସାଧନା ରହିଯିବ ଅଧାରେ । ଉତ୍ତର ପୁରୁଷ ପାଇଁ ତାଙ୍କର ସେଇ ଆଶୀର୍ବାଦ । ଅଧାରେ ରହିବାର ଅନ୍ୟ ନାମ ହେଉଛି ତ ଜୀବନ ।

ଜୀବନରେ ବହୁ ଆଓ୍ବାର୍ଡ଼ ମିଳିଛି । ବହୁ ଉପାଧି ମିଳିଛି । ବହୁ ସମ୍ମାନ ମିଳିଛି ଲୋକରହ ଉପାଧି ମିଳିଛି । କିନ୍ତୁ ସାଧନା ସରିନାହିଁ । ଏହି ସାଧନା ଆରମ୍ଭ ହୋଇଥିଲା ବିଶ୍ୱ ବିଦ୍ୟାଳୟର ଛାତ୍ର ଜୀବନରେ । ଆପଣାର ଶିକ୍ଷକ ତାଙ୍କୁ ଅନୁପ୍ରାଣିତ କରିଥିଲେ ଲୋକ ସଂସ୍କୃତି, ଲୋକଗୀତ ଉପରେ ଗବେଷଣା କରିବା ପାଇଁ । କୁଞ୍ଜ ବିହାରୀ ଦାସ ସେଇ ଦିନଠାରୁ ସେଥିରୁ ଆଖି ଆଉ ଅନ୍ୟ ଆଡ଼କୁ ଫେରାଇ ନାହାନ୍ତି ।

ଅଧ୍ୟାପକ ଜୀବନ ଆରମ୍ଭ ହୋଇଛି । ଓଡ଼ିଶାର ବିଭିନ୍ନ କଲେଜ । ପୁଣି ଓଡ଼ିଶାରୁ ବିଶ୍ୱ ଭାରତୀ । ମନୀଷ ତିଆରି ଯେମିତି ହୋଇଛି, ଲୋକଗୀତ ସଂଗ୍ରହ ସେମିତି ଚାଲିଛି ଅବାରିତ ଗତିରେ । ଅବସର ନେଇଛନ୍ତି ଚାକିରିରୁ । କିନ୍ତୁ ସାଧନାର ଅନ୍ତ କାହିଁ ? ସେଥିରୁ ଅବସର ନେବାର ପ୍ରଶ୍ନ ଉଠୁଛି କେଉଁଠୁ ?

ଆଜି ତାହାର ଅନ୍ତ ହୋଇଯିବ ନାଁ ଉତ୍ତର ପିଢ଼ି ଆଜି ସେଇଠାରୁ ଆରମ୍ଭ କରିବେ ଯେଉଁଠି ଲୋକରହ ଛାଡ଼ି ଦେଇଗଲେ ତାଙ୍କର କାର୍ଯ୍ୟ ! ତାହାହିଁ ହେବ ତାଙ୍କ ପାଇଁ ପ୍ରକୃତ ଶ୍ରଦ୍ଧାଞ୍ଜଳି ।

ସାହିତ୍ୟର କୌଣସି ବିଭବ ତାଙ୍କର ଉଦ୍ୟମରୁ ବାଦ ଯାଇନାହିଁ । ଲୋକଗୀତ ସଂଗ୍ରହ, ପ୍ରବନ୍ଧ, ଭ୍ରମଣ ସାହିତ୍ୟ, ଉପନ୍ୟାସ, କବିତା, ଗଳ୍ପ—କୁଞ୍ଜବିହାରୀ ସବୁ ବିଭବରେ ଆପଣାର ଆଲେଖ୍ୟ ରଖିଯାଇଛନ୍ତି । ସବୁ ହଜିଯିବ ସମୟର ସ୍ରୋତ ବାଲିରେ । କିନ୍ତୁ ତାଙ୍କର ଲେଖନୀରୁ ନିସୃତପ୍ରାପ୍ତ ସବୁଜ ଖଣ୍ଡ ବନ୍ଧ ତାଙ୍କୁ ରଖିଯିବ ଚିର ଦିଗନ୍ତ ଚିରସବୁଜ କରି । ଆଜିଠାରୁ ବହୁ ବହୁ ବର୍ଷରେ ଲୋକରତ୍ନ ନିଜେ ପାଲଟି ଯିବେ ଲୋକକଥାର ବସ୍ତୁ । ସେତେବେଳେ ଆଗାମୀ କାଳର ଦାୟାଦମାନେ ତଥାପି ହେଜିବେ ଲୋକରତ୍ନଙ୍କୁ । କାଳର କପାଳରେ ସେ ରହିଯିବେ ଟୋପାଏ ଅଶ୍ରୁଜଳ ପରି । ତାଙ୍କର ପ୍ରିୟ ରବୀନ୍ଦ୍ରନାଥ ଠାକୁରଙ୍କ ଭାଷାରେ ।

ଗଦା ଗଦା ମଣିଷ । ସେମାନେ ଆସିଛନ୍ତି ଆପଣାର ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ । ସ୍ୱର୍ଗଦ୍ୱାରରେ ଚିତା ଜଳୁଛି । ମରଦେହ ପୋଡ଼ି ପାଉଁଶ ହୋଇ ଯାଉଛି । କିନ୍ତୁ ସାଧନାରେ ସେଇ ପାଳର ଆରମ୍ଭ ନାହିଁ କି ଶେଷ ନାହିଁ । ତାହା ଅନନ୍ତ, ସୀମାହୀନ ପଥର ଏକ ଉଜ୍ଜ୍ୱଳ ମାଇଲଖୁଣ୍ଟ ।



# କୁମାର ଭାଇ ଫେରିଆସ

କୁମାର ଭାଇ ଗଲ କୁଆଡ଼େ ? ଫେରିଆସ । ତମ ଯିବାବେଳ କଣ ହେଲଣି ? ପୃଥିବୀ ପର ବର୍ତ୍ତମାନ ପର୍ଯ୍ୟନ୍ତ ଅଶୋଭନୀୟ ହୋଇଛୁ । ଚ୍ଚରିଆଡ଼େ ଅଶ୍ଳୀଳତାର ହ୍ରେଷାରବ । ତମେ ଗଲେ ଚଳିବ କମିତ ?

ତୁମକୁ ଦେଖିହେଲା ନାହିଁ । ଖବରକାଗଜର ପୃଷ୍ଠାରୁ ତମ ବାହ୍ଣଡ଼ିବା ସମ୍ବାଦ ପଢ଼ିଲା ବେଳକୁ ସମସ୍ତ ଅତଳାନ୍ତ ହୋଇଯାଇଥିଲା । ତମର ମର ଦେହ ସେତେବେଳକୁ ଆଉ ନଥିବ । କିନ୍ତୁ ଶୁଣିଲି, ତମେ କୁଆଡ଼େ ଶୋଇ ରହିଥିଲ ବେଶ୍ ନିର୍ଲିପ୍ତ ଭାବରେ । କମିତ ଶୋଇ ପାରିଲ ତମେ କହିଲ ଦେଖି ?

ବିଶେଷ୍ୱର ବାହ୍ଣନ୍ତୁ ଥିଲା । କହୁଥିଲା ତୁମକୁ ଦେଖିଥିଲି ତମର କଞ୍ଚା ବୟସରେ । ତମେ ବମ୍ବେରୁ ଫେରିଥାଅ । ଚଳଚିତ୍ରରେ ଅଭିନୟ କରି ତମେ ଫେରିଲ ଜୀବନର ବିଶାଳ ରଙ୍ଗମଞ୍ଚକୁ ଅଭିନୟ କରିବା ପାଇଁ । ଦେଖିଥିଲି, ଚ୍ଚଖିଥିଲି ଅଶ୍ଳୀଳତାକୁ । ଏବଂ ତାହାହିଁ ରୂପ ପାଇଥିଲା ତମର ଦୃପ୍ତ ଅଭିନୟରେ, କହିବା ଠାଣୀରେ । ଆଖିରୁ ଲୁହ ପୋଛୁଥିଲା ସେ ।

କେତେ ନିଶମାଖୀ, କେତେ ଅସହାୟା, କେତେ ଘରର ବଧୂ, କୁଳବାଳା କେତେ ଅଭିଆଡ଼ୀ ଝିଅ ତୁମର ଡାକରାରେ ଆସି ଠିଆହେଲେ ତମର ସହଯୋଗୀ ଭାବରେ, ଏକ ଶ୍ଳୀଳ ସମାଜ ଗଠନ କରିବା ପାଇଁ । ସେମାନଙ୍କୁ ତୁମେ ଦେଲ ନୂତନ ଭାଷା, ଜୀଇଁବାର ନୂତନ ସ୍ୱାଦ, କହିବାର ନୂତନ ଠାଣୀ ଏବଂ ଧଳାଶାଢ଼ୀ- ପାଇପିନ ଧଡ଼ିରେ ଏକ ନୂତନ ସେନାବାହିନୀ । ସେମାନେ ସମସ୍ତେ ସ୍ତବ୍ଧ ହୋଇଯାଇଥିବେ ନିଶ୍ଚୟ । କାରଣ ଏଇ ବିଶାଳ ସେନାବାହିନୀର ତମେ ହିଁ ଥିଲ ଏକମାତ୍ର ସେନାପତି ଆଉ ସମସ୍ତେ ସୈନିକ । ସେମାନେ କଣ ଜାଣନ୍ତି କମିତ ଏ ସଂସ୍ଥାକୁ ପରିଚାଳନା କରିବେ ? ସେମାନେ କେବଳ ତୁମକୁ ଅନାଇ କାମ କରି ଚ୍ଚଲିଥିଲେ, ନିର୍ବିକାର, ନିର୍ଲିପ୍ତ ଭାବରେ । ଆଉ ତମେ ସେ ସମସ୍ତଙ୍କୁ ଛାଡ଼ି ଗଲ କୁଆଡ଼େ, ଯାଇପାରିଲ କମିତ ? ହଜାର ହଜାର ପିଲା ଶୋଭନୀୟ ପୃଥିବୀ ଗଢ଼ିବା ପାଇଁ ପର ତାଲିମ ପାଉଛନ୍ତି, ଶୋଭନୀୟ ପୃଥିବୀ ଗଢ଼ା ହେବା ପାଇଁ ଆହୁରି ଅନେକ ପଥ, ଅନେକ କାମ ବାକିଅଛି । କିନ୍ତୁ ଏହାଠାରୁ କଣ ଅଧିକ କାମର ଡାକରା ତୁମକୁ ଟାଣିନେଇଗଲା ?

ଯୁଗଯୁଗେ ଯାଆନ୍ତି ସମସ୍ତେ ସେଠି ଜଣ ଅଶୋଭନୀୟତା ଭରିଗଲା ନାଁ କିଏ ଯେ ତୁମକୁ ଡାକିବ ପଡ଼ିଲା ? ମୁଁ କହିପାରିବି ନାହିଁ କିଏ କହିବ ତା'ବି କହି ପାରିବି ନାହିଁ । ସେ ଅନନ୍ତ ପ୍ରଶ୍ନର ଉତ୍ତର କିଏ ସେ ଝିଅ, ଯୁଅମାନେ ପାଇ ପାରିବେ, ଯେଉଁମାନେ ତଟସ୍ଥ ହୋଇ ଠିଆ ହୋଇଛନ୍ତି ତମର ମର ଦେହକୁ ଘେରି ? ଇତିହାସ ପୃଷ୍ଠା ତ ଏଇ ଖୋଜିବାରେ ଭରି ହୋଇ ରହିଛି ।

ସେମାନଙ୍କର ଅରଣ୍ୟ ରୋଦନ ନିରର୍ଥକ । ତମେ ଆଉ ଫେରିବ ନାହିଁ । ପୃଥିବୀ ସେମିତି ଅସନା, ଅଳିଆ, ଅଶୋଭନୀୟ ରହିଛି । ତାକୁ ସଜାଡ଼ିବା ପାଇଁ ମଣିଷର ଅବାରିତ ପ୍ରଚେଷ୍ଟାର ତମେ ଏକ ଦିଗ୍‌ବାରିଣୀ ସ୍ତମ୍ଭ ବର୍ତ୍ତିମାନ । ଅଶୋଭନୀୟତାର ଅନ୍ଧକାରରେ ଆଲୋକବର୍ତ୍ତିକା । ସେମାନେ, ତମର ଉତ୍ତରାଧିକାରୀ-ମାନେ, ଆପଣାର ପ୍ରଚେଷ୍ଟା ଭିତରେ ଶୁଣିବେ ତମର କଣ୍ଠସ୍ୱର । ତମରି ପଶୁପକ୍ଷୀଙ୍କର ରାବର ଅନୁକରଣ, କୋଇଲିର କଣ୍ଠରେ ସେମାନେ ଶୁଣିବେ ତମର ସ୍ୱର ବହୁକାଳ ଧରି । ତମେ ବଞ୍ଚି ରହିବ ସେମାନଙ୍କ ଭିତରେ ।



# ସର୍ବେ ଚଳବେ କାଳବଳେ

ସମସ୍ତଙ୍କୁ ଯିବାକୁ ହେବ । ଆସିବା ଯେମିତି ସତ୍ୟ । ଯିବା ବି ସେମିତି ସତ୍ୟ । କୃଷ୍ଣଚନ୍ଦ୍ର ଗନ୍ତାୟତ ଆସୁଥିଲେ ବମ୍ବେରୁ ଭୁବନେଶ୍ୱର । କେତେଅର ପ୍ରତିବର୍ଷ ସେ ଏଇ ବାଟରେ ଆସିଛନ୍ତି । କିନ୍ତୁ ଆଜି ସେ ବାଟ ଆଉ ସରିବ ନାହିଁ । ସେ ହୋଇଗଲେ ଅନନ୍ତ ପଥର ଯାତ୍ରୀ । ବାଟ ଲମ୍ବିଗଲା । ଆଖି, ମନ କେହି ସେ ବାଟକୁ ମାପି ପାରିବେ ନାହିଁ । ଗନ୍ତାୟତ ଇଞ୍ଜିନିଅର ଥିଲେ । ବୈଦ୍ୟୁତିକ ଇଞ୍ଜିନିଅର । ଚାକିରି କରିଥିଲେ । ଉଠିଥିଲେ ଶୀର୍ଷ ସ୍ଥାନକୁ । ରାଜ୍ୟ ବିଦ୍ୟୁତ ବୋର୍ଡର ଚେୟାରମ୍ୟାନ୍ ଥିଲେ ବହୁକାଳ ଧରି । ପ୍ରତିଷ୍ଠା ଅର୍ଜନ କରିଥିଲେ ଆପଣାର କର୍ମକୁଶଳତାରେ, ନିଷ୍ଠାରେ । କିନ୍ତୁ ସେ ଚାକିରିରେ ତାଙ୍କର ଏକ ସ୍ୱାତନ୍ତ୍ର୍ୟ ଥିଲା । ଚାକିରି ପାଇଁ ଚାକିରି ସେ କରି ନଥିଲେ । ସେଥିରେ ଥିଲା ତାଙ୍କ ପାଇଁ ଏକ ସାମାଜିକ ଅଙ୍ଗୀକାର ଏବଂ ତାହାହିଁ ତାଙ୍କୁ ଧରି ରଖିଥିଲା ଶେଷ ପର୍ଯ୍ୟନ୍ତ । ଏଇ ଶତାବ୍ଦୀର ତୃତୀୟ ଦଶକରେ ସେ ଥିଲେ ମାନ୍ଦ୍ରାଜ ସହରରେ ଇଞ୍ଜିନିଅରିଂ କଲେଜରେ ଛାତ୍ର । ସାରା ଦେଶରେ ମୁକ୍ତି ସଂଗ୍ରାମର ଦାମାମା ଧ୍ୱନି । ବହୁ ତରୁଣଙ୍କ ପରି କୃଷ୍ଣଚନ୍ଦ୍ରଙ୍କ କାନରେ ମଧ୍ୟ ତାହାର ଧ୍ୱନି ଶୁଭିଥିଲା । ଦେଶ ସ୍ୱାଧୀନ ହେବ । କିନ୍ତୁ କଣ ହେବ ତାର ରୂପରେଖ, କିଏ ଗଢ଼ିବ ଏଇ ଦେଶକୁ । ଜନମଙ୍ଗଳ ରାଷ୍ଟ୍ର ସହିତ ବୈଦ୍ୟୁତିକ ଶକ୍ତିର ସଂଯୋଗ ହିଁ ସମାଜବାଦର ସଫଳ ରୂପାୟନ ଦେଇ ପାରିବ । ସେ ସ୍ୱପ୍ନ ଦେଖିଲେ—ତାଙ୍କର ହାତର କାଉଁରୀ ସ୍ପର୍ଶରେ ଝଲମଲ କରିଉଠିବ ସାରା ଦେଶର ଇଣ୍ଡଷ୍ଟ୍ରିଆଲ ବେଲ୍ଟ, ସେ ସୁଇଚ ଟିପିଲେ ମାଟିର ଗର୍ଭରୁ ଉତ୍ତୋଳିତ ହେବ ଲୁହାପଥର ଓ ଇସ୍ପାତରେ ପରିଣତ ହେବ ପ୍ରଚଣ୍ଡ ଅଗ୍ନିର ଦହନରେ । ସେ ଆଲୁଅ ଆଣିଦେବ ସାରା ଦେଶର କୁଟୀରମାନଙ୍କରେ । ଏବଂ ସେ ଆଲୁଅ କେବଳ ରାସ୍ତା, ଘର, ବା ଶିଳ୍ପପାଇଁ ନୁହେଁ, ଦାରିଦ୍ର୍ୟର ଅନ୍ଧକାରରେ ସମୃଦ୍ଧିର ଆଲୁଅ । ସେଇଦିନ ସେ ଶପଥ ନେଇଥିଲେ । ଏଇ ଆଲୁଅ ଜାଳିବା ପାଇଁ ମୁଁ ଆପଣାକୁ ନିବେଦିତ କରିବି । ଗନ୍ତାୟତ ସେ ପଥରୁ ଓହରି ଯାଇନାହାନ୍ତି । ତାଙ୍କର ହାତରେ ତିଆରି ହୋଇଛି ବହୁ ପ୍ରକଳ୍ପ, ସଂଯୋଗ ହୋଇଛି, ବହୁ ବିଦ୍ୟୁତର ଲାଇନ । ତଥାପି ସେ ତୃପ୍ତ ହୋଇ ନାହାନ୍ତି । ଆହୁରି, ଆହୁରି ଦରକାର, ଦେଶର ସମୃଦ୍ଧି ପାଇଁ, ସମାଜର କଲ୍ୟାଣ ପାଇଁ, ମଣିଷର ଉନ୍ନତି ପାଇଁ । ସେଇଯୋଗୁଁ କଠୋର ପ୍ରଶାସକ ଭାବରେ, ଅବିଚଳ ବିଜ୍ଞାନୀ ଭାବରେ ସେ ଖ୍ୟାତି ଅର୍ଜନ କରିଛନ୍ତି ।

ଜୀବନରେ, ଯୌବନରେ ସମାଜବାଦୀ ଦର୍ଶନ ତାଙ୍କୁ ଅନୁପ୍ରାଣିତ କରିଥିଲା । ସାମ୍ୟବାଦର ମହାମନ୍ତ୍ରରେ ସେ ଆପଣାକୁ ଦୀକ୍ଷିତ କରିଥିଲେ ଏବଂ ସେଇଥିପାଇଁ ସେ ଆପଣାର ବହୁ ଉପାର୍ଜିତ ଧନ ବ୍ୟୟିତ ହୋଇଛି । ଗାଡ଼ି, ଗହଣା, ଅର୍ଥ । ସେ ପଛକୁ ଫେରି ଅନେଇ ନାହାନ୍ତି । ଯାଇଛନ୍ତି ସୋଭିଏଟ ରୁଷ ଭ୍ରମଣରେ । ସମାଜବାଦର ଆଦ୍ୟ ପରୀକ୍ଷା ଭୂମି । ଫେରିଛନ୍ତି ବ୍ୟଥିତ ଚିତ୍ତରେ । ଏକ ପୂର୍ଣ୍ଣାଙ୍ଗ ମଣିଷ ତିଆରି ହୋଇ ପାରିନାହିଁ । ଖେଦୋକ୍ତି ପ୍ରକାଶ କରନ୍ତି । ଆଜକୁ ପ୍ରାୟ ପନ୍ଦର କୋଡ଼ିଏ ବର୍ଷ ତଳର କଥା । ଯେଉଁ ବ୍ୟତିକ୍ରମ ଆଜି ସୋଭିଏଟ ରୁଷରେ ବିସ୍ଫୋରଣରେ ପରିଣତ ହୋଇଛି, ତାହା ତାଙ୍କୁ ଲାଗିଥିଲା ବେଦନ । ସେ ବ୍ୟବସାରୁ ଅବସର ନେଇଥିଲେ, କିନ୍ତୁ କର୍ମରୁ ନୁହେଁ । ଭୁବନେଶ୍ୱରରୁ ରାଉରକେଲା, ରାଉରକେଲାରୁ ବମ୍ବେ । ତାଙ୍କର ପାଣିବାଟ ପାଲଟିଥିଲା । ବନ୍ଧୁମାନେ ଧୀରେ ଧୀରେ ହଜି ଯିବାକୁ ଆରମ୍ଭ କଲେଣି । ବାର୍ଦ୍ଧକ୍ୟ ଅନେକଙ୍କୁ ସ୍ଥବିର କରିଦେଲାଣି । ବନ୍ଧୁହୀନ ଜୀବନ, ସୂର୍ଯ୍ୟହୀନ ପୃଥିବୀ ସହିତ ସମାନ । ସେଇଯୋଗୁଁ ସେ ଅସ୍ଥିର ହୋଇ ଉଠୁଥିଲେ । କେଉଁଠି ଗୋଟାଏ ଜାଗାରେ ରହିବାକୁ ମନ ଡାକୁନଥିଲା । ବମ୍ବେ ଯାଇଥିଲେ ପୁଅ ପାଖକୁ । ଭୁବନେଶ୍ୱର ଫେରିବାକୁ ହେବ । ଆଉ ବମ୍ବେରେ ରହିବାକୁ ମନ ଡାକୁନାହିଁ । ଡାକ୍ତରମାନେ ମତ ଦେଲେ ଯେ ସେ ଯିବାରେ କୌଣସି ଅସୁବିଧା ନାହିଁ । ହୃଦରୋଗ ସତ୍ତ୍ୱେ ସେ ଯାଇ ପାରିବେ । କିନ୍ତୁ ସବୁ ଯାତ୍ରା ତ ଡାକ୍ତରଙ୍କ ହୁକୁମ ମାନେ ନାହିଁ । ମଣିଷର କଳନାକୁ ବି ମାନେ ନାହିଁ । ଏକାକୀ ଆସିଥିଲେ ଏବଂ ଏକାକୀ ମଧ୍ୟ ଗଲେ । ସମସ୍ତେ ଯିବେ କିନ୍ତୁ ଯେଉଁମାନେ ସମୟର ବାଲିରେ ଯାହା ପାଦ ଦୁକୁଦୁକୁ ହୋଇ ଉଜଳି ଉଠେ ସେଇ ମାନଙ୍କର ଜୀବନ ତ ସାର୍ଥକ । ଆଉ ଗନ୍ତାସ୍ଥିତ ତ ସେଇମାନଙ୍କ ଭିତରେ ।



# କୃଷ୍ଣପ୍ରସାଦ, ତମେ ଗଲ କୁଆଡ଼େ

କହୁତ ସରନାହିଁ । କେତେ କଥା ବାକି ଅଛି । ଦର୍ଶନର ବହୁ ଦ୍ୱନ୍ଦ୍ୱ, ସାହିତ୍ୟର ବହୁ ବିଷୟ ଉପରେ ବିତର୍କ ତଥାପି ବାକି ଅଛି । ଝିଅ ବାହାଘର ତ ବ୍ୟକ୍ତିଗତ କାମ । ସେଇତକ ସରିଗଲେ ଯଥେଷ୍ଟ ନୁହେଁ ତମପାଇଁ । ସାମୂହିକ କେତେ କଥା ରହିଯାଇଛି ଅଧାରେ । ଚାକିରିରୁ ଅବସର ନେଇଥାନ୍ତ ଦୁଇ ମାସ ପରେ । କିନ୍ତୁ କର୍ମରୁ ତ ନୁହେଁ । କେତେ କଳ୍ପନା, କେତେ ପରିକଳ୍ପନା । ସବୁର 'ସୀମା' ଟପି ତମେ ଗଲ କୁଆଡ଼େ ? ଉଟ୍‌ଗେନ ଷ୍ଟାଇନ ଏବଂ ଶଙ୍କରଙ୍କର ସବୁ ଦ୍ୱନ୍ଦ୍ୱ, ପ୍ରାଚ୍ୟ ଓ ପାଶ୍ଚାତ୍ୟର ସବୁ ଚିନ୍ତା ଯେମିତି ତମର ଶାନ୍ତ ମଥା ଉପରେ ଶୋଇପଡ଼ିଛି ।

କୃଷ୍ଣପ୍ରସାଦ, ମନେପଡ଼ୁଛି । ତମେ ସରି ସବ୍‌ଇନସପେକ୍ଟର ଚାକିରି ଛାଡ଼ି ଆସିଥିଲ ଅଧ୍ୟାପନା ପାଇଁ, ସାହିତ୍ୟ ସର୍ଜନା ପାଇଁ । ଚମକ ସୃଷ୍ଟି ହୋଇଥିଲା ସେଦିନ । ବାପାଙ୍କର କୌଳିକ 'ବ୍ୟବସାୟ'କୁ ଛାଡ଼ିବ ନାହିଁ । କେବଳ ଲେଖିବ ନୁହେଁ, ଲେଖାଇବ ଅନ୍ୟମାନଙ୍କୁ ଏବଂ ପ୍ରକାଶନ ମଧ୍ୟ କରିବ । ଏଥିପାଇଁ ତ ଅଣ୍ଟା ଭିଡ଼ି ବାହାରିଥିଲ । ସବୁ ତ ଅଧାରେ ରହିଗଲା ।

ତମ ଘରେ ଆଜି କୋଳାହଳ ନାହିଁ । ଏକ ଶୀତଳ ନିସ୍ତବ୍ଧତାର ରାଜୁତି । ସମସ୍ତେ ଅଛନ୍ତି । କେବଳ ତମେ ନାହଁ । ପୁଅ ତମର ସଡ଼କ ଦୁର୍ଘଟଣାରୁ 'ଜନ୍‌ମିି' ଯାଉଥିବା ଖବର ପାଇଁ ଦୌଡ଼ିଆସୁଛି ଦାର୍ଜିଲିଂରୁ । କିନ୍ତୁ ତମେ ଯେ ହଠାତ୍ ସେଇ ବହୁଚର୍ଚ୍ଚିତ କିନ୍ତୁ ତଥାପି ଚିର ରହସ୍ୟମୟ ଅଜଣା ଦୀର୍ଘ ରାଜପଥରେ ଚାଲିଯାଇଛ । ଏକଥା କିମିତି ଜାଣିବ ସିଏ ? ମାଆ ଆପଣା ବୁକୁର ସ୍ନେହ ଦେଇ ତାକୁ ବଡ଼ କରିଛନ୍ତି । ତମେ ପ୍ରତିଷ୍ଠିତ ହୋଇଛ । ତାଙ୍କର ଗର୍ବ । ମାଆ ଦୌଡ଼ି ଆସିଛନ୍ତି ତମେ ଦୁର୍ଘଟଣାରୁ ରକ୍ଷା ପାଇଯାଇଛ ଜାଣି । କିନ୍ତୁ ବିଧିର ଏ କି କ୍ରୁର ପରିହାସ ? ଜନ୍ମିତ ମାଆର ବୁକୁ ଉପରେ ମଥାପାତି ତମେ ଚାଲିଗଲ ହଠାତ୍ । ସେ ସିନା ଯାଇଥାନ୍ତେ ତମ କୋଳ ଉପରେ ମୁଣ୍ଡ ରଖି ।

କୃଷ୍ଣପ୍ରସାଦ, ତମେପରି ଦର୍ଶନର ପ୍ରବୀଣ ଛାତ୍ର, ପ୍ରବୀଣ ଅଧ୍ୟାପକ । ଜନ୍ମ ମୃତ୍ୟୁର ରହସ୍ୟ ଧରି ତମର ଦର୍ଶନର ପାଠ । କହିଗଲ ତ ନାହିଁ ଯେ କାହିଁକି ମାଆ ଆଗରେ ସନ୍ତାନର ପରଲୋକ ହୋଇଯାଏ ? ମାଆ ଥାଉ ଥାଉ କାହିଁକି ସନ୍ତାନ

ତାଂ କୋଳ ଉପରେ ଆଖି ବୁଜିବେ ? ଦାର୍ଶନିକ କୃଷ୍ଣପ୍ରସାଦ, ତମଠାରୁ ଏଇ ପ୍ରଶ୍ନର ଉତ୍ତର ତ ପାଇବାର ଦାବୀ ଆମର ରହିଛି । ଏ କାହାର ନିଷ୍ଠୁରତା, ତମର ନା ବିଧିର ?

ତମର ଶେଷ ଗଳ୍ପର ନାଁ 'ସୀମା' ବୋଲି ବନ୍ଧୁ କରୁଣା ସାଗର ବେହେରା ଆଖି ପୋଛି କହୁଥିଲେ । ସୀମା ତ ଖାଲି ବର୍ତ୍ତମାନ ଗଳ୍ପରେ ସୀମିତ ନୁହେଁ, ଜୀବନର ସବୁ ସୀମା ଡେରିହିଦ ଟପି ତମେ ତ ତମ ଗଳ୍ପର ଯଥାର୍ଥ୍ୟ ପ୍ରମାଣ କରିଗଲ କୃଷ୍ଣପ୍ରସାଦ ।

ତମେ ନାହଁ । ଓଡ଼ିଶା ମାଟି, ଓଡ଼ିଶାର ସାହିତ୍ୟ, ଓଡ଼ିଶାର ସବୁ ଚିନ୍ତାଧାରା ହଠାତ୍ ଦରିଦ୍ର ହୋଇଯାଇଛି । ତମେ ଏଇ ଥିଲ, ଏଇ ନାହଁ, ବିଶ୍ୱାସ କରିହେଉନି । କିନ୍ତୁ ତାହାହିଁ ସତ୍ୟ । ସବୁ ଅଧାରେ ରହିଯିବ ଏବଂ ତାକୁ ଛୁଇଁ ମଣିଷ ଚାଲିଯିବ, ସେଇଠିକୁ ଯେଉଁଠାରୁ କେହି କେବେ ଫେରେନାହିଁ, ଏଇ ବୋଧହୁଏ ସତ୍ୟ, ଠିକ୍ ଜୀବନ ଭଳି ।

ତମ ଘରେ ଆଜି ଆଉ କୋଳାହଳ ନାହିଁ । ଯୁକ୍ତି ଶୁଭୁନାହିଁ ଦର୍ଶନର , ବିତର୍କ ଶୁଭୁନାହିଁ ସାହିତ୍ୟର । ସବୁ ସ୍ଥିରହୋଇ ରହିଯାଇଛି । ଚାପା କାନ୍ଦଣା ଶୁଭୁଚି । କାହାର ଏ ଚାପା କାନ୍ଦଣା ? ପୃଥିବୀ ବିଦାରି ଶୁଭୁଚି ଏଇ କାନ୍ଦଣା । କାହାର, କାହାର ଏ ରୁଦ୍ଧ ବେଦନା ? ପୁତ୍ରହରା ତମ ମାଆଙ୍କର, ସ୍ୱାମୀହରା ତମ ପତ୍ନୀଙ୍କର ? ଏ କାନ୍ଦଣା ମାଡ଼ି ଫୁଟାଇ ଆସୁଚି ପୃଥିବୀର ଗହ୍ୱରରୁ । ଏ କାନ୍ଦଣା କ'ଣ ମାଟି ମାଆର ? ଯେ ଦରିଦ୍ର ହୋଇଯାଇଛି ହଠାତ୍ ।



# ଭସ୍ମୀଭୂତସଏ ଦେହସଏ

୧୯୬୧ ମସିହା । ସ୍ୱାଧୀନତା ଆନ୍ଦୋଳନର ଗୋଟିଏ ପର୍ଯ୍ୟାୟ ଶେଷ ହୋଇଛି । କଟକ ଜିଲ୍ଲା ବଣ୍ଡ ଅଞ୍ଚଳର ହଲଦୀବସନ୍ତ ନାମକ ଗ୍ରାମ । ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ପୀଠସ୍ଥଳୀ । ଗୋପବନ୍ଧୁ ଚୌଧୁରୀଙ୍କ ନାଁ ସ୍ୱରଅଢ଼େ ବ୍ୟାପ୍ତ । ଏଇ ଗ୍ରାମର ବାସ୍ତାଧର ଜେନା ସଂମ୍ଭ୍ରାନ୍ତ ପରିବାରରୁ ଛୁଟିକି ଆସନ୍ତି ସ୍ୱାଧୀନତା ସଂଗ୍ରାମକୁ । ୧୯୬୧ ମସିହା ମାର୍ଚ୍ଚ ମାସରେ ତାଙ୍କର ଏକ ପୁତ୍ର ଜନ୍ମ ହୁଏ । ଗଗନ ଭଳି ଉଚ୍ଚ ଉଦାର ଏବଂ ବ୍ୟାପ୍ତ ହେବ ବୋଲି ସେ ପୁଅଟିର ନାଁ ଦେଲେ ଗଗନ ବିହାରୀ । ପୁଅ ପାଠ ପଢ଼ିବ ପରିବାରର ନାଁ ରଖିବ, ବଡ଼ ମଣିଷ ହେବ । ବାପା ପୁଅକୁ ପଠାଇଲେ କଟକ ରେଭେନ୍ସା କଲେଜିଏଟକୁ ରେଭେନ୍ସା କଲେଜିଏଟରୁ ରେଭେନ୍ସା କଲେଜ । ଆଗରେ ଦୁଇଟି ପଥ ପଡ଼ିଛି, ପରିଷ୍କାର ଭାବରେ । ଗୋଟିଏ ବାଟରେ ହାକିମ ହେବ, ଓକିଲ ହେବ, ଡାକ୍ତର ହେବ । ଆଉ ବାଟରେ ସ୍ୱାଧୀନତାର ଡେଉ ମଥା ପିଟୁଛି । "ତୁମେ କେତେ ଜଣ ଜୀବନକୁ ମାଟି ଛଡ଼ାଇ ନଦେଲେ ଚଳିବକି ? ପରାଧୀନର ହାଡ଼ ଉକାଡ଼ି ନଦେଲେ ଏ ଜାତିର ଭାଗ୍ୟ ଫେରିବକି ?" ଡାକ ଶୁଭୁଛି । ବି.ଏ. ପରୀକ୍ଷା, ପକେଟରେ ଆଡମିଟ୍ କାର୍ଡ । ଏ ପର୍ଯ୍ୟନ୍ତ ସାଇତା ରହିଛି ତ୍ରୁ ଭିତରେ । କାଲି ପରୀକ୍ଷା । ଆଜି ଗଗନ ବିହାରୀ ଚାଲିଲେ ଆଉ ଏକ ପରୀକ୍ଷାକୁ । ସେ ପରୀକ୍ଷା ହେଉଛି କାରାଗାର ଭିତରେ । ବହୁ ଯୁବକ ସେଇଠି ଜୀବନର ନୂଆପାଠ ପଢ଼ୁଛନ୍ତି । ଗଗନ ବିହାରୀ ସେଇଥିରେ ମିଶିଗଲେ ଆଉ ଫେରି ଚାହିଁ ନାହାନ୍ତି । ସ୍ୱାଧୀନତା ଆସିବ । କିନ୍ତୁ ତା'ପରେ ? ନୂତନ ସମାଜ ଗଠନ କରିବାକୁ ହେବ । ଅଣ୍ଟା ଭିଡ଼ି ବାହାରିଲେ ଦଳେ ଯୁବକ । ସେଇଠି ଶୋଷଣ ରହିବ ନାହିଁ । ରହିବ ନାହିଁ ଅତ୍ୟାଚାର । ସାମ୍ୟର ମହା-ମନ୍ତ୍ରରେ ସମସ୍ତେ ଦୀକ୍ଷିତ ହେବେ । ସେଇ ହେବ ନୂତନ ସମାଜର ରୂପକଳ୍ପ । ଗଗନ ବିହାରୀ ସମାଜବାଦୀ ପାଲଟିଲେ । ଆସି ପହଞ୍ଚିଲେ ଆଉ ଏକ ଶିବିରରେ । ସେଇଠି ହୁଏ ଭଗବତୀ ଚରଣ ପାଣିଗ୍ରାହୀ, ରାମକୃଷ୍ଣ ପତି, ଶରତ ପଟ୍ଟନାୟକ ଏବଂ ଗଙ୍ଗାଧର ରଥଙ୍କ ସାଙ୍ଗରେ । ଦୁଇ ଜଣ ବାହୁଡ଼ି ସାରିଲେଣି । ଗଗନ ବିହାରୀ ସେମାନଙ୍କୁ ସ୍ମରଣ କରି ଆଖି ପୋଛନ୍ତି । ବହୁ ଦୁର୍ଦ୍ଦିନ କଟିଛି ସେଇମାନଙ୍କ ସାଥୀରେ । ତାହା କଣ ପାସୋରି ହୁଏ ? ଗଗନ ବିହାରୀ ପିଲାଦିନୁ ସମାଜ ସଂସ୍କାରରେ ମନ ବଳାଇ ଥିଲେ । ବିନା ବେତନରେ କିଛି ଦିନ ଶିକ୍ଷକତା ମଧ୍ୟ କରିଥିଲେ । କିନ୍ତୁ ପୁଣି ଶୁଭିଲା ଜାତୀୟ ଆନ୍ଦୋଳନର ଡାକ । ସମାଜ ସଂସ୍କାର ରହିଗଲା ସେଇଠି । ସମାଜକୁ ବଦଳାଇବାକୁ ପଡ଼ିବ, ସଂସ୍କାର ବେଳ ଏଇଟା ନୁହେଁ । ଆରମ୍ଭ ହେଲା ନୂତନ ଜୀବନ । ପାର୍ଟି ହୋଲଟାଇମରର ଜୀବନ । ବହୁ ଝଡ଼, ଝଞ୍ଜା, ଘୂର୍ଣ୍ଣି ଭିତରେ, କଠୋର ଦାରିଦ୍ର୍ୟ

ଭିତରେ ଯିବାକୁ ପଡ଼ିଛି । ଭାରତରେ ସ୍ୱାଧୀନତା ଆସିଛି । କିନ୍ତୁ ସ୍ୱପ୍ନ ସଫଳ ହୋଇନାହିଁ । ଗୋଟିଏ ସ୍ୱାଧୀନତା ସଂଗ୍ରାମ ସରିଛି । କିନ୍ତୁ ଆଉଟିଏ ଆରମ୍ଭ ହେବ । ଯେଉଁ ସ୍ୱାଧୀନତା ସଂଗ୍ରାମ ସରିନାହିଁ ବୋଲି ଜୟ ପ୍ରକାଶ, ମନମୋହନ ଚୌଧୁରୀ ପ୍ରଭୃତି ନେତୃବୃନ୍ଦ ପରେ କହିଲେ, ସେଇ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ ଗଗନ ବିହାରୀ ଏବଂ କାରାବରଣ କଲେ ବହୁ ବର୍ଷ ଧରି । ଶ୍ରମିକ, ମେହନତୀ ମଣିଷ ପାଇଁ ଗଗନ ବିହାରୀଙ୍କ ଦରଦ ଥିଲା ପ୍ରଭୂତ । ସେ କଟକ ପ୍ରେସ ଶ୍ରମିକ ସଂଘ ସହ ଜଡ଼ିତ ଥିଲେ ନିବିଡ଼ ଭାବରେ ବହୁ ବର୍ଷ ଧରି । ଜୀବନର ବହୁ ଦୁର୍ବିପାକ ଭିତରେ କିଛି କାମ ପାଇଁ ସେ ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ ଗ୍ରାମ ସେବକ ପ୍ରେସର ଦାୟିତ୍ୱ ନେଇଥିଲେ ଏବଂ ପରେ କଳିଙ୍ଗ ପ୍ରେସରେ କିଛି କାଳ କାର୍ଯ୍ୟ କରିଥିଲେ । କଟକ ସହର କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ସେ ସମ୍ପାଦକ ଥିଲେ ବହୁ ବର୍ଷ ଧରି । ଏବେ ମଧ୍ୟ ତାଙ୍କର ସହକର୍ମୀମାନେ ତାଙ୍କର ଶୃଙ୍ଖଳା ଏବଂ ସ୍ନେହକୁ ସ୍ମରଣ କରନ୍ତି ଅଶ୍ରୁଳ ସ୍ମୃତିର ସହିତ । ବିବାହ କରିଥିଲେ ବିଳମ୍ବିତ ସମୟରେ କାରଣ ଦେଶର ଆହ୍ୱାନ ତାଙ୍କୁ ପରିବାର ଗଠନର ସମୟ ଦେଇ ନ ଥିଲା । ପରେ ସେ ସ୍ୱାଧୀନ ଭାବରେ ପ୍ରେସଟିଏ ପ୍ରତିଷ୍ଠା କଲେ । ଧନ ନଥିଲା କିନ୍ତୁ ମନ ଥିଲା ଏବଂ ନିଷ୍ଠା ମଧ୍ୟ ଥିଲା । ପ୍ରେସର ନାମ ଦେଲେ ପ୍ରୋଗ୍ରେସିଭ ପ୍ରେସ । ପ୍ରୋଗ୍ରେସିଭର ସୌହାର୍ଦ୍ଦ୍ୟରେ ସେ ଥିଲେ ଉତ୍ତରାଧିକାରୀ ଏବଂ ପ୍ରୋଗ୍ରେସିଭ ପ୍ରତି ତାଙ୍କର ଦୁର୍ବଳତା ଥିଲା ପ୍ରଚୁର । ପେଷା ଥିଲା ପ୍ରେସ । କିନ୍ତୁ ନିଶା ଥିଲା ଜନସେବା ।

ସନ୍ଧ୍ୟା ହେଲେ ସାଇକେଲଟିଏ ଧରି ବାହାରିବେ ବନ୍ଧୁ ସନ୍ଧାନେ । ମତାନ୍ତର ହୋଇଛି କିନ୍ତୁ ମନାନ୍ତର ତ କାହାରି ସାଥିରେ ହୋଇନାହିଁ । ଗଗନ ବିହାରୀ ଘରେ ବୁଲନ୍ତି । କାହାରି କଥା ମାନନ୍ତି ନାହିଁ ।

ଜୀବନର ଅପରାହ୍ନ ଆସିଛି । ସାଙ୍ଗମାନେ ଅନେକେ ହଜି ଗଲେଣି । ନୂଆ ମଣିଷମାନଙ୍କ ସହ ସେ ଖାପ ଖୁଆଇ ପାରୁ ନାହାନ୍ତି । ସମାଜବାଦୀ ଦୁନିଆରେ ବହୁ ପରିବର୍ତ୍ତନ, ପ୍ଲାବନ ଘଟିଯାଉଛି । ସେ ଖୋଜୁଛନ୍ତି ନିଜର ସ୍ୱପ୍ନକୁ । ଯେଉଁ ସ୍ୱପ୍ନରେ ବିଭୋର ହୋଇ ସେ ପ୍ରାୟ ପଚାଶ ବର୍ଷ ତଳେ ଘୁରୁଥିଲେ ସବୁ । ସେ ନିଃସଙ୍ଗ ହୋଇ ଯାଇଛନ୍ତି କି ? ଗଗନ ବିହାରୀ ଅସ୍ଥିର ହୋଇ ଉଠୁଥିଲେ । ନାଁ, ଗୋଟାଏ କିଛି କରିବାକୁ ହେବ । ନିଜର ସ୍ୱପ୍ନ କଥା ସେ କହନ୍ତି ଗୁରୁଚରଣ ପଟ୍ଟନାୟକ, ଗୋବିନ୍ଦ ମହାନ୍ତି, ଶରତ ପଟ୍ଟନାୟକଙ୍କୁ । କାହାକୁ ଆଉ କହିବେ ?

ସେଇ ଗଗନ ବିହାରୀ ଆଉ ନାହାନ୍ତି । ଯେଉଁ ସତୀଚଉରାରେ ସେ ଆପଣାର ସହକର୍ମୀ ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକଙ୍କୁ ନିଜେ ଚିତାରେ ଶୁଆଇ ଦେଇ ଆସିଥିଲେ ସେଇ ସତୀଚଉରାରେ ତାଙ୍କର ଚିତା ଜଳିଲା । ସେ ଚାଲିଗଲେ ଇତିହାସ ମଇମାସ ୨୨ ତାରିଖ ମଧ୍ୟରାତ୍ରରେ । ସେ ଆଉ ଫେରିବେ ନାହିଁ ।



# ସର୍ଦ୍ଦାରଙ୍କ ସ୍ମୃତିରେ

ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଉ ନାହାନ୍ତି । ଇତିହାସର ଗୋଟିଏ ପୃଷ୍ଠା ଓଲଟି ପଡ଼ିଛି । ସମସ୍ତ ମୁହୂର୍ତ୍ତିକ ପାଇଁ ସ୍ଥିର ହୋଇ ପୁଣି ଚାଲିଛି । ସେ ଇତିହାସ ପାଲଟି ଯାଇଛି । ସେ ଚାଲିଯିବାର ସମ୍ବାଦ ଖବରକାଗଜର ପୃଷ୍ଠାକୁ ବଡ଼ ହରଫରେ ମଣ୍ଡନ କରିନାହିଁ । ଗଲା କେତେ ମାସ ହେଲା ସେ ଅଚଳ ହୋଇଯାଇଥିଲେ । ମଣିଷ ଚହ୍ନିପାରୁ ନଥିଲେ, ଶୋଇ ରହୁଥିଲେ ଏବଂ ୧୯୩୦ ର ଦୁର୍ଦ୍ଦାନ୍ତ ଘୋଡ଼ା ଆଉ ଦୌଡ଼ିପାରୁ ନଥିଲେ । ଜୀବନ ଥାଇ ଆଉ ସେ ବିସ୍ମୃତିର ଗର୍ଭକୁ ଟାଣିହୋଇ ଯାଉଥିଲେ ।

୧୯୩୦ ମସିହାରେ ରେଭେନ୍‌ସା କଲେଜରେ ସେ ଦ୍ୱିତୀୟ ବାର୍ଷିକ ଛାତ୍ର । ବ୍ୟକ୍ତିଗତ ଜୀବନକୁ ସୁରକ୍ଷିତ କରିବାର ସିଂହଦ୍ୱାର ପାଖରେ । କିନ୍ତୁ ଭାରତବର୍ଷ ? ମଥା ପିଟୁଛି ସ୍ୱାଧୀନତା ଆନ୍ଦୋଳନର ଢେଉ । ଗତିକୃଷ୍ଣଙ୍କ ପାଠ ପଢ଼ାରେ ଡୋରି ବନ୍ଧାହେଲା । ସେ ଛୁଟିଲେ ଜୀବନର ବଡ଼ ପୋଥି ପଢ଼ିବାପାଇଁ । ୧୯୩୦ ରୁ ୧୯୯୩ । ପାଦ, ଦେହ ଅଚଳ ନ ହେବା ପର୍ଯ୍ୟନ୍ତ ଆଉ ଗତିକୃଷ୍ଣ ପଛକୁ ଫେରି ଅନେଇ ନାହାନ୍ତି । ଅନେଇବା ପାଇଁ ବେଳ କାହିଁ । ଆନ୍ଦୋଳନ ପରେ ଆନ୍ଦୋଳନ । କାରାବାସ ପରେ କାରାବାସ । ପୁରୀର ଏକ ଅଜ୍ଞାତ ମଠରେ ଅର୍ଦ୍ଧପଳାତକ ଗତିକୃଷ୍ଣ ଆପଣାର ଶିବିର ପାତନ୍ତି । ଆଉ ସେଇଠାରୁ ପରିଚାଳନା କରନ୍ତି ଆନ୍ଦୋଳନ । ବଡ଼ ରଥୀ, ମହାରଥୀଙ୍କ ସହିତ ସେଇଠି ସାକ୍ଷାତ ହୁଏ । ଆଜି ମଧ୍ୟ ସହଯୋଦ୍ଧା ଗୁରୁଚରଣ ଅଶ୍ରୁଳ ନୟନରେ ସ୍ମରଣ କରନ୍ତି ସେଇଦିନଗୁଡ଼ିକୁ ।

ଭାରତୀୟ ଜାତୀୟ କଂଗ୍ରେସରୁ ସମାଜବାଦୀ ଆନ୍ଦୋଳନ । ଜାତୀୟ ଆନ୍ଦୋଳନରୁ କୃଷକ ଆନ୍ଦୋଳନ । ଗତିକୃଷ୍ଣ ପୁରୀ ଜିଲ୍ଲାରେ କୃଷକ ସଭାର ସଭାପତି ଥିଲେ । ସହ-ଯୋଦ୍ଧାମାନଙ୍କ ଭିତରୁ ଅନେକ ଗଲେଣି ଚାଲି । ଆଉ ଅନ୍ୟମାନେ ଯିବା ଯିବା ବାଟରେ । ସ୍ୱାଧୀନତା ଆସିଛି । କିନ୍ତୁ ଗତିକୃଷ୍ଣଙ୍କର ସଂଗ୍ରାମ ସରିନାହିଁ । କମିତି ସରିବ ? ଯେଉଁ ଚାଷୀମାନଙ୍କର ସେ ନେତା, ସେ ଚାଷୀକୁଳର ଅବସ୍ଥା କ'ଣ ? ତେଣୁ ଆରମ୍ଭ ହୋଇଛି ପୁଣି ଥରେ ସଂଗ୍ରାମ । ଏହି ସଂଗ୍ରାମକୁ ପରେ ଲୋକନାୟକ ଜୟପ୍ରକାଶ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ବୋଲି ଆଖ୍ୟା ଦେଇଛନ୍ତି । ନିମାପଡ଼ା ନିର୍ବାଚନ ମଣ୍ଡଳୀରୁ ସେ ନିର୍ବାଚିତ ହୋଇଛନ୍ତି ବିଧାନସଭାକୁ । ସ୍ୱାଧୀନତା ଆନ୍ଦୋଳନ ଭିତରେ ସେ ହରାଇଛନ୍ତି

ଆପଣାର ସ୍ତ୍ରୀଙ୍କୁ । କିନ୍ତୁ ଲୁଣମରା ଚାମ କାଳେ ବ୍ୟାହତ ହେବ, ସେଥିପାଇଁ ସେ କହୁ ନାହାନ୍ତି କାହାକୁ ତାଙ୍କର କାହାଣୀ । ଆଶ୍ଚର୍ଯ୍ୟ ହରହର ଶୁଣିଛନ୍ତି ସେ କଥା । ଆଉ ଅବାକ୍ ହୋଇ ପଚାରନ୍ତି କ'ଣ ଗଡକୃଷ୍ଣ ପଥର ପାଲଟିଗଲି ? କମିତ ମଣିଷଟାଏ ମ ?

ସାଦାସିଧା ମଣିଷଟିଏ । ନମ୍ର, ବିନୟୀ ବ୍ୟବହାର । ମତାନ୍ତର କଦାପି ମନାନ୍ତରରେ ପରିଣତ ହୋଇନାହିଁ । ପ୍ରତିଷ୍ଠା ମସ୍ତିଷ୍କକୁ ବିଭ୍ରାନ୍ତ କରିନାହିଁ । ଧୋତି, ହାପ୍ କାମିଜ ଏବଂ ପାଦରେ ଚପଲ ତାଙ୍କର ଚିରାଚରିତ ବେଶ । ସେଇଯୋଗୁଁ ସେ କ୍ଲାସିକାଲ ମଣିଷରେ ପରିଣତ ହୋଇଛନ୍ତି । ଦଳମତ ନିର୍ବିଶେଷରେ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଛନ୍ତି । କାହାରିପ୍ରତି ବୈରତା ନାହିଁ, ଅହଂଭାବ ଆଦୌ ନାହିଁ । ବୈରତା ଦେଶର ଦାରିଦ୍ର୍ୟ, କଷଣ ସହିତ । ତାହା ସହିତ ସେ ଜୀବନବ୍ୟାପୀ ସାଲିସ କରିନାହାନ୍ତି । କଠୋର ସଂଗ୍ରାମ ଲୁହାକୁ ଇସ୍ପାତରେ ପରିଣତ କରିଛି । ଗଡକୃଷ୍ଣ ଆମର ପରମ୍ପରା ହୋଇଯାଇଛନ୍ତି ।

ସେଇ ଗଡକୃଷ୍ଣ ଆଉ ନାହାନ୍ତି । ସେ ପାଲଟି ଯାଇଛନ୍ତି ଇତିହାସ । ଦୂର ଇତିହାସର ବଳିଷ୍ଠ ହାତରେ ବହୁ ରଥୀ ମହାରଥୀ ବିସ୍ମୃତିର ଗର୍ଭକୁ ଠେଲିହୋଇ ଯାଉଛନ୍ତି । ଗଡକୃଷ୍ଣ କିନ୍ତୁ ଅମ୍ଳାନ ହୋଇ ରହିବେ ତାଙ୍କର ଅଗଣିତ ବନ୍ଧୁ, ସହଯୋଦ୍ଧାମାନଙ୍କର ସ୍ମୃତିରେ । ଇତିହାସ ପୁଣି ଦିନେ ଲେଖାହେବ ଏବଂ ହୁଏତ ତାଙ୍କର ସ୍ଥାନ ପୁଣି ନିରୂପିତ ହେବ ।



# ପୂଣ୍ୟତୋୟା ଗୋଦାବରୀ

ଗୋଦାବରୀ ଦେବୀ । ଜଣେ ମଣିଷ ଖାଲି ନୁହନ୍ତି, ଏକ ଅନୁଷ୍ଠାନ ସେ । ପିଲାଦିନରୁ ଆସିଥିଲେ ସ୍ୱାଧୀନତା ସଂଗ୍ରାମର ସ୍ରୋତରେ । ସ୍ୱାଧୀନତା ତାଙ୍କ ପାଇଁ ଖାଲି କ୍ଷମତା ମଧ୍ୟରେ ନଥିଲା, ନଥିଲା କେବଳ ବ୍ରିଟିଶ ଶାସନର ଅବସାନରେ । ଏକ ସୁନ୍ଦର ସୁସ୍ଥ, ସମାଜବାଦୀ ସମାଜ ଗଠନର ସ୍ୱପ୍ନ ତାଙ୍କୁ ଘାରିଥିଲା ଏବଂ ସେଇ ନିଶାରେ ସେ ବିଭୋର ହୋଇ ରହିଲେ ମୃତ୍ୟୁ ପର୍ଯ୍ୟନ୍ତ ।

ଯେତେବେଳେ ନାରୀମାନେ କେବଳ ଘର ଭିତରେ ଆବଦ୍ଧ ହୋଇ ରହୁଥିଲେ ଓଢ଼ଣା ଭିତରେ, ସେତିକିବେଳେ ସମାଜର ସବୁ ଅର୍ଗଳି ଭାଙ୍ଗି ଗୋଦାବରୀ ଦେବୀ ଆସିଥିଲେ ସ୍ୱାଧୀନତା ସଂଗ୍ରାମର ମହାସ୍ରୋତକୁ । ସେ ଆଉ ଫେରି ପଛକୁ ଚାହିଁ ନାହାନ୍ତି ।

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନର ଅନ୍ୟତମ ମହାରଥୀ ଶ୍ରୀ ରବୀନ୍ଦ୍ରମୋହନ ଦାସଙ୍କୁ ସେ ଜୀବନ ସାଥୀ ଭାବରେ ଗ୍ରହଣ କରନ୍ତି ସେଇ ଭିତରେ । ବିନା ପୁରୋହିତ, ବିନା ପୂଜାପାଠ, ବିନା ମନ୍ତ୍ରରେ ବିବାହ । ସ୍ୱାମୀଙ୍କର ସହଧର୍ମିଣୀ କେବଳ ନୁହେଁ, ସହକର୍ମୀ ଭାବରେ ସେ ନିଷ୍ଠାର ସହ କାର୍ଯ୍ୟ କରି ଯାଇଛନ୍ତି ମୃତ୍ୟୁ ପର୍ଯ୍ୟନ୍ତ । ଦୁଃଖ ଦୁର୍ବିପାକ କେହି ତାଙ୍କର ମନୋବଳକୁ ଭାଙ୍ଗି ପାରିନାହାନ୍ତି । ଦେଶରେ ଆସିଛି ଜରୁରୀ ପରିସ୍ଥିତିର ଅନ୍ଧକାର । ସେ ଓ ରବିବାବୁ ଉଭୟେ ଗିରଫ ହୋଇଛନ୍ତି । ଭାରତବର୍ଷର ବହୁ ବ୍ୟକ୍ତିଙ୍କ ପରି ସେମାନେ ମଧ୍ୟ ଅନୁଭବ କରିଛନ୍ତି ଆଉ ଏକ ସ୍ୱାଧୀନତା ସଂଗ୍ରାମର ଦୁର୍ବାର ଆହ୍ୱାନ ।

ଗୋଦାବରୀ ଦେବୀ ପାଳିଛନ୍ତି ବହୁ ସଂଗ୍ରାମୀଙ୍କର ଭଉଣୀ ଓ ମାଆ । ସେଇ ଗୋଦାବରୀ ଦେବୀ ଆଉ ନାହାନ୍ତି । କେହି ରହିବେ ନାହିଁ । ଏକ ସୁସ୍ଥ, ସୁନ୍ଦର ସମାଜବାଦୀ ସମାଜ ପାଇଁ ମଣିଷର ସଂଗ୍ରାମ ତଥାପି ଅବ୍ୟାହତ । ବହୁ ଝଞ୍ଜା, ଦୁର୍ବିପାକ ସତ୍ତ୍ୱେ ଏହି ସଂଗ୍ରାମ ଯୁଗ ଯୁଗ ଧରି ଚାଲିବ । ଏବଂ ତାରି ଭିତରେ ସମସ୍ତେ ହେଜିବେ ଗୋଦାବରୀ ଦେବୀଙ୍କ ପରି ମଣିଷଟିକୁ, ଯିଏ ପ୍ରତିଷ୍ଠା ଖୋଜି ନାହିଁ, ନିଜର ତ୍ୟାଗ ପାଇଁ ପୁରସ୍କାର ଲୋଡ଼ି ନାହିଁ, କେବଳ ଚାହିଁଛି ନିବେଦନ ଏବଂ ସଂପୂର୍ଣ୍ଣ ଭାବରେ ନିବେଦିତା ହେବାହିଁ ହେଉଛି ତାଙ୍କର କାମ୍ୟ । ତାହାହିଁ ତାଙ୍କର ଜୀବନର ସାର୍ଥକତା ଏବଂ ସାଫଲ୍ୟ ।

☐

# ମଣିଷ ପରି ମଣିଷଟିଏ

ନାଟୁବାବୁ ନାଁରେ ସେ ପିଲାବୁଢ଼ା ସମସ୍ତଙ୍କ ପାଖରେ ପରିଚିତ ଥିଲେ । ଭଲ ନାଁ ଥିଲା ଗୋପକୃଷ୍ଣ ଦାସ । ସେ ନାଁଟା ରହିଯାଇଥିଲା ସରକାରୀ ଫାଇଲ୍‌ରେ । ତାଙ୍କ ସହିତ ପରିଚିତ ହୁଏ ୧୯୪୭ ମସିହାରେ ବୋଧହୁଏ । ସେ ଭୁବନେଶ୍ୱର (ସେତେବେଳେ ନାଁ ଥିଲା ରସେଲକୋଣ୍ଡା)ରେ ଏସ୍.ଡି.ଓ । ବଡ଼ ହୋଇ ନଥାନ୍ତି ।

ସୁଦର୍ଶନ ବେହେରା । ଅମାୟିକ ମଣିଷ । ପ୍ରଭାବ ଥାଏ ପ୍ରଚୁର । କାହିଁକି ବଡ଼ ହୋଇ ନାହାନ୍ତି ସେ ବିଷୟରେ ଆଲୋଚନା ହୁଏ ସରକାରୀ କର୍ମଚାରୀମାନଙ୍କ ଭିତରେ । କୌଣସି ଦିନ ତାଙ୍କର ଚରିତ୍ର ଉପରେ କେହି ଖରାପ ମନ୍ତବ୍ୟ ଦେବା ଶୁଣି ନାହିଁ । ବରଂ ସମସ୍ତେ କହନ୍ତି ଯେ ନାଟୁବାବୁ ଦାର୍ଶନିକ ମଣିଷ । ଚିର ଜୀବନ ଅବିବାହିତ ରହିଗଲେ ।

କିନ୍ତୁ ଏଇ ମଣିଷମାନେ ଯେପରି ଏକ୍‌ସେନଟ୍ରିକ ହୋଇଯାଆନ୍ତି ତାହା ତାଙ୍କ ପାଖରେ ଦେଖାଦେଇନଥିଲା ଆଦୌ । ସେମିତି ବିନମ୍ର, ଶାନ୍ତ, ଭଦ୍ର ଏବଂ ଉଦାର ରହିଗଲେ ସେ ଚିରଦିନ । ଅନେକ ଦିନ ପର୍ଯ୍ୟନ୍ତ କାରି ତାଙ୍କୁ ସ୍ପର୍ଶ କରି ନଥିଲା । ଜୀବନର ଅପରାହ୍ଣରେ ସେ କ୍ରମଶଃ ଉଦାସୀନ ବା ଧାର୍ମିକ ହୋଇଗଲେ । ଜଗମୋହନର ବୈରାଗ୍ୟ ତାଙ୍କୁ ଆକର୍ଷଣ କରିନେଲା ପୁରାପୁରି । ଓଡ଼ିଶାର ବହୁ ସ୍ଥାନରେ ବିଭିନ୍ନ ପଦବୀରେ ସେ ଚାକିରି କରିଛନ୍ତି । କୌଣସି ସ୍ଥାନରେ ଅସାଧୁତାର ଗନ୍ଧ ତାଙ୍କ ଦେହରେ ଲାଗି ନାହିଁ । ସାମ୍ବାଦିକମାନଙ୍କଠାରୁ ମନ୍ତ୍ରୀ ପର୍ଯ୍ୟନ୍ତ, ଗ୍ରାମଙ୍କଠାରୁ କୁଲି ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ତାଙ୍କର ସ୍ୱାଭାବିକ ମଧୁର ହସ ଏବଂ କଥାରେ କିଣି ନେଇ ପାରୁଥିଲେ । ତାଙ୍କୁ କ୍ୱଚିତ ବିମର୍ଷ ହେବା ଦେଖାଯାଉଥିଲା ।

ଜୀବନରେ ଆଉ କିଛି କରିବାର ନଥିଲା ବୋଧହୁଏ । ତାଙ୍କ ସ୍ପର୍ଶରେ ପରବର୍ତ୍ତୀ କାଳରେ ବହୁ ନିକଟରେ ଆସିଛୁ । କିଛିକାଳ ତାଙ୍କର ପଡ଼ୋଶୀ ଥିଲି ମଧ୍ୟ । ପିଲାଙ୍କ ସହିତ ଯେମିତି ବୁଢ଼ାଙ୍କ ସହିତ ସିମିତି । ସେ ଆଉ ନାହାନ୍ତି ।

ଖାଲି ଅଫିସର ନୁହେଁ, ଜଣେ ଭଦ୍ର ସାଧୁ ସଚ୍ଚୋଟ ଏବଂ ସ୍ନେହୀ ମଣିଷ ଭାବରେ ସେ ସ୍ମୃତି ହୋଇ ରହିବେ ବହୁକାଳ ତାଙ୍କର ଅଗଣିତ ବନ୍ଧୁମାନଙ୍କର ମାନସପଟରେ ।

ସେମାନଙ୍କ ଭିତରେ ଇଞ୍ଜିନିଅର, ଡାକ୍ତର ଅଫିସର, ଲେଖକ, କଳାକାର ସାମ୍ବାଦିକ ସମସ୍ତେ ଅନ୍ତର୍ଭୁକ୍ତ । ସେଥିଲେ ମଣିଷ ପରି ମଣିଷଟିଏ ।



# ମଣିଷ ଭିତରେ ମଣିଷଟିଏ

କଟକର ଜେଲ । ଜଣେ ପ୍ରଶ୍ନ କଲେ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କୁ । ଆପଣ ସେଇ Notes from the gallows ବହିଟିକୁ ପାସ୍ କଲେ ନାହିଁ କାହିଁକି ? "ମୁଁ ବହିଟି ପଢ଼ିଲି । ମୁଁ ଜେଲ ସୁପରିଣ୍ଟେଣ୍ଡେଣ୍ଟ । ମୋର ରକ୍ତ ଗରମ ହୋଇଗଲା । ଆପଣ ବନ୍ଦୀ । ମୁଁ ତାକୁ ଆପଣଙ୍କୁ ପଢ଼ିବାକୁ ଦେଇନ୍ତି କିପରି ?" ଜେଲର ସୁପରିଣ୍ଟେଣ୍ଡେଣ୍ଟ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ । ବନ୍ଦୀ ଆମେମାନେ ।

ମେଡ଼ିକାଲ କଲେଜର ବାର୍ଷିକ ଉତ୍ସବ । ଜେନାମଣି ନରେନ୍ଦ୍ରକୁମାର, ସର୍ବେଶ୍ୱର ଭଦ୍ର, ଆଉ ଜଣେ କିଏ ଗୁଣ୍ଡ ରୋଗୀ । ସିଟ୍ ମିଳୁନାହିଁ, ସେମାନଙ୍କ ପାଇଁ ବାହାରେ ଚଉକିଟା ପାଇଁ । ମୁଖ୍ୟଅତିଥି ରାଜମାତା ବସନ୍ତମଞ୍ଜରୀ ସ୍ୱାସ୍ଥ୍ୟମନ୍ତ୍ରୀ । ସଭାପତି ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ପ୍ରିନ୍ସିପାଲ । ସଭାରେ ମେଡ଼ିକାଲ ବ୍ୟବସ୍ଥା ସମ୍ପର୍କରେ ପ୍ରବଳ ଆକ୍ରମଣ ହେଲା । ତା ପରଦିନ ସବୁ ବ୍ୟବସ୍ଥା ହୋଇଗଲା । ହଷ୍ଟେଲକୁ ଆସି ମୋତେ ବଧାଇ ଜଣାଇଗଲେ ପ୍ରିନ୍ସିପାଲ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ । ସାବାସ୍ !

ଜୀବନର ବହୁ ବିଭାବକୁ ସେ ଛୁଇଁ ଯାଇଥିଲେ । ଆଉ ଯାହାକୁ ଛୁଇଁଥିଲେ ସବୁଥିରେ ତାଙ୍କର ସୃଜନଶୀଳ ପ୍ରତିଭାର ଦାଗ ରହିଯାଇଥିଲା । ବିଜ୍ଞାନ ପ୍ରଚାର ସମିତିର ସେ ଅନ୍ୟତମ ପ୍ରତିଷ୍ଠାତା ଓ ପ୍ରାଣକେନ୍ଦ୍ର । ଆଜି ବିଜ୍ଞାନ ପ୍ରଚାର ସମିତି ଯେଉଁ ମହୀରୂହରେ ପରିଣତ ହୋଇଛି ତାର ଅଙ୍କୁରୋଦ୍‌ଗମ କରାଇଥିଲେ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ ।

ବୈଜ୍ଞାନିକ ପରିଭାଷା । ଇଂରାଜୀରେ ଥିବା ବୈଜ୍ଞାନିକ ଶବ୍ଦର ଓଡ଼ିଆ ରୂପାନ୍ତର ହେବ । ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ଫୋନ ସକାଳୁ ବାଜିବ ନିଶ୍ଚୟ । ବିଭିନ୍ନ ଲୋକଙ୍କୁ ସେ ପଚାରିବେ ଶବ୍ଦର ଭାଷାନ୍ତର । ଯେପର୍ଯ୍ୟନ୍ତ ସେ ତୃପ୍ତ ହୋଇନାହାନ୍ତି ସେପର୍ଯ୍ୟନ୍ତ ଚାଲିଥିବ ତାଙ୍କର ପ୍ରଚେଷ୍ଟା; କ୍ଳାନ୍ତ ହେବେ ନାହିଁ କି ବିରକ୍ତ ହେବେ ନାହିଁ ।

ଜିଜ୍ଞାସା ପଚାର, ପଚାର, ପରୀକ୍ଷା କର ଏବଂ ପୁଣି ପରୀକ୍ଷା କର । ଯାହା ପ୍ରମାଣିତ ନୁହେଁ ତାହା ଭ୍ରାନ୍ତ । ଏହାର ପ୍ରଚାରକ ଥିଲେ ଡାକ୍ତର ଗୋପାଳଚନ୍ଦ୍ର

ପଟ୍ଟନାୟକ । କାହାକୁ ସେ ମାନିବାକୁ ପ୍ରସ୍ତୁତ ନଥିଲେ ବିନା ଯୁକ୍ତିରେ, ବିନା ପ୍ରମାଣରେ ।

ବୟସ ଅତିକ୍ରାନ୍ତ ହୋଇଥିଲା । ଶରୀର କ୍ଲାନ୍ତ ଅବଶ ହୋଇଯାଇଥିଲା । କିନ୍ତୁ ମେଧା ଓ ବୁଦ୍ଧି ସେଇପରି ଥିଲା ଶାଣିତ ଏବଂ ତୀକ୍ଷ୍ଣ । ତାହା ମହାକାଳ ଆଗରେ ହାରି ମାନିବାକୁ ପ୍ରସ୍ତୁତ ନଥିଲା । ଏଇତ ମାତ୍ର କେଇ ମାସ ତଳର କଥା । ଦେଖାହେଲା । ସେ ଚାଲି ଯିବେ ନା ନାହିଁ ବିବେକ ସାଙ୍ଗରେ । ସେଇଆ ପଚାରିବାକୁ ଯାଇ ଅଟକିଗଲି ଅଧାରେ । ସେ କହିଲେ । ମୁଁ କିଛି ସ୍ଥିର କରିନାହିଁ । ତେବେ ସବୁ କଥା କ'ଣ ମୋ ଉପରେ ନିର୍ଭର କରିବ ? ଏହା କ'ଣ ଏକ ଭବିତବ୍ୟ ବାଣୀ ! ପ୍ରଫେଟିକ୍ !

ଆଖି କିନ୍ତୁ ସେଇପରି ତୀକ୍ଷ୍ଣ ଅନ୍ତର୍ଭେଦୀ ରହିଛି । ଦେହ ହୋଇଯାଇଛି ପେନ୍‌ସିଲ କାଠି ପରି । ଯେକୌଣସି ମୁହୂର୍ତ୍ତରେ ଝଡ଼ିପଡ଼ିବ କାଳର ଧୀର ପବନରେ । କିନ୍ତୁ ସେଥିରେ ଯାଏଆସେ କେତେ ? ସମସ୍ତେ ତ ଯିବେ । କିଏ ମୁଣ୍ଡରେ ତମ୍ବାପଟା ବାନ୍ଧି ଆସିଛି କି ? କିନ୍ତୁ ମୃତ୍ୟୁ ଆସିବ ବୋଲି କ'ଣ ମଣିଷର ଜିଜ୍ଞାସା ବନ୍ଦ ହୋଇଯିବ ? ତା'ହେଲେ ଉତ୍ତର ପୁରୁଷ କ'ଣ ଭାବିବ ଆମକୁ ? ଗୋପାଳବାବୁ ପଚାରି ଚାଲିଛନ୍ତି ବହୁତ ବିଷୟରେ । ତା'ର ଅନ୍ତ ନାହିଁ, ସୀମା ନାହିଁ । ଅନ୍ତ ତାହାର ନାଁ ତ ଜୀବନ । ତାହାର ପ୍ରତୀକ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ।

ବୈଦ୍ୟୁତିକ ନିମାଖୋରଏମରେ ମୋର ଅନ୍ତିମ କ୍ରିୟା ଅନୁଷ୍ଠିତ ହେବ । ଏହାହିଁ ତାଙ୍କର ଶେଷ ଇଚ୍ଛା ମନେପଡ଼ୁଛି । ଶ୍ୱଶୁର ପୂର୍ବତନ ଚିଫ୍ ଜଷ୍ଟିସ୍ ବୀରକିଶୋର ରାୟଙ୍କର ଶବଦାହ ହେଉଛି । ଡାକ୍ତର ଗୋପାଳ ପଟ୍ଟନାୟକ ଖେଦୋକ୍ତି କରିଥିଲେ ବୈଦ୍ୟୁତିକ ଚୁଲିର ଅଭାବ ନେଇ । ସେ ଥିଲେ ବୈଜ୍ଞାନିକ । ପୃଥିବୀକୁ ଯିଏ ଦେଖିଥିଲା ଅନ୍ତର୍ଭେଦୀ ଦୃଷ୍ଟିରେ ସେ କ'ଣ ତା'ର ନିଜର ମୃତ୍ୟୁକୁ ବାଦ୍ ଦିଅନ୍ତା ସେଥିରୁ ?

ଗୋପାଳବାବୁ ଥିଲେ ଡାକ୍ତର ବୈଜ୍ଞାନିକ, କିନ୍ତୁ ସର୍ବୋପରି ସେ ଥିଲେ ମଣିଷ ଭଲ ମଣିଷଟିଏ । ମଣିଷର ଭଲଗୁଣ ସବୁ ତାଙ୍କ ଦେହରେ ଭରି ରହିଥିଲା ।

ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ଆଉ ନାହାନ୍ତି । ସେଭଳି ମଣିଷଟିକୁ ଆମେ ସବୁ ଖୋଜିବୁ, ହେଜିବୁ ସବୁଦିନ ଧରି ଅନ୍ତଃସ୍ଥିତ ପ୍ରାଣରେ । କାରଣ ସେଭଳି ମଣିଷଟିଏ ମିଳିବେ ନାହିଁ ସହଜରେ ।



# ପରଜାର ପରଲୋକ

ସେ ଥିଲେ ଆମର ବସ୍ତ୍ରପତ୍ର । ଜେଲଖାନା ଭିତରେ କୋର୍ଟ । ବସ୍ତ୍ରପତ୍ର ଆସନ୍ତି । ଆମେ ସ୍ଳୋଗାନ ଦେଉ । ସେ ହସନ୍ତି । ଅଳ୍ପ ସମୟରେ ବସ୍ତ୍ର ସରିଯାଏ । ତା'ପରେ ବ୍ଲେ ଗଲ । ସେ ହାତରେ ଗୋଟିଏ ରଙ୍ଗୀନ କାଗଜ ଧରି ଯାଆନ୍ତି । ଆଉ ଗୋଟାଏ ପଞ୍ଚିଙ୍ଗ୍ ମେସିନ୍ । ଆଉ ପାଣ୍ଡୁଲିପି 'ଗହ୍ବର ଛାଇ' ବହିର । ଗୋପୀବାବୁ ବହି ଲେଖନ୍ତି । ପଢ଼ି ଆମକୁ ଶୁଣାନ୍ତି । ପରବର୍ତ୍ତୀ ଜୀବନରେ ବହୁବାର ଦେଖା ହୋଇଛୁ । ଦେଖିଲେ ସେ ପ୍ରଥମେ ହସି ହସି ଆରମ୍ଭ କରନ୍ତି । "ଗୋପୀ ମହାନ୍ତି ଗୁଣ୍ଡା ହେଁ" ନାହିଁ ?

ସେ ପାଇଲେ ଏକ ଡକ୍ଟରେଟ ଉପାଧି । ସମ୍ମାନସୂଚକ । ଆମେ ନିବେଦନ କଲୁ ଆପଣ ଆସିବେ । ଆମକୁ କହିବେ ଜୀବନ କାହାଣୀ । ସେ ମନା କରିଦେଲେ ସ୍ପଷ୍ଟ ଭାଷାରେ । ଏହି ଡକ୍ଟରେଟ କ'ଣ ମୋର ଥେସିସ ଉପରେ ? ଏହି ସମ୍ମାନ ପାଇଁ କ'ଣ ଯିବ କହିବା ପାଇଁ, ଅସମ୍ଭବ । ଗୋପୀବାବୁ ଆସିଲେ ନାହିଁ ।

'ପରଜା' ବହି ପ୍ରକାଶିତ ହେଲା । ଗୋପୀବାବୁ ଲେଖିଲେ ଆଦିବାସୀ ମାନଙ୍କର ଜୀବନକାହାଣୀ ଉପରେ । ସର୍ବେଶ୍ବର ଦାସ ଅଧ୍ୟାପକ ସବୁବେଳେ କହନ୍ତି, ପର୍ଲ ବକଙ୍କ 'ଗୁଡ଼ ଆର୍ଥ' ପାଇଁ ନୋବେଲ ପୁରସ୍କାର ପାଇଲା ତାହାହେଲେ ପରଜା କାହିଁକି ନୋବେଲ ପ୍ରାଇଜ୍ ପାଇବ ନାହିଁ ? କେବଳ ଗୋଟିଏ କାରଣରୁ । କାରଣ ଗୋପୀବାବୁ ଓଡ଼ିଆ । ଓଡ଼ିଶାରେ ଜନ୍ମ ହେବା ଏକ ଅଭିଶାପ ।

ଗୋପୀବାବୁ ଚାକିରି କରୁଥିଲେ । ଥିଲେ ଡେପୋଟି ମାଜିଷ୍ଟ୍ରେଟ । ସେଇଟା ଥିଲା ପେଶା । କିନ୍ତୁ ନିଶା ଥିଲା ଲେଖିବା । ଆଦିବାସୀମାନଙ୍କର ଯେଉଁ କାହାଣୀ ସେ ପରଜା ବା ଅମୃତର ସନ୍ତାନରେ ବର୍ଣ୍ଣନା କରି ଯାଇଛନ୍ତି, ଓଡ଼ିଆ ସାହିତ୍ୟରେ ତାହା ଅନବଦ୍ୟ, ଅତୁଳନୀୟ । ଫକୀର ମୋହନଙ୍କ ପରେ ଚରିତ୍ର ଚିତ୍ରଣରେ ସେ ହୋଇଛନ୍ତି ଅତୁଳନୀୟ । ଗୋପୀବାବୁ ଆଦିବାସୀ ଜୀବନ ଉପରେ ଜାଣିବାକୁ ଯାଇ ତାଙ୍କ ଭାଷା ଶିଖିଲେ । ତାଙ୍କରି ସାଙ୍ଗରେ ରହିଲେ । ତାଙ୍କୁ ଭେଟିବାର ସୁଯୋଗ ମିଳିଥିଲା କୋରାପୁଟରେ । ଗୋପୀବାବୁ ସରକାରୀ ଗସ୍ତରେ ଯାଇ ବୁଲନ୍ତି ଗାଁକୁ ଗାଁ, ପଲ୍ଲୀରୁ ପଲ୍ଲୀ । ଅନ୍ୟ ସରକାରୀ ଅଫିସରଙ୍କ ପରି ସେ ଗାଡ଼ିରେ ଯା'ନ୍ତି ନାହିଁ । ଗୋପୀବାବୁ ଅସାଧାରଣ । ତାଙ୍କୁ କେତେକ 'ପାଗଳ' କହନ୍ତି । ସେ ହସନ୍ତି ଏହି ଅଭିବ୍ୟକ୍ତିରେ ।

ଗୋପୀବାବୁଙ୍କର କାର୍ଯ୍ୟ ସରିଲା କୋରାପୁଟରେ । ଆସିଲେ ଭୁବନେଶ୍ବର ଚୋଳିମ ନଗରକୁ । ସବୁ ନିର୍ଭର କରିବ କ୍ୱାର୍ଟର୍ସ ଉପରେ, ଷ୍ଟାଟସ ଉପରେ ।

ଗୋପୀବାବୁ ଲେଖିଲେ 'ଦାନାପାଣି' । ଗୋପୀବାବୁ ଖାଲି ଆଦିବାସୀ ଜୀବନ ନୁହେଁ, କିରାଣୀ, ଅଫିସରମାନଙ୍କର ଜୀବନ ଉପରେ ଆଧାରିତ ଉପନ୍ୟାସ । ଓଡ଼ିଆ ସାହିତ୍ୟରେ ଅନନ୍ୟ ସାଧାରଣ ।

ବ୍ୟାଗ୍‌ଟିଏ କାନ୍ଧରେ ପକାଇ ବୁଲନ୍ତି । ଭୁବନେଶ୍ୱରରୁ କଟକ । ଜୀବନର ପ୍ରଥମ ପର୍ଯ୍ୟାୟରେ ଗୋପୀବାବୁ ସାମାଜିକ ବିଦ୍ରୋହର ପ୍ରବକ୍ତା ଥିଲେ । ପରବର୍ତ୍ତୀ ଜୀବନରେ ସେ ଲେଖିଲେ 'ଭୁଦାନ ଆନ୍ଦୋଳନ', ସର୍ବୋଦୟ ଆନ୍ଦୋଳନ ଉପରେ । 'ମାଟି ମଟାଳ' ବହି ତାଙ୍କର ପୁରସ୍କୃତ ହେଲା । ସେ ଜ୍ଞାନପୀଠ ପୁରସ୍କାର ପାଇଲେ । କିନ୍ତୁ ଅନେକଙ୍କ ମତରେ 'ପରଜା' ତାଙ୍କର ସର୍ବଶ୍ରେଷ୍ଠ କୃତି । କାରଣ ସମାଜର ସବୁଠାରୁ ତଳ ମଣିଷ ଉପରେ ଏଭଳି ସମ୍ବେଦନଶୀଳ ଲେଖା ଆଗରୁ କେହି ଲେଖି ନ ଥିଲେ ।

ସାହୁକାର ପାଇଁ କୌଣସି ଆଇନ୍ ନାହିଁ । କୌଣସି ସରକାର ନାହିଁ । ସବୁର ଊର୍ଦ୍ଧ୍ୱରେ ସାହୁକାର । ତାର ପ୍ରତିଷ୍ଠା, ତାର ପ୍ରତିପତ୍ତିକୁ ଚ୍ୟାଲେଞ୍ଜ କରିବା ପାଇଁ କୌଣସି ଶକ୍ତି ନାହିଁ । କେବଳ ପରଜାର ହତିଆର, ତା'ର କଟୁରି ହିଁ ଏକମାତ୍ର ଉତ୍ତର, ଏକମାତ୍ର ରକ୍ଷାକବଚ । ଆଉ ଉପାୟ ନାହିଁ । ଆଜି ମଧ୍ୟ ତାହା ସତ୍ୟ । ସେଇ ଯୋଗୁ ତ ବସ୍ତରଠାରୁ ୱାରଙ୍ଗଲ ପର୍ଯ୍ୟନ୍ତ ନକ୍ସାଲବାଦୀମାନଙ୍କର ସଜୁତି । ଗୋପୀବାବୁଙ୍କର ସ୍ୱପ୍ନ ଥିଲା ଯଦି କେବେ ସତ୍ୟଜିତ ରାୟଙ୍କ ପରି କେହି ତାଙ୍କ 'ପରଜା'ର ଚଳଚିତ୍ର କରିବାକୁ ସମ୍ମତି ଦିଅନ୍ତେ କି ? ତାହା ରହିଗଲା ଅପୂର୍ଣ୍ଣ । ସତ୍ୟଜିତ ରାୟଙ୍କ ଦୃଷ୍ଟିକୁ ତାହା କେହି ଆଣିଲେ ନାହିଁ ।

ଗୋପୀବାବୁଙ୍କ ଚିନ୍ତାଥିଲା ବିଚିତ୍ର । ସମାଜର ଏକ ଆମୂଳ ପରିବର୍ତ୍ତନ ଦରକାର ଏବଂ ସେଥିପାଇଁ ବାଟ କ'ଣ ? ବିପ୍ଳବ ନକ୍ସଲବାଦୀମାନଙ୍କ ଭଳି ନା ସର୍ବୋଦୟ ? ଗୋପୀବାବୁ ଖୋଜିଛନ୍ତି ପନ୍ଥା, ମୃତ୍ୟୁ ପର୍ଯ୍ୟନ୍ତ ।

ଯେଉଁ ମାଟିକୁ ସେ ଭଲ ପାଉଥିଲେ ସେ ମାଟିରେ ତାଙ୍କର ପରଲୋକ ହେଲା ନାହିଁ । ହେଲା ଦୂର ଦେଶରେ; କିନ୍ତୁ ଗୋପୀବାବୁ ଥିଲେ ଆନ୍ତର୍ଜାତିକ । ସମଗ୍ର ବିଶ୍ୱ ଥିଲା ତାଙ୍କର ପରିବାର । ବନ୍ଧୁ ପଦାରବିନ୍ଦ ମହାପାତ୍ରଙ୍କ ସ୍ମୃତିପତ୍ରରେ ବା ବନ୍ଧୁ ଅନନ୍ତ ପଟ୍ଟନାୟକଙ୍କ ସ୍ମୃତିପତ୍ରରେ ସେ ବାଢ଼ିଛନ୍ତି ଏଇ ଯୁକ୍ତି । ବ୍ୟକ୍ତି ରହିଯାଉଛି ପଛରେ, ନୀତି, ଜୀବନ ହୋଇଯାଉଛି ପ୍ରଧାନ । ସେଇ ଗୋପୀନାଥ ମହାନ୍ତି ଆଉ ନାହାନ୍ତି । ଓଡ଼ିଶାର ଇତିହାସରେ ବିଶେଷତଃ ସାହିତ୍ୟ ଜଗତରେ ଏକ ଅଧ୍ୟାୟର ସମାପ୍ତି ଘଟିଛି । ଗୋପୀବାବୁଙ୍କୁ ତଥାକଥିତ ସଭ୍ୟସମାଜ ଭୁଲି ଯାଇପାରେ; କିନ୍ତୁ ସେ ବଞ୍ଚି ରହିବେ ଅନନ୍ତ କାଳପାଇଁ ଆଦିବାସୀ ପଲ୍ଲୀରେ ।



# କେହି ରହିନାହାଁନ୍ତି ରହିବ ନାହିଁ ଜୀବନ ଭବରଙ୍ଗ ଭୂମି ତଳେ

କେହି ରହିବେ ନାହିଁ । ସମସ୍ତଙ୍କୁ ଯିବାକୁ ହେବ । ଆସିଲା ମୁହୂର୍ତ୍ତରେ ଯାହା କିଛି ଏକମାତ୍ର ସତ୍ୟ ଥାଏ, ତାହା ହେଉଛି ଯିବା । ଆସିଛ ମଧ୍ୟ ଏକାକୀ । କିନ୍ତୁ ଗୋପୀନାଥ ସାହୁ ବୈଜ୍ଞାନିକ, ସମାଜବାଦୀ ଏବଂ ପ୍ରାଣବନ୍ତ ପୁରୁଷର କ'ଣ ଯିବାର ବେଳ ଆସିଥିଲା ? ଜନ୍ମ ହୋଇଥିଲେ ଏକ ଧନୀ ବା ସ୍ୱଚ୍ଛଳ ପରିବାରରେ । କିନ୍ତୁ ସ୍ୱର ଭାଇଙ୍କ ଭିତରୁ ଅନ୍ତତଃ ତିନି ଭାଇ ବୈଦ୍ୟନାଥ, ଲୋକନାଥ ଓ ଗୋପୀନାଥ ପିଲା ଦିନରୁ ସମାଜବାଦୀ ହୋଇଯାଇଥିଲେ । ସେମାନଙ୍କ ଭିତରେ ସମାଜବାଦର ବାଟ ବା ଚରିତ୍ର ବିଷୟରେ ମତଭେଦ ଥିଲା । କିନ୍ତୁ ବୈଷମ୍ୟ ଉପରେ ପ୍ରତିଷ୍ଠିତ ସମାଜ ରହିବ ନାହିଁ ଏବଂ ରହିବା ଉଚିତ ନୁହେଁ, ଏଇ ଥିଲା ସେମାନଙ୍କର ବିଶ୍ୱାସ । ସେଥିରୁ ସେମାନେ ବିଚ୍ୟୁତ ହୋଇ ନାହାନ୍ତି ଯଦିଓ ରାଜନୀତି ସେମାନଙ୍କର ପେଷା ହୋଇ ନାହିଁ । ଗୋପୀନାଥ ପାଠ ପଢ଼ିଲେ । ହେଲେ ଉଦ୍ଭିଦବିଦ୍ ବୈଜ୍ଞାନିକ । କାମ କଲେ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ରରେ । ପ୍ରତିଷ୍ଠା ଲାଭ କଲେ । ସୃଜନଶୀଳ ଥିଲା ତାଙ୍କର ଗବେଷଣା । ଆପଣାର ପାଠ ବା ଗବେଷଣା ବନ୍ଧ୍ୟା ନୁହେଁ, ନିରୂପଣ ନୁହେଁ । ଏହାଥିଲା ତାଙ୍କର ବିଶ୍ୱାସ । ସେଇଯୋଗୁଁ ଲୋକଙ୍କର ସାଧାରଣ ମଣିଷର, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ ଧାନ ବା ଚାଉଳ, ତାଙ୍କର ହେଲା ଗବେଷଣାର ବସ୍ତୁ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ରହିଯାଇଥିଲେ ସେଇଥିରେ ନିମଜ୍ଜିତ ହୋଇ । ଗୋପୀନାଥଙ୍କ ଜୀବନ ଥିଲା ନିୟମିତ, ଶୃଙ୍ଖଳାରେ ବନ୍ଧା । ନଅଟା ବାଜିଲେ ସେ ଖାଇ ଶୋଇବାକୁ ଯିବେ । ସହକର୍ମୀମାନେ ଥଟ୍ଟା କରନ୍ତି । କ'ଣ ଗୋପୀନାଥ ଗାନ୍ଧୀ ହୋଇଯିବେ କି ? ସେ ମଧ୍ୟ ହସି ଦିଅନ୍ତି, କିନ୍ତୁ ନିଜର ବିଶ୍ୱାସ ଅନୁଯାୟୀ କାମ କରିଯାଆନ୍ତି । ଛାତ୍ର ଜୀବନରେ ସୋସାଲିଷ୍ଟ ପାର୍ଟିର ସଭ୍ୟ ଥିଲେ, ସକ୍ରିୟ କର୍ମୀ ଥିଲେ । କାମ କଲାବେଳେ କୌଣସି କାମକୁ ସେ ଏଡ଼ାଇ ଦେଇ ନାହାନ୍ତି, କୌଣସି କାମକୁ ଶ୍ରେଷ୍ଠ ବୋଲି ଭାବି ନାହାନ୍ତି । ସେଥିପାଇଁ ସେ ଅନେକବାର କୌତୁକର ଶିକାର ହୋଇଛନ୍ତି । କିଏ ଗୋପୀନାଥ, ତୁମେ କଣ ଏଗ୍ରିଗ୍ଣ ବସ୍ତୁ ? ତମେ କଣ ନେତା ନୁହଁ ? ଗୋପୀନାଥ ହସି ଦେଇଛନ୍ତି । କିନ୍ତୁ ସେମିତି ଅନମନୀୟ ହୋଇ ରହିଯାଇଛନ୍ତି । ନିରଳସ ଏବଂ କର୍ମଠ । ଗୋପୀନାଥ ନିରଳସ ଏବଂ କର୍ମଠ ଖାଲି

କଥାରେ ନଥିଲେ, କୌଣସି ବଦଭ୍ୟାସ ତାଙ୍କର ନଥିଲା । ଜୀବନ ଥିଲା ନିୟମିତ, ଶୃଙ୍ଖଳିତ । ଲକ୍ଷ୍ୟ ଥିଲା ସୁଦୂରପ୍ରସାରୀ । ତେଣୁ ତାଙ୍କୁ ଇମିତି ଅବେଳରେ ଡାକରା ପଡ଼ିବ ବୋଲି କିଏ ଭାବିଥିଲା ? କିନ୍ତୁ ଜୀବନ ଏବଂ ମୃତ୍ୟୁର ନିୟମତ ସେସବୁକୁ ମାନେ ନାହିଁ । ତାର ନିୟମ ସ୍ୱତନ୍ତ୍ର । ତେଣୁ ଗୋପୀନାଥଙ୍କୁ ଯିବାକୁ ହେଲା । ପଛରେ ସବୁ ରହିଗଲା । ସ୍ତ୍ରୀ, ପୁଅ,ଝିଅ, ଜ୍ୱାଇଁ, ଗବେଷଣା, ବିଜ୍ଞାନ, ଶୃଙ୍ଖଳିତ ଜୀବନ । ଛାଡ଼ିଗଲେ, ଆପଣାର ସମ ଜନସେବୀ ଧର୍ମପତ୍ନୀଙ୍କୁ, ଜୀବନର ଭୂମିକା ଗ୍ରହଣ କରିବା ପାଇଁ, ଅସମ୍ପୂର୍ଣ୍ଣ କାର୍ଯ୍ୟର ସମାପ୍ତି ପାଇଁ । ରାଜା ସେଦିନ ପଚାରିଥିଲେ, ପଣ୍ଡିତ ମହାଶୟ, ଆପଣ ତ ସର୍ବଜ୍ଞାନସମ୍ପନ୍ନ । କହି ପାରିବେ, କାହିଁକି ସ୍ତ୍ରୀ ଆଗରେ ସ୍ୱାମୀର ମୃତ୍ୟୁ ହୁଏ ? ପଣ୍ଡିତ ମହାଶୟ କହିଲେ ଯେ ରାଜନ୍, ସେ ପ୍ରଶ୍ନ ତ ଅନନ୍ତ, ସେ ପ୍ରଶ୍ନର ଉତ୍ତର ତ ମିଳି ନାହିଁ ।ଏଇ ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ ତ ଗୌତମ ପାଲଟିଗଲେ ବୁଦ୍ଧ । କୋହର ଜୁଆର, ପତ୍ନୀର କାନ୍ଦଣା, ଝିଅମାନଙ୍କର ଲୁହର ଧାର, ବନ୍ଧୁମାନଙ୍କର ଆହା, ଅଶ୍ରୁଳ ଆଖିସବୁ ଭିତରେ ଗୋପୀନାଥ ଚାଲିଲେ ବହୁଦୂର, ବହୁତ ବାଟ । ଗୋପୀନାଥ ଆଉ ଫେରିବେ ନାହିଁ । କିନ୍ତୁ ତାଙ୍କ ପାଦ ଚିହ୍ନ ଉଜ୍ଜ୍ୱଳ ରହିବ ବହୁକାଳ ଧରି । ସେ ସ୍ମୃତ ହୋଇ ରହିବେ ଅଗଣିତ ବନ୍ଧୁ, ସହକର୍ମୀ, ସହଯୋଗୀ ମାନଙ୍କ ଭିତରେ । ଆଉ ସେଇତ ତାଙ୍କ ଜୀବନର ସାର୍ଥକତା । ଆଜିଠାରୁ ବହୁବର୍ଷ ପରେ ମଧ୍ୟ ଆମର ଉତ୍ତର ପୁରୁଷମାନେ ହେଜିବେ । ପୂର୍ବସୂରୀ ଗୋପୀନାଥ ପବନରେ ହଜିଯାଇଥିବା ବଇଁଶୀର ସ୍ୱନ ପରି । ତାହାର ପ୍ରତିଧ୍ୱନି ଶୁଭୁଥିବ ମହାକାଳ ବକ୍ଷରେ ।



# ସ୍ମୃତିଚାରଣ

ସେତେବେଳେ ଆକାଶରେ ଆଲୁଅ ଥିଲା ନା ଅନ୍ଧାର ଥିଲା ତାହା କହିବା କଠିନ । ଗୋଟାଏ ନାଟ୍ୟକାର ହାସ୍ମୀକୁ ସ୍ୱପ୍ନରେ ପିଟି ପିଟି ମାରିଦେଲା ପରେ ଐତିହାସିକ ମନ୍ମଥନାଥ ଦାସ, ଲେଖକ ଗୋପୀନାଥ ମହାନ୍ତିଙ୍କ ଭଳି ଲୋକ ମଧ୍ୟ କହିଲେ ଯେ ସେଦିନ ଭାରତ ପରାଧୀନ ଥିଲା ସତ, କିନ୍ତୁ ଇମିତି ଅନ୍ଧାର ନଥିଲା ।

କାହିଁକି ? ସେତେବେଳେ ଅନ୍ଧାର ଯେମିତି ଥିଲା, ଦହୁଡ଼ି ଧରିବା ଲୋକ ବି ସେମିତି ଥିଲେ । ଅହଂ, ଆତ୍ମସର୍ବସ୍ୱରେ ସମାଜ ବୁଡ଼ିଯାଇ ନଥିଲା । ନିଜେ ଜଳି ଅନ୍ୟଙ୍କୁ ଆଲୁଅ ଦେବା ପାଇଁ ତହୁଁ ବଡ଼ା ତହୁଁ ବଡ଼ା ଲୋକଥିଲେ । ଆଉଁସିଆ ଅନ୍ଧକାର ଭିତରେ ସେମାନେ ଜଳି ଆମକୁ ଆଲୁଅ ଦେଖାଇଲେ ବୋଲି ଆଜି ଭାରତ ସ୍ୱାଧୀନ ହୋଇଛି ବୋଲି ଆମେ କହିପାରୁଛୁ ।

ଏହି ଦହୁଡ଼ିଧାରୀଙ୍କ ଭିତରେ ଥିଲେ ଗୌରାଙ୍ଗ ଦାସ । ହାତ ଖଣ୍ଡି ଗୌରାଙ୍ଗ ଦାସ ନାମରେ ସେ ପରିଚିତ ଥିଲେ । ହାତ ଗୋଟାଏ ନଥିଲା କିନ୍ତୁ ଦେହରେ ଶକ୍ତିଥିଲା ପ୍ରଚୁର । ଗୋଟାଏ ହାତରେ ସେ ସବୁ କରି ପାରୁଥିଲେ । ଏପରିକି ଲାଠିଚଲାଇ ପାରୁଥିଲେ । ମୁଁ ତାଙ୍କୁ ଦେଖିଛି ଗୋଟାଏ ହାତରେ ସାଇକେଲ ଚଲାଇ ଯିବା କଟକ ସହରର ଗଳିକନ୍ଦି ଭିତରେ । ଶାରୀରିକ ଅକ୍ଷମତା ତାଙ୍କର ମାନସପଟକୁ ଛାପକରି ପାରିନଥିଲା । ସେ ଥିଲେ ବପୁବନ୍ତ ଯୋଦ୍ଧା, କଠୋର ସଂଗ୍ରାମୀ ।

ବରଡ଼ି ହାଟ, ଲବଣ ସତ୍ୟାଗ୍ରହ ସେସବୁ କଥା କହିବ । କିନ୍ତୁ ସେ ତ ଆଜି ନାହାନ୍ତି । ଯେଉଁ ମୂଲ୍ୟବୋଧ ପାଇଁ ସେ ଜୀବନ ଉଜାଡ଼ି ଦେଲେ ସେ ମୂଲ୍ୟବୋଧତ ଲୋପପାଇ ଗଲାଣି । ଆମେ ଦେଶର ସ୍ୱାଧୀନତା ନାମରେ ଯେଉଁ ଗର୍ବ କରୁଛୁ ଗୌରାଙ୍ଗବାବୁ କଣ ସେଇ ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ କରିଥିଲେ ?

ଏଇ ମୂଲ୍ୟବୋଧ ପାଇଁ ତ ସେକାଳରେ ସବୁ ମତଭେଦ-କଂଗ୍ରେସ, ସୋସାଲିଷ୍ଟ କମ୍ୟୁନିଷ୍ଟ । କିନ୍ତୁ ସମସ୍ତେ ସ୍ୱୀକାର କରନ୍ତି ଯେ ମତାନ୍ତର ଥିଲା, କିନ୍ତୁ ମନାନ୍ତର ନଥିଲା । ମନାନ୍ତର ହେବାର କୌଣସି ଅବକାଶ ମଧ୍ୟ ନଥିଲା । କାରଣ ଦେଶର ସ୍ୱାଧୀନତା ତ ସମସ୍ତେ ଚାହୁଁଥିଲେ । ସେଥିପାଇଁ ବଳିଦାନ ବା ତ୍ୟାଗର ଅଭାବ ନଥିଲା, ମତଭେଦ ନଥିଲା । କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ ସମାଜ କେମିତି ହେବ, ସେଥିପାଇଁ ମତଭେଦ ଥିଲା ପ୍ରଚୁର ।

ଗୌରୀ ରାଇ ନାମରେ ବହୁତ ଏଇ ସ୍ୱାଧୀନତା ସଂଗ୍ରାମୀଙ୍କ ସମ୍ପର୍କରେ କିନ୍ତୁ ସମସ୍ତେ କହିଛନ୍ତି ଯେ ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ନଥିଲା । ପରନ୍ତୁ ଉଦାର ମାନବିକତାରେ ସେ ଉଦ୍‌ବୁଦ୍ଧ ଥିଲେ । ଦେଶପ୍ରେମ ଥିଲା ପ୍ରଚଣ୍ଡ ଦାବାଗ୍ନି ଭଳି । କୌଣସି କଷ୍ଟକୁ ସେ ଏଥିପାଇଁ ଖାତିର କରିନାହାନ୍ତି । ମତଭେଦ ତାଙ୍କର ବ୍ୟକ୍ତିଗତ ସମ୍ପର୍କକୁ କଦାପି କ୍ଷୁଣ୍ଣ କରିନାହିଁ, ମଳିନ କରିନାହିଁ ।

ସେମିତି ଲୋକ ଆଉ ମିଳିବେ ନାହିଁ । ସେମାନେ ବିରଳ ହୋଇଗଲେଣି । କିନ୍ତୁ ସେମାନେ ସବୁ ମଣିଷର ଦାନ୍ତଭଳି । ଦାନ୍ତ ଗଲାପରେ ତାର ମହତ୍ତ୍ୱ ବେଶୀ ଜଣାପଡ଼େ । ସେତେବେଳକୁ ଦାନ୍ତ ଆଉ ନଥାଏ । ଗୌରୀ ରାଇ ସେଇପରି ଜଣେ ଲୋକ । ଲେଖିଲାବେଳେ ଛବି ଆଙ୍କି ହୋଇଯାଉଛି ମାନସପଟରେ । ଜିଲ୍ଲାପରିଷଦ ଅଫିସରୁ କେତେବେଳେ ଜିପ୍‌ରେ, କେତେବେଳେ ସାଇକେଲରେ ତାଙ୍କର ପରିଚିତ ଛବି କଟକ ସହରର ରାସ୍ତାରେ ଆଜି ଆଙ୍କି ହୋଇଯାଏ, ତାଜା ଫୁଲପରି ।

ଗୌରାଙ୍ଗବାବୁ ନାହାନ୍ତି । କେହି ରହିବେ ନାହିଁ । କିନ୍ତୁ ଯିଏ ଆପଣାର ପଦଚିହ୍ନ ଛାଡ଼ିଯାଏ ଉତ୍ତର ପୁରୁଷ ପାଇଁ, ସେଇତ ସାର୍ଥକ ଜୀବନ । ଗୌରାଙ୍ଗବାବୁ ବାହୁଡ଼ିଲା ପରେ ପ୍ରତିବର୍ଷ ତାଙ୍କ ପାଇଁ ସ୍ମରଣିକା ପ୍ରକାଶ ପାଉଛି, ତାଙ୍କର ସହକର୍ମୀ, ସହଯୋଦ୍ଧାମାନେ ସ୍ମୃତି ପଖାଳୁଛନ୍ତି, ସେଇତ ତାଙ୍କ ଜୀବନର ସାର୍ଥକତା । ତାଙ୍କ ସହିତ ଯେଉଁମାନେ ଏକମତ ହୋଇଛନ୍ତି ସେମାନେ ଯେପରି ସ୍ମୃତିପଖାଳିଛନ୍ତି, ଯେଉଁମାନେ ତାଙ୍କ ସହିତ ଜୀବନାଦର୍ଶରେ ଏକମତ ହୋଇନାହାନ୍ତି, ସେମାନେ ମଧ୍ୟ ସେଇପରି ସ୍ମୃତି ପଖାଳିଛନ୍ତି । ଏଇଥିରୁ ଗୌରାଙ୍ଗ ଦାସଙ୍କର ମହନୀୟତାର ପରିଚୟ ମିଳେ ।

ଦେଶର ଏକ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ଆବଶ୍ୟକତା ଉପଲବ୍‌ଧି ହେଲାଣି । ରାଜନୈତିକ ସ୍ୱାଧୀନତା କୁଳାନ ନୁହେଁ । ଅର୍ଥନୈତିକ ସ୍ୱାଧୀନତା ସର୍ବୋପରି ମାନସିକ ମୁକ୍ତିର ଆବଶ୍ୟକତା ପ୍ରତୀତ । ଏତେବେଳେ ସେମାନେ ମନେପଡ଼ନ୍ତି । ସେମାନେ ଥିଲେ ପୁଣିଥରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ବାହାରନ୍ତେଣି ।

କିନ୍ତୁ ସେ ଆଉ ନାହାନ୍ତି ।



# ଅଭୁଲା ସ୍ମୃତି

ଆମେ ସବୁ ଯାଉଥାଉଁ ଷଷ୍ଠ ବିଶ୍ୱ ଯୁବ ଉତ୍ସବକୁ । ଦଳମତ ଗୋଷ୍ଠୀ ନିର୍ବିଶେଷରେ ପାଞ୍ଚ ଶହରୁ ଊର୍ଦ୍ଧ୍ୱ ଯୁବକ ଯୁବତୀ । ଆମେ ଦଳେ ରହୁଥାଉଁ ସାଉଥ୍ ଆଭିନ୍ୟୁରେ ଏକ ପାର୍ଲାମେଣ୍ଟ ସଭ୍ୟଙ୍କ ଘରେ ।

ଆମ ସାଙ୍ଗରେ ଥାଆନ୍ତି ଜଣେ ବ୍ୟକ୍ତି । ତରୁଣ ନୁହନ୍ତି, କିନ୍ତୁ ପୌଢ଼ତ୍ୱ ଛୁଇଁ ନାହିଁ । ତାଙ୍କର ପୁରା ନାମ ମଧ୍ୟ ମୋର ଆଉ ମନେ ପଡ଼ୁନାହିଁ । ଜବାହରଲାଲ ଯେତେବେଳେ ଷ୍ଟେଟ୍ସ୍ ପିପୁଲ୍ସ କନ୍ଫରେନ୍ସର ସଭାପତି ଥିଲେ ସେତେବେଳେ ସେ ଥିଲେ ତାଙ୍କର ସେକ୍ରେଟାରୀ । ସେତେବେଳେ କଂଗ୍ରେସ,ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନେ ଏକାଠି କାମ କରୁଥିଲେ ସାମୂହିକ ଲକ୍ଷ୍ୟରେ । ଜବାହରଲାଲ ଯେତେବେଳେ କଂଗ୍ରେସ କମିଟିର ବୈଦେଶିକ ବିଭାଗ ବିଷୟ ବୁଝୁଥିଲେ ସେତେବେଳେ ତାଙ୍କର ତିନିଜଣ ସେକ୍ରେଟାରୀ ଥିଲେ । ଜଣେ ହେଲେ ଡକ୍ଟର ରାମ ମନୋହର ଲୋହିଆ, ଜଣେ ହେଲେ ଡକ୍ଟର ଜେଡ୍. ଏ. ଅହମ୍ମଦ (ବର୍ତ୍ତମାନ କମ୍ୟୁନିଷ୍ଟ ପାର୍ଟିର ଜଣେ ମୁଖ୍ୟ ନେତା) ଏବଂ ଡକ୍ଟର ଏମ୍. ଏ. ଆସ୍‌ରଫ । ଆସ୍‌ରଫ ବି ଜଣେ କମ୍ୟୁନିଷ୍ଟ ପାର୍ଟିର ନେତା ଥିଲେ ଏବଂ ପରେ ଜର୍ମାନୀରେ ତାଙ୍କର ପରଲୋକ ହୋଇଗଲା । ତାଙ୍କର ସ୍ତ୍ରୀ ଏବେ ଜୀବିତ ଅଛନ୍ତି କି ନାହିଁ ମୁଁ ଜାଣିନାହିଁ । କିନ୍ତୁ ଆସ୍‌ରଫ ଜର୍ମାନୀ ଚାଲିଗଲା ପରେ ଜବାହରଲାଲ ଆସ୍‌ରଫଙ୍କର ସ୍ତ୍ରୀଙ୍କୁ ତାଙ୍କ ଆନନ୍ଦ ଭବନରେ ଥିବା ବାଲ ଭବନର ଦାୟିତ୍ୱ ଦେଇଥିଲେ । ଯଦିଓ ଆସ୍‌ରଫ ଥିଲେ ଜବାହରଲାଲଙ୍କର ରାଜନୈତିକ ବିରୋଧୀ ।

ଠିକ୍ ସେଇପରି ଜବାହରଲାଲଙ୍କ ସେକ୍ରେଟାରୀ ଥିଲେ ଏଇ ବ୍ୟକ୍ତି, ଯେ ପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଷ୍ଟେଟ ପିପୁଲ୍ସ କନ୍ଫରେନ୍ସରେ ଆପଣାର କାର୍ଯ୍ୟ ସମାପ୍ତ କରି ସେ ଫେରିଲେ ଭୋପାଳକୁ । ତାହାର ବାସିନ୍ଦା ଥିଲେ ସେ । ଆସିଲାବେଳେ ଜବାହରଲାଲ ତାଙ୍କୁ କହିଥିଲେ ଯେ ଦିଲ୍ଲୀ ଆସିଲେ ତାଙ୍କୁ ଭେଟିବା ପାଇଁ ଏବଂ ସାହାଯ୍ୟ ଦରକାର ହେଲେ ତାଙ୍କୁ ଲୋଡ଼ିବା ପାଇଁ ।

କିନ୍ତୁ ସେଥିପାଇଁ ସେ ସମୟ ପାଇନଥିଲେ । ଉନ୍ନତ, ଦୀର୍ଘକାୟ ମୁସଲମାନ । ଡେଙ୍ଗା ତାଳଗଛ ପରି । ସ୍ୱର୍ଗ ଯିବେ ପଛେ ନଇଁବେ ନାହିଁ । କୁଆଡ଼େ ଜବାହରଲାଲ ଭାରତର ପ୍ରଧାନମନ୍ତ୍ରୀ, ଆଉ କୁଆଡ଼େ ସେ କମ୍ୟୁନିଷ୍ଟ ପାର୍ଟିର ହୋଲ୍ ଟାଇମର । ସମସ୍ତ ଅତିକ୍ରାନ୍ତ ହେବାକୁ ଲାଗିଲା ।

ସେ କର୍ମୀଜଣକ ରାଜଯକ୍ଷ୍ମାରେ ପୀଡ଼ିତ ହେଲେ । ସେ ଦରଖାସ୍ତ କଲେ ପାସପୋର୍ଟ ପାଇଁ । ଚୀନ୍ ଯିବେ ଚିକିତ୍ସା ପାଇଁ । ତାଙ୍କ ବିରୁଦ୍ଧରେ ବହୁତ ପୁଲିସ ରିପୋର୍ଟ । ତାଙ୍କୁ ପାସପୋର୍ଟ ମନାହୋଇଗଲା । ଜବାହରଲାଲଙ୍କର ବୈଦେଶିକ ଦପ୍ତର ମନାକଲା । ସେ ଦିଲ୍ଲୀ ଆସିଥିଲେ ଆମ ସାଙ୍ଗରେ । ଇଚ୍ଛା ଥିଲା ଚିକିତ୍ସା ପାଇଁ ଯିବେ ଚୀନ୍ । ଜୀବନ ଆଉ କିଛିକାଳ ଲମ୍ବି ଯିବ ।

କିନ୍ତୁ ବୋଧହୁଏ ତା ହୋଇପାରିବ ନାହିଁ । ସେ ଫେରିବେ ଭୋପାଳ, ମୃତ୍ୟୁକୁ ଅପେକ୍ଷା କରିବାପାଇଁ । ଆଉ ଅମେ ସବୁ ଯିବୁ ମସ୍କୋ, ଆନନ୍ଦ ଉତ୍ସବ ପାଇଁ । ଆମେ ଦଳେ ଫେରୁଥିଲୁ । ସାଉଥ୍ ଆଭେନ୍ୟୁ ରାସ୍ତାରେ । ଆଜିକାଲି ସେ ବାଟରେ ଠିଆ ହୋଇଥିଲେ ବା ଯାଉଥିଲେ ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ବା ବଡ଼ମନ୍ତ୍ରୀ ଗଲାବେଳେ ରାସ୍ତାରୁ ହଟି ଗଳି ଭିତରକୁ ପଶିବାକୁ ହୁକୁମ ହୁଏ । ନିରାପତ୍ତା ।

ଜବାହରଲାଲ ପୋଲିସ ବନ୍ଦୋବସ୍ତର ବିରୋଧୀ ଥିଲେ । ସେଇଟା ଥିଲା ତାଙ୍କର ଆଲର୍ଜି । ତେଣୁ ସେ ଗଲାବେଳେ ବାଟରେ କାଁ ଭାଁ ପୋଲିସ ଠିଆହେବା ଛଡ଼ା ସାଦା ପୋଷାକଧାରୀମାନଙ୍କୁ ବେଶି ମୁତୟନ କରାଯାଏ । ସେଇଯୋଗୁଁ ସାଉଥ୍ ଆଭେନ୍ୟୁରେ ଥିବା ଗଛମାନଙ୍କର ଛାଇରେ ହଠାତ୍ ପାନବାଲା, ଯୋତା ପଲିସବାଲା, ଚେନାଚୁରବାଲା ଇତ୍ୟାଦିଙ୍କର ଠିଆହେବା ଦେଖିଲେ ଇଙ୍ଗିତ ମିଳେ ଯେ ଜବାହରଲାଲଙ୍କର ଯିବା ଆସିବା ବେଳ ।

ହଠାତ୍ ଏଇମାନଙ୍କର ଆବିର୍ଭାବ ଦେଖି ଏବଂ ପ୍ରଥମେ ଏକ ପୁଲିସ ପାଇଲଟ ଗାଡ଼ି ଦେଖି ଆମେ ମୁଖ୍ୟ ରାସ୍ତାରୁ କରେଇ ହୋଇ ଚାଲିଲୁ ରାସ୍ତା କଡ଼ରେ । ଆମେ ଦଳେ ଯୁବକ ଯୁବତୀ । ଆଗରେ ସେଇ ପଞ୍ଚହତା ଦୁର୍ଦ୍ଧର୍ଷ ପଠାଣ । ଯା' ମନ ତାର ତା'ର ଆଖି ପଡ଼ିବ ତା ଉପରେ ।

ହଠାତ୍ ଏକ ବିରାଟ ଶବ୍ଦ କରି ଏକ ଗାଡ଼ି ଆଗରେ ଠିଆହୋଇଗଲା । ଆମେ ସବୁ ଚକିତ ହୋଇଗଲୁ । ସେ ଭାବ ନ କାଟୁଣୁ ଦେଖାଗଲା ଚିତ୍କାର କରୁଥିବା ଜବାହରଲାଲ ଗାଡ଼ିରୁ ଡେଇଁ ପଡ଼ୁଛନ୍ତି ଏବଂ ଉକ୍ତ ଭଦ୍ରଲୋକଙ୍କର କଲାର ଧରି ଟାଣୁଛନ୍ତି ଗାଡ଼ିକୁ ।

ପରିସ୍ଥିତି ବଦଳିଗଲା । ବେଶ, ରୂପ ବଦଳିଗଲା ଚେନାଚୁରବାଲା, ଯୋତା ପଲିସବାଲାମାନଙ୍କର । ସ୍ବରପଟରେ କର୍ତ୍ତନ, ହୁଇସିଲ । ପ୍ରଧାନମନ୍ତ୍ରୀଙ୍କୁ କ'ଣ କେହି ଆକ୍ରମଣ କଲା ? ପ୍ରଧାନମନ୍ତ୍ରୀ କ'ଣ କୌଣସି ଚୋର ବା ଡକାୟତକୁ ଧରିଛନ୍ତି ?

ଜବାହରଲାଲ ତାଙ୍କ ସାଙ୍ଗମାନଙ୍କ ସହ ଭଲଗାର ଭାଷାରେ କଥାବାର୍ତ୍ତା କରନ୍ତି । ତାଙ୍କୁ ପଚାରିଲେ—ଆରେ ଶଳା, ତୋର ଦେହର ଅବସ୍ଥା ଇଏ କ'ଣ ?

ତୋତେ ପରା କହୁଥିଲି ଦିଲ୍ଲୀ ଆସିଲେ ମୋତେ ଭେଟିବୁ, ମୋ ଘରେ ରହିବୁ । ଚାଲ ମୋ ସାଙ୍ଗରେ ।

ସେ ଯିବାକୁ ନାରାଜ । କିନ୍ତୁ ଜବାହରଲାଲ ତାଙ୍କୁ ଭିଡ଼ି ଭିଡ଼ି ନେଇଗଲେ ଗାଡ଼ିକୁ । ଗାଡ଼ି ଆମ ଆଖି ଆଗରେ ତ୍ରିମୂର୍ତ୍ତି ଭବନର ଗେଟ୍ ଟପି ଭିତରକୁ ଚାଲିଗଲା ।

ଆଉ ତା'ପରେ ? ଦେଖ ମଜା । ଏକ ପ୍ୟାଣ୍ଟଲୁନ, ଫତେଇ ପିନ୍ଧିଥିବା ଏକ ଅଜଣା ଅଶୁଣା ବ୍ୟକ୍ତିକୁ ନେଇ ଜବାହରଲାଲ ଚାଲିଲେ ବେଡ୍ ରୁମ୍‌କୁ । ଇଏ କିଏ ? କିନ୍ତୁ ଜବାହରଲାଲଙ୍କୁ ପଚାରିବ କିଏ ? ପ୍ରୋଟକଲ ଇନ୍ଦିରା ଗାନ୍ଧିଙ୍କୁ ଧରିଲେ । ସେ ବି ଜାଣିନାହାନ୍ତି । କିଏ ବାପାଙ୍କର ସାଙ୍ଗ ହୋଇଥିବ । କିନ୍ତୁ ପଚାରିବ କିଏ ?

ଜବାହରଲାଲଙ୍କ ସାଙ୍ଗରେ ସେ ମଧ୍ୟାହ୍ନ ଭୋଜନ କଲେ । ପ୍ରଧାନମନ୍ତ୍ରୀଙ୍କ ସହ ମଧ୍ୟାହ୍ନ ଭୋଜନ ତ ଏକ ସମ୍ବାଦ । କିନ୍ତୁ ତଥାପି ନାଁ ଜଣାପଡ଼ୁନାହିଁ । ଜବାହରଲାଲ ଆପଣାର ଉପରବେଳାର ସବୁ କାର୍ଯ୍ୟକ୍ରମ ବାତିଲ କରିଦେଲେ ବନ୍ଧୁ ଗହଣରେ ରହିବାପାଇଁ । ଆଉର ସମସ୍ୟା । ପ୍ରେସବାଲା ଧାଇଁଲେ । କାହିଁକି ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟକ୍ରମ ବାତିଲ ହେଲା ?

ଜବାହରଲାଲ ଖାଇପିଇ ସାରି ବନ୍ଧୁଙ୍କ ଗହଣରେ ବସିଲେ ଏକ ସିଗାରେଟ ଲଗାଇ । (ଜବାହରଲାଲ ବ୍ରିଟିଶ ସିଗାରେଟର ଚେନ୍ ସ୍ମୋକର ଥିଲେ) ପଚାରିଲେ ବନ୍ଧୁଙ୍କୁ ଦେହର ଅବସ୍ଥା । ସେ କହିଲେ ଯେ ତାଙ୍କୁ ରାଜଯକ୍ଷ୍ମା ହୋଇଛି । ଉଦ୍‌ବିଗ୍ନ ଜବାହରଲାଲ ଚିକିତ୍ସା ବିଷୟରେ ପଚାରିଲେ ତାଙ୍କୁ । ସେ କହିଲେ ଯେ ତାଙ୍କର ଚୀନ୍ ଯିବାର କଥା । କିନ୍ତୁ ଆଜି ତାଙ୍କୁ ପାସପୋର୍ଟ ମନାହୋଇଛି ।

ଉତ୍‌କ୍ଷିପ୍ତ ଜବାହରଲାଲ ପ୍ରଶ୍ନ କଲେ, କିଏ ପାସପୋର୍ଟ ମନା କଲା ? ସେ ଭଦ୍ରଲୋକ ଉତ୍ତର ଦେଲେ, ଭାରତ ସରକାରଙ୍କର ବୈଦେଶିକ ବିଭାଗ । କ'ଣ ? ମୋତେ କହିଲ ନାହିଁ । ସେ ଉତ୍ତର ଦେଲେ । ଭାରତର ସବୁ ନାଗରିକଙ୍କର ମୌଳିକ ଅଧିକାର ପାଇବାପାଇଁ ପ୍ରଧାନମନ୍ତ୍ରୀଙ୍କ ସହ ପରିଚୟ ନାହିଁ । ଉନ୍ନତ ମସ୍ତିଷ୍କ ଯୁବକର ଉତ୍ତର ।

ଜବାହରଲାଲ ବୋତାମ ଟିପିଲେ । ଆଦେଶ ହେଲା ତୁରନ୍ତ ପାସପୋର୍ଟ ସେଇଠିକି ପଠାଇ ଦେବାପାଇଁ । ବର୍ତ୍ତମାନ ନାମ ଜଣାପଡ଼ିଲା । ଜବାହରଲାଲ ତାଙ୍କୁ ସେଇ ରାତରେ ଚୀନ୍ ଯିବାର ଆୟୋଜନ କରିଦେଲେ । ତା'ପରେ ସେ ବନ୍ଧୁଙ୍କର ଡ୍ରେସକୁ ଅନାଇ କହିଲେ, କିନ୍ତୁ ତୋର ଡ୍ରେସ କାହିଁ ? ଏଇ ଡ୍ରେସ ଚଳିବ ।

ଚୀନ୍ ଏକ ସଙ୍କଟପୂର୍ଣ୍ଣ ଦେଶ । ତେଣୁ.... କଥା ସରନାହିଁ ଜବାହରଲାଲ ଚିତ୍କାର କରି ଉଠିଲେ । ଆବେ ଚୁପ୍ । ତୋତେ ଚୀନ୍‌ରେ ଚିହ୍ନେ କିଏ ? ଚୀନ୍‌ରେ କେବଳ ଜବାହରଲାଲ ନେହେରୁଙ୍କୁ ଜାଣନ୍ତି । ଆଉ ତୋର ଏଇ ଡ୍ରେସ ଦେଖି ସେମାନେ କହିବେ ଯେ ଜବାହରଲାଲ ନେହେରୁର ହିନ୍ଦୁସ୍ଥାନରୁ ଏକ ନଙ୍ଗା ଫକୀର ଆସିଛି । ଅସମ୍ଭବ, ଚାଲ, ଡ୍ରେସ ବଦଳାଅ ହେବ । ଜବାହରଲାଲଙ୍କର ଦର୍ଜିକୁ ଡକାହେଲା ପୁରୁଣା ଦିଲ୍ଲୀରୁ । ତତ୍‌କ୍ଷଣାତ୍ ଡ୍ରେସ ବଦଳାଅ ହେଲା ।

ବର୍ତ୍ତମାନ ଉଠିଲା ସବୁଠାରୁ ବଡ଼ ସମସ୍ୟା ଜବାହରଲାଲ କହିଲେ ଯେ ଯିବେ ଛାଡ଼ିବାକୁ ତାଙ୍କ ସାଙ୍ଗକୁ ଏୟାର ପୋର୍ଟରେ । ମହା ସମସ୍ୟା । ପ୍ରୋଟୋକୋଲ ଗଣ୍ଡଗୋଳ ହୋଇଯିବ । କେତେ ଲୋକ ତା'ପରେ ଭାବିବେ ଯେ ଜବାହରଲାଲ ତାଙ୍କୁ ଛାଡ଼ିବାକୁ ଚାଲନ୍ତି ଏୟାର ପୋର୍ଟକୁ । ପ୍ରୋଟୋକୋଲ ବାଲା ଯାଇ ଧରିଲେ ତାଙ୍କୁ । ଦେଖନ୍ତୁ, ଆମେ ମନାକଲେ ସେ ମାନିବେ ନାହିଁ । ଆପଣ ମନାକରନ୍ତୁ । ସେ ଜବାହରଲାଲଙ୍କୁ କହିଲେ ଯେ ଏତେ ସମୟରେ ତାଙ୍କର ଏୟାର ପୋର୍ଟକୁ ଯିବା ଦରକାର ନାହିଁ । ଜବାହରଲାଲ ନଛୋଡ଼ବନ୍ଧା । ସେ କହିଲେ ଯେ ମୁଁ ଠିକ୍ ଜାଣିଛି ଯେ ପ୍ରୋଟୋକୋଲ ତୋର ପିଛା ଧରିଛି । ତୁ ତାଙ୍କୁ କହିଦେ । ମୁଁ ପ୍ରଧାନମନ୍ତ୍ରୀ ହେଲି ବୋଲି ମୋର କଣ ମନୁଷ୍ୟତ୍ୱ ଲୋପ ପାଇଗଲା ? ମୁଁ କଣ ମୋର ବନ୍ଧୁଙ୍କୁ ଛାଡ଼ିବାକୁ ଯାଇପାରିବି ନାହିଁ ଏୟାର ପୋର୍ଟକୁ । ମାର ଗୁଲି, ସେ ପ୍ରୋଟୋକୋଲକୁ ।

ବହୁତ ବାକ୍ ବିତଣ୍ଡା ପରେ ଜବାହରଲାଲ ରାଜି ହେଲେ, ତାଙ୍କୁ ଛାଡ଼ିବାକୁ ଜବାହରଲାଲଙ୍କ ଗାଡ଼ିରେ ଯିବେ ଏୟାର ପୋର୍ଟକୁ ଇନ୍ଦିରା ଗାନ୍ଧି । ଆଉ ଜବାହରଲାଲ ତାଙ୍କୁ ବିଦାୟ ଦେବାକୁ ଯିବେ ତିନମୂର୍ତ୍ତି ଗେଟ୍ ପର୍ଯ୍ୟନ୍ତ ।

ସେ ଦୃଶ୍ୟ ମୋର ମନେଅଛି । ଆମେ ଭି. ଆଇ. ପି ସେଇତକ ସମୟପାଇଁ । ମଝିରାତି । ଗାଡ଼ି ଥୁଆହୋଇଛି ତିନମୂର୍ତ୍ତି ଆଗରେ । ସେମାନେ ଆସୁଛନ୍ତି । ଉନ୍ନତ ପଠାଣର ଗୋଟିଏ ହାତ ପଡ଼ିଛି ଜବାହରଲାଲଙ୍କ କାନ୍ଧରେ, ଆର ହାତ ପଡ଼ିଛି ଇନ୍ଦିରା ଗାନ୍ଧିଙ୍କ କାନ୍ଧରେ । ଜବାହରଲାଲ ତାଙ୍କୁ ବୁଝାଇ ଚାଲିଛନ୍ତି ସ୍ୱାସ୍ଥ୍ୟର ଯତ୍ନ ନେବାପାଇଁ । ଆଉ ତାଙ୍କ ଆଖିରୁ ଝରିପଡ଼ୁଛି ଲୁହ ।

ଇନ୍ଦିରା ଗାନ୍ଧି ତାଙ୍କୁ ନେଇଗଲେ ଏୟାର ପୋର୍ଟକୁ । ଆଉ ଜବାହରଲାଲ ଆଖି ପୋଛି ପୋଛି ଫେରିଲେ ଘରକୁ ।

× × ×

ଆଲ୍ଲାହାବାଦରେ ମୋ ସ୍ତ୍ରୀ ଗବେଷଣା କରୁଥାନ୍ତି । ତାଙ୍କର ଅଧ୍ୟାପକଙ୍କ ଘରେ ମୁଁ ରହୁଥାଏ କିଛିଦିନ ପାଇଁ । ଦିନେ ଜବାହରଲାଲ ଆସିଥାନ୍ତି ସହରକୁ । ସକାଳୁ

ଦେଖିଲି ଅଧ୍ୟାପକଙ୍କ ବୁଢ଼ା ବାପା ବାଡ଼ି ଖଣ୍ଡିଏ ଧରି ବାହାରିଛନ୍ତି । ଏତେ ସକାଳୁ, ଏତେ ଶୀତରେ ଆପଣ କୁଆଡ଼େ ? ସେ କହିଲେ ଯେ ଜବାହର ଆସିଛି ସହରକୁ । ତାକୁ ଟିକଏ ଭେଟି ଆସେ । ଅନୁମତି ନେଇଛନ୍ତି, ସମସ୍ତ ସ୍ଥିରହୋଇଛି, ମୋର ପ୍ରଶ୍ନ । ସେ କହିଲେ, ସେ ସବୁକିଛି ଦରକାର ନାହିଁ ଏଇଠି । ଏଠି ସେ ପ୍ରଧାନମନ୍ତ୍ରୀ ନୁହେଁ, ଜବାହର ।

ଜବାହର ହଠାତ୍ ଆନନ୍ଦ ଭବନରୁ ବାହାରି ଆସି ତାଙ୍କର ଯେଉଁ ପିଲାଦିନର ସାଙ୍ଗ ଚା’ ଦୋକାନ କରିଛି, ସେଇଠି ବସିଯାଆନ୍ତି ଚା’ ଖାଇବାପାଇଁ, ଗପ କରିବାପାଇଁ ।

× × ×

ଜବାହର ଥିଲେ ସ୍ୱପ୍ନାଳୁ । ଅନେକ କଥା ସେ ଭାବୁଛନ୍ତି । କିନ୍ତୁ କାର୍ଯ୍ୟକାରୀ କରିପାରୁ ନାହାନ୍ତି । ସେଥିପାଇଁ ଯେତିକି କଠୋରତା ଆବଶ୍ୟକ, ତାହା ତାଙ୍କର ନଥିଲା ।

ପଞ୍ଚଶୀଳ ନୀତି । ଚୀନ୍ ସହିତ ଗୋଟିଏ ସଂଘର୍ଷରେ ଜବାହରଲାଲଙ୍କର ବିରୋଧୀମାନଙ୍କ ସହିତ ତାଙ୍କର ସହକର୍ମୀମାନେ ମଧ୍ୟ ଚିତ୍କାରକଲେ, ଏଇ ନୀତି ବ୍ୟର୍ଥ, ଜବାହରଲାଲ ବ୍ୟର୍ଥ ।

କିନ୍ତୁ ଆଜି ?

ଆଜି ସମଗ୍ର ପୃଥିବୀ ଜାଣିଛି ଯେ ମଣିଷ ସମାଜ ବଞ୍ଚି ରହିବାକୁ ହେଲେ ପଞ୍ଚଶୀଳ ନୀତି ଛଡ଼ା ଉପାୟ ନାହିଁ । ଏକ ନୀତି, କ୍ଷଣିକ ସମୟରେ ପରୀକ୍ଷିତ ହୁଏନା । ତାହା ହୁଏ ସମୟର ଦୀର୍ଘ ପରିସୀମାରେ ବହୁ ଉତ୍ଥାନପତନ ଭିତରେ ।

ଯେମିତି ଆମେ ବର୍ତ୍ତମାନ ହେଲୁଣି ବୁଦ୍ଧଙ୍କୁ, ଦୁଇ ହଜାର ବର୍ଷ ପରେ ।

ଜବାହର ଥିଲେ ୟୁଟୋପିଆନ ଅନେକ ସମୟରେ । ଆଇଡିଆଲିଷ୍ଟ । କିନ୍ତୁ ଗଭୀର ମାନବିକ ।

"ଯେଉଁମାନେ ସ୍ପର୍ଶକାତର ସେଇମାନେ ହିଁ ବେଶି କଷ୍ଟ ପାଆନ୍ତି । ତା’ ଭିତରେ ତମେ ଓ ମୁଁ ମଧ୍ୟ ଅନ୍ତର୍ଭୁକ୍ତ ।" ଆପଣାର ଜେଲରେ ବନ୍ଦୀ ଥିବା ଅଧ୍ୟାପକ ସରେନ ମୁଖାର୍ଜିଙ୍କୁ ତାଙ୍କର ଚିଠି ।

× × ×

ଆଜି ଦିଲ୍ଲୀରେ ମେହେନ୍ତରମାନେ ଯେଉଁ ଲମ୍ବା ଝାଡ଼ୁ ବ୍ୟବହାର କରନ୍ତି, ଦିଲ୍ଲୀର ଟ୍ରାଫିକ ପୁଲିସର ମୁଣ୍ଡ ଉପରେ ଯେଉଁ ଛତା ଥାଏ, ତାହା ହେଉଛି ଜବାହରଲାଲଙ୍କର ଆଖିରୁ ଏଡ଼ାଇ ଯାଉନଥିବା ଘଟଣାର ଫଳ ।

ଭାରତବର୍ଷର ବିଭାଜନ ସମସ୍ୟା । ସାରା ଭାରତବର୍ଷରେ ହିଂସା ଓ ଅବିଶ୍ୱାସର ବିଷ । ହିନ୍ଦୁ ଓ ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ବିଷ ସଞ୍ଚାରିବା ପାଇଁ କେତେ କାହାଣୀ, କେତେ ଗୁଜବ । ଜବାହରଲାଲଙ୍କର ସବୁ ଖାନସାମା, ସବୁ ଭୃତ୍ୟ ହେଉଛନ୍ତି ମୁସଲମାନ । ସିକ୍ୟୁରିଟି ଚାହିଁଲା ତାଙ୍କୁ ବଦଳାଇଦେବା ପାଇଁ । ଜବାହରଲାଲ ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲେ । ଫୁଡ୍ ଟେଷ୍ଟର ନିଯୁକ୍ତ କରିବାକୁ ଚାହିଁଲେ ସିକ୍ୟୁରିଟି । ଜବାହରଲାଲ ତାଙ୍କୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଦେଲେ । ତାଙ୍କର ସବୁ ଭୃତ୍ୟ, ସବୁ ଖାନସାମା ଯେଇପରି ରହିଲେ ମୁସଲମାନ । କିଛି ହେଲନାହିଁ ।

କିନ୍ତୁ ପରେ କ'ଣ ହେଲା ? ଏକ ଦେଶର ନିର୍ବାଚିତ ପ୍ରଧାନମନ୍ତ୍ରୀଙ୍କୁ ତାଙ୍କର ଦେହରକ୍ଷୀମାନେ ହତ୍ୟା କଲେ ସଂପ୍ରଦାୟ ଓ ଧର୍ମର ନାଁରେ । ଆମେ ଆଗେଇଛୁ ନା ପଛୁଇଛୁ ?



[ ପୁଙ୍ଗବ ଜବାହରଲାଲ ନେହେରୁଙ୍କ ଜନ୍ମଶତବାର୍ଷିକୀ ନିମିତ୍ତ ହୋଇଥିବା ପତ୍ରିକାରେ ପ୍ରକାଶିତ । ]

# କଟକ ବଡ଼ ଡାକ୍ତରଖାନାର ଏକମାତ୍ର ପୁରୁଷ

ଡାକ୍ତର ଜ୍ୟୋତ୍ସ୍ନା ଦେଇ ଆଉ ନାହାନ୍ତି । ଜୁଲାଇ ୧୮, ୧୯୯୪ ସନ୍ଧ୍ୟାରେ ସେ ବାହୁଡ଼ିଯାଇଛନ୍ତି ସେଇଠିକୁ ଯେଉଁଠାରୁ ଆଉ କେହି ଫେରି ନାହାନ୍ତି । ସେଦିନ ବାହୁଡ଼ା ଥିଲା । ଜଗନ୍ନାଥ ମନ୍ଦିରକୁ ବାହୁଡ଼ିଲେ, ଡାକ୍ତର ଦେଇ ବାହୁଡ଼ିଲେ ଜୀବନରୁ । ମଦର ଟେରେସା କହନ୍ତି ମୃତ୍ୟୁ ହେଉଛି ସୁନ୍ଦର । ଏହା କୁଆଡ଼େ ଘର ବାହୁଡା ଭଳି ।

ଗଲା କେତେଦିନ ଧରି ଡାକ୍ତର ଜ୍ୟୋତ୍ସ୍ନା ଦେଇ ଅସୁସ୍ଥ ଥିଲେ । ଦେହ ଅବଶ ହୋଇ ଆସୁଥିଲା । ଜିଭ ଖସିବାକୁ ଆରମ୍ଭ କରିଥିଲା । ମନେ ହେଉଥିଲା ଯେପରି ଜୀବନର ମଳିନ ଅପରାହ୍ଣ ଉପସ୍ଥିତ । ସନ୍ଧ୍ୟା ହେବ ପାଇଁ ଡେରି ନାହିଁ । ତାଙ୍କର ପ୍ରସିଦ୍ଧ କମାଣ୍ଡିଂ ସ୍ୱର ଆଉ ନାହିଁ । କହୁଛନ୍ତି ଧୀରେ ଧୀରେ । କାନକୁ କଥା ଶୁଭୁନାହିଁ । ମହାକାଳର ହାତ ବାଜିବାକୁ ଆରମ୍ଭ କରିଛି । ଏଡ଼ିବେ କିଏ ?

କର୍ଣ୍ଣେଲ କ୍ଷେତ୍ରମୋହନ ରାୟ ଓ ଶ୍ରୀମତୀ ଦେଇଙ୍କର ଦ୍ୱିତୀୟା କନ୍ୟା ଡାକ୍ତର ଜ୍ୟୋତ୍ସ୍ନା ଦେଇ ବାପାମାଆଙ୍କର ଆଶୀର୍ବାଦରୁ ଉଚ୍ଚଶିକ୍ଷା ପାଇବାରୁ ବଞ୍ଚିତ ହୋଇ ନଥିଲେ । ବଡ଼ ଭଉଣୀ ଡାକ୍ତର ବୀଣା ଦେଇଙ୍କ ସହିତ ସେ ଗୋପବନ୍ଧୁ ଦାସଙ୍କର ଅଭିଭାବକତ୍ୱ ପାଇଥିଲେ କିଛି ବର୍ଷ । କର୍ଣ୍ଣେଲ ରାୟ ଯାଆନ୍ତି ପ୍ରଥମ ମହାସମରକୁ ଓ ଛାଡ଼ି ଯାଆନ୍ତି ପରିବାରକୁ ଗୋପବନ୍ଧୁ ଦାସଙ୍କ ପାଖରେ । ଦୁଇ କନ୍ୟାଙ୍କର ଜୀବନ ରୂପାୟିତ ହୁଏ । ସେ କଥା ଡାକ୍ତର ଜ୍ୟୋତ୍ସ୍ନା ଦେଇ ସ୍ମରଣ କରନ୍ତି ସାଶ୍ରୁଳ ନୟନରେ ସବୁବେଳେ ।

ସେତେବେଳେ ନାରୀଶିକ୍ଷାର ପରିମାଣ ଥିଲା ବହୁତ କମ୍ । ଘରର ଅଳିନ୍ଦ ଛାଡ଼ି ବାହାରକୁ ଯିବାର ପରିସର ନାରୀମାନଙ୍କ ପାଇଁ ଥିଲା କ୍ୱଚିତ୍ । କିନ୍ତୁ ଠିକ୍ ସେତିକିବେଳେ । ବୀଣା ଦେଇ ଏବଂ ଜ୍ୟୋତ୍ସ୍ନା ଦେଇ ଉଚ୍ଚଶିକ୍ଷାଲାଭ କରିବାର ସୁଯୋଗ ପାଇଥିଲେ । ଡାକ୍ତର ଜ୍ୟୋତ୍ସ୍ନା ଦେଇ ଲେଡ଼ି ହାର୍ଡ଼ିଞ୍ଜ ମେଡ଼ିକାଲ କଲେଜରୁ ପାସ୍ କରି ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗରେ ଯୋଗ ଦିଅନ୍ତି ଏବଂ ଯଥା ସମୟରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ପ୍ରସୂତି ବିଭାଗର ଦାୟିତ୍ୱ ବହନ କରନ୍ତି ।

ଦ୍ୱିତୀୟ ମହାଯୁଦ୍ଧର ଅବ୍ୟବହିତ ପରେ ଡାକ୍ତର ଜ୍ୟୋତ୍ସ୍ନା ଦେଇ ଇଂଲଣ୍ଡ ଯାଆନ୍ତି ପ୍ରସୂତି ଏବଂ ସ୍ତ୍ରୀ ରୋଗ ଉପରେ ଉଚ୍ଚଶିକ୍ଷା ପାଇଁ । ପିତାମାତା ପୂର୍ବ ୯ ସଂଗ୍ରାମ କେଶରୀ ଗୁପ୍ତ, ଶିଳ୍ପୀ ଶ୍ରୀ ଅଜିତ କେଶରୀ ରାୟଙ୍କ ସହିତ ଦୁଇ କନ୍ୟାଙ୍କର ଉଚ୍ଚଶିକ୍ଷାର ବନ୍ଦୋବସ୍ତ କରିଥିଲେ ବହୁ ବାଧାବନ୍ଧନକୁ ଏଡ଼ାଇ ଦେଇ । ଡାକ୍ତର ଦେଇ ସେକଥା ଭୁଲି ନାହାନ୍ତି । ସ୍ତ୍ରୀ ମାନଙ୍କର ଉଚ୍ଚଶିକ୍ଷା ଏବଂ ଧନ୍ଦାପାଇଁ ତାଙ୍କର ଆଗ୍ରହ ପ୍ରଚୁର । ନାରୀସେବା ସଦନଠାରୁ ଆରମ୍ଭ କରି ବହୁ ଅନୁଷ୍ଠାନରେ ସେ ନାରୀ କଲ୍ୟାଣ ପାଇଁ ଆପଣାର ଆଲେଖ୍ୟ ରଖି ଯାଇଛନ୍ତି ।

ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ପ୍ରସୂତି ବିଭାଗର ବର୍ତ୍ତମାନ କୋଠା ହେଉଛି ତାଙ୍କର ଦାନ । କୋଠା ତିଆରି କରିଛନ୍ତି ପୂର୍ତ୍ତ ବିଭାଗ ସରକାରୀ ଅନୁଦାନରେ । କିନ୍ତୁ ଠିଆହୋଇ କାମର ତଦାରଖ କରିଛନ୍ତି ଡାକ୍ତର ଦେଇ । କାମ ତଦାରଖ କରିବେ ଏବଂ ଆବଶ୍ୟକ ହେଲେ ପରିବର୍ତ୍ତନ କରିବେ ନକ୍ସାର । ତାଙ୍କ ଆଖିରୁ କିଛି ଏଡ଼ାଇ ଯିବ ନାହିଁ କି ତାଙ୍କର ପ୍ରତାପୀ ହୁକୁମ ଆଗରେ କେହି ବର୍ତ୍ତି ପାରିବେ ନାହିଁ । ସେ ଡାକ୍ତର ହୁଅନ୍ତୁ, ଇଞ୍ଜିନିୟର ହୁଅନ୍ତୁ, ଆଇ.ଏ.ଏସ୍. ଅଫିସର ହୁଅନ୍ତୁ । ଡାକ୍ତର ଦେଇ ଅନନ୍ୟା ।

ମେଡ଼ିକାଲ କଲେଜରେ ତାଙ୍କ ଉପରେ ବହୁ ଗଳ୍ପ ରହିଛି । ଡାକ୍ତର ଜ୍ୟୋତ୍ସ୍ନା ଦେଇ ଡାକ୍ତର ଦେଇ ନାମରେ ପରିଚିତ ଏବଂ ସମସ୍ତେ କହନ୍ତି ମେଡ଼ିକାଲ କଲେଜରେ ଜଣେ ମାତ୍ର ପୁରୁଷ ଏବଂ ସେ ନାରୀ ହେଉଛନ୍ତି ଡାକ୍ତର ଦେଇ । There is only one man in the Medical College and she is Doctor Dei.

ଡାକ୍ତର ଦେଇ ବିବାହ କରି ନାହାନ୍ତି । କିନ୍ତୁ ପରିବାର ବିରାଟ । ଝିଆରୀ, ପୁରୁଷ, ଭାଇ, ଭଉଣୀ, ବନ୍ଧୁବାନ୍ଧବ ସେଇ ଗୋଟିଏ ଘରରେ ବସା ବାନ୍ଧି ରହିଛନ୍ତି । ଯେପରି ଏକ ବିରାଟ ଯୁଗ୍ମ ପରିବାର । କିଏ କହିବ ଯେ ଏଇ ନାରୀ ଅବିବାହିତା ? ଦୁ' ଭଉଣୀ ତ ଏକାଠି । କେହି ସେମାନଙ୍କୁ ଅଲଗା ଦେଖିନାହାନ୍ତି ବା ବିଚାର ମଧ୍ୟ କରି ନାହାନ୍ତି । ଆଜି ଗୋଟିଏ ଭଉଣୀ ବାହୁଡ଼ିଲା ପରେ ଆଉ ଭଉଣୀଟି ପାଇଁ ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତାକୁ ସେ ସହ୍ୟ କରିବେ କେତେ ଦିନ ସେଇଟି ପ୍ରଶ୍ନ । ବହୁ ବ୍ୟକ୍ତିଙ୍କର ନୀଡ଼ ତାଙ୍କର ଘର । ସମସ୍ତେ କିନ୍ତୁ ଡାକ୍ତର ଦେଇଙ୍କୁ ମାନନ୍ତି, ଭୟ ମଧ୍ୟ କରନ୍ତି । ଇମିତି ବେଶ୍ ସ୍ନେହୀ ମଣିଷ । ଅବିବାହିତା କିନ୍ତୁ ସଂପୂର୍ଣ୍ଣ ପାରିବାରିକ । ଇମିତି ମଣିଷଟିଏ ମିଳିବା କଠିନ ।

ପରିଣତ ବୟସ ହୋଇଥିଲେ । ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କର ଭକ୍ତ ଥିଲେ । ଶ୍ରୀ ଅରବିନ୍ଦ ଆଶ୍ରମକୁ ସେ ଦାନ କରି ଯାଇଛନ୍ତି ଆପଣାର କୃଷିକ୍ଷେତ୍ରକୁ

ଯାହା ଶ୍ରୀକ୍ଷେତ୍ର ନାମରେ ବିଦିତ । ପଚିଶ ଏକରରୁ ଊର୍ଦ୍ଧ୍ୱ ଜମି ଉପରେ ଆଶ୍ରମ ଠିଆ ହୋଇଛି ଏବଂ ଏଠାର ଅନ୍ତେବାସୀମାନେ ପରିକଳ୍ପିତ ଅତିମାନସ ଶକ୍ତିର ଅବତରଣ ପାଇଁ ଆପଣାଙ୍କୁ ପ୍ରସ୍ତୁତ କରୁଛନ୍ତି ।

ଧନେ ସମସ୍ତଙ୍କୁ ଯିବାକୁ ହେବ । ଡାକ୍ତର ଦେଇ ସେଇ କଥାମର ବ୍ୟତିକ୍ରମ ନୁହନ୍ତି । ଦେହ ଅବଶ ହୋଇ ଆସୁଛି । ଆଉ ଅଧିକ କଷ୍ଟପାଇ ଜୀବନ ଧାରଣ କରିବାର କି ଅର୍ଥ ? ଡାକ୍ତର ଦେଇ ଶୋଇ ରହିଛନ୍ତି ଚିରନିଦ୍ରାରେ ମୁଣ୍ଡ ଉପରେ ଶ୍ରୀ ଅରବିନ୍ଦଙ୍କର ଫଟୋ । ଡାକ୍ତର ଦେଇଙ୍କର ମୁଖମଣ୍ଡଳ ଉପରେ ଚିରପ୍ରଶାନ୍ତିର ସ୍ୱାକ୍ଷର । ଶୁଖିଚି ବାସନା, ଶୁଖିଚି ସ୍ପୃହା କୋହ, ଶୁଖିଚି ଆଶା ! ବହୁ ସନ୍ତାନ, ପୁତ୍ରକନ୍ୟାଙ୍କୁ ସେ ଆପଣା ହାତରେ ଭୂମିଷ୍ଠ କରାଇଛନ୍ତି ପୃଥିବୀରେ । ବହୁ ଛାତ୍ରଛାତ୍ରୀଙ୍କୁ ଶିକ୍ଷା ଦେଇଛନ୍ତି ସେଇ ବିଦ୍ୟା । ଦୀକ୍ଷା ଦେଇଛନ୍ତି ରୁଗ୍ଣ ମଣିଷର ସେବା ପାଇଁ । ତାଙ୍କର ଦକ୍ଷ ହାତ, ତାଙ୍କର ଉଦାର କଣ୍ଠସ୍ୱର, ତାଙ୍କର କଠୋର ଶୃଙ୍ଖଳା ସ୍ମରଣ କରୁଛନ୍ତି ଶ୍ମଶାନରେ ଘେରି ରହିଥିବା ଅସୁମାର ମଣିଷ । ସେମାନେ ଆସିଛନ୍ତି ଜୀବନର ବିଭିନ୍ନ ବିଭାବରୁ, ବିଭିନ୍ନ ବୟସର ସେମାନେ, କିନ୍ତୁ ସମସ୍ତେ ଆଖିରୁ ଲୁହ ପୋଛୁଚନ୍ତି ତାଙ୍କର ସହକର୍ମୀ, ଛାତ୍ର, ଅସୁମାର ଉପକୃତ ମଣିଷ । ସେଇତ ତାଙ୍କ ଜୀବନର ସାର୍ଥକତା ।

ସମସ୍ତଙ୍କୁ ଯିବାକୁ ହେବ । ଜାତସ୍ୟହି ଧ୍ରୁବ ମୃତ୍ୟୁ । ଡାକ୍ତର ଦେଇ କିନ୍ତୁ ସ୍ମୃତ ହୋଇ ରହିବେ ଅଗଣିତ କୃତଜ୍ଞ ମଣିଷ ପାଖରେ ବହୁକାଳ ଧରି ।



# ତାଙ୍କର ହାତର ପରଶରେ

ସେତେବେଳେ ଏତେ ପ୍ରକାର ଔଷଧ ନ ଥିଲା । କିଛି ଜର୍ମାନୀ ଔଷଧ ଥାଏ ମାର୍କେଟରେ, ସବୁ ପ୍ରକାର ରୋଗ ପାଇଁ । ଡାକ୍ତରଙ୍କୁ ରୋଗ ପାଇଁ ନିଜ ହାତରେ ମିକ୍ସ୍ଚର ତିଆରି କରିବାକୁ ପଡ଼େ । ଯୁଦ୍ଧ ସମୟ । ଜର୍ମାନୀ ଔଷଧ ମାର୍କେଟରୁ ପ୍ରାୟ ସରି ଆସୁଥାଏ । ଥର୍ମୋମିଟର କାଁ ଭାଁ ମିଳେ । ସମସ୍ତ ସମୟରେ ତ।'ବି ମିଳେନା । କିନ୍ତୁ ରୋଗ ବସା ବାନ୍ଧେ ଘରେ ଘରେ । ଗାଁ ଗାଁରେ ସହର ସହରରେ କଲେରା ମହା-ମାରୀ ବ୍ୟାପେ । ଘର ପଡ଼ା ହୋଇଯାଏ । ଗାଁ ନିଶ୍ଚିହ୍ନ ହୋଇଯାଏ । ମୋଟର ଗାଡ଼ି ମୋଟର ସାଇକେଲ ତ ସପନ । ରାଜା ବା ବଡ଼ବଡ଼ ଅଫିସରମାନଙ୍କର ଭାଗ୍ୟରେ କେବଳ ତାହା ଜୁଟେ । ସାଇକେଲ ଏବଂ ପାଦ ଏଇ ହେଉଛି ଭରସା । କେବେ କେବେ ସହରରେ ରିକ୍ସା ମିଳେ । ଯୁଦ୍ଧର ଆତଙ୍କ । ନଷ୍ଟ ଦାମ ସବୁଆଡ଼େ । ଇମିତ ତ ବନ୍ଧୁଲି ଆଲୁଅ ଯୁଗ ଓଡ଼ିଶାକୁ ଛୁଇଁ ନାହିଁ । ଷ୍ଟ୍ରିଟ ଲାଇଟ ହେଉଛି ମ୍ୟୁନିସିପାଲିଟି ବତୀ ଖୁଣ୍ଟ ଆଲୁଅଦ୍ୱାରା । ଖାଲି ରାସ୍ତାକୁ ବାରିବା ପାଇଁ ।

ସମ୍ବଲପୁର ସହର । ସ୍ୱାର୍କୁଦ ବନ୍ଧ ହୋଇନାହିଁ । ପଲଟଣ କୁଆଁ (ଆଜି ଚନ୍ଦ୍ର ଶେଖର ଜିଲ୍ଲା ସ୍କୁଲ ପାଖ) ଏବଂ ରାମ ସାଗର ପୋଖରୀ ବା ମହାନଦୀର କୁଅଁ ପିଇବା ପାଣିର ଉତ୍ସ । ସମ୍ବଲପୁରରେ କଲେରା ଦେଖାଦିଏ । ସହରରେ ଖୁବ୍ କମ ଡାକ୍ତର । ସେମାନଙ୍କ ଉପରେ ଚାପ ପ୍ରବଳ । ସେତିକବେଳେ ଡାକ୍ତର ଦାଶରଥି ମହାପାତ୍ରଙ୍କୁ ଦେଖିଛି । ସାଇକେଲରେ ଏବଂ ପାଦରେ । ଖରାରେ ଏବଂ ଅନ୍ଧାର ରାତିରେ । ମୋତିଝରଣ ଜଙ୍ଗଲ ଭିତର ଫରେଷ୍ଟ ବଙ୍ଗଳାର କ୍ୱାର୍ଟର୍ସରେ ବା ମୁଦିପଡ଼ାରେ । ଦିନ ଓ ରାତି ସମାନ ହୋଇଯାଏ । ତାଙ୍କଠି ଅ'ଓ୍ୱାର ବୋଲି କିଛି ନଥାଏ । ରୋଗୀ ଏବଂ ଚିକିତ୍ସା ।

ଟାଏଫଏଡ଼ ସେତେବେଳେ ଏକ ଭୟାନକ ରୋଗ । ଏବେକୁ ଚିକିତ୍ସାର ଢଙ୍ଗ ବଦଳି ଗଲାଣି । ଅନେକ ଔଷଧ ମଧ୍ୟ ବାହାରିଲାଣି । କିନ୍ତୁ ସେତେବେଳେ ଇମିତି ନଥିଲା । ସମ୍ବଲପୁରରେ ପ୍ରବଳ ପ୍ରତାପୀ ପଲିଟିକାଲ ଏଜେଣ୍ଟ ଇସକନ୍ଦର ମିର୍ଜା । ପରେ ସେ ପାକିସ୍ଥାନରେ ରାଷ୍ଟ୍ରପତି ହେଲେ । ରାଜାମାନେ ନିଜ ରାଜ୍ୟରେ ବାହାଦୁର, ସର୍ବେସର୍ବା, ଅତ୍ୟାଚାରୀ । କିନ୍ତୁ ପଲିଟିକାଲ ଏଜେଣ୍ଟ ଆଗରେ ମୂଷା । ସେଇ ଇସକନ୍ଦର ମିର୍ଜାଙ୍କ ପାଖରେ ଥାଏ ଅଟେବ୍ରିନ ନାମକ ଔଷଧ । ମୋ.ର ସେ ଔଷଧ ଦରକାର । ବାପାଙ୍କୁ ନେଇ ଗଲେ ଦାଶରଥିବାବୁ ତାଙ୍କ ପାଖକୁ । ମିର୍ଜା ଏବଂ

ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣରର ଶିକାର କ୍ୟାମ୍ପରେ ଗୁମୋଲୋଇ ନାମକ ଜଙ୍ଗଲ ଭିତର ଏକ ଡାକବଙ୍ଗଳାରେ । ଦାଶରଥି ବାବୁଙ୍କ ସାଇକେଲ ଲାଗିଲା ସେଇଠି । ସମ୍ବଲପୁରରୁ ପ୍ରାୟ ୩୦ ମାଇଲ ବାଟ, ଜଙ୍ଗଲ ରାସ୍ତା । କିନ୍ତୁ ଦାଶରଥି ବାବୁ ପହଞ୍ଚିଲେ ସେଇଠି । ଔଷଧ ଆଣିବା ପାଇଁ ବାପାଙ୍କ ପାଖରୁ । ବାପା ବାଧ୍ୟ ହୋଇ ମିର୍ଜାଙ୍କୁ ଭେଟିଲେ ଦାଶରଥି ବାବୁଙ୍କ ସଙ୍ଗରେ ।

କେତେ ସ୍ମୃତି । ସେ ସମସ୍ତ ଆଉ ନାହିଁ । ସେମିତି ମଣିଷ ବି ନାହାନ୍ତି । ଦାଶରଥି ବାବୁଙ୍କ ବୟସ ଅତିକ୍ରାନ୍ତ ହୋଇଥିଲା । କୌଣସି ଏକ ଦୁର୍ଘଟଣାରେ ସେ ଆହତ ମଧ୍ୟ ହୋଇଥିଲେ କିଛି ବର୍ଷ ତଳେ ଏବଂ ଅଭିମାନ କରିଥିଲେ ଈଶ୍ୱର ପ୍ରଭୁଙ୍କ ଉପରେ । ଡାକ୍ତର କିନ୍ତୁ ନିଜର ଯେ ବହୁମୂତ୍ର ରୋଗ ହୋଇଛି ସେଥିପ୍ରତି ନଘା କରିନାହାନ୍ତି ଏବଂ ଜୀବନର ମାଦକତା ହଜି ଯାଉଥିବାରୁ ଜାଣି ଜାଣି ଔଷଧ ଖାଇ ନାହାନ୍ତି । ଯେଉଁ ହାତ ହଜାର ହଜାର ଅମାନିଆ ରୋଗୀଙ୍କୁ ବାଧ୍ୟ କରି ଔଷଧ ଖୁଆଉଥିଲା ସେ ନିଜେ ଆଉ ଔଷଧ ଖାଇବାକୁ ନାରାଜ । ବିଚିତ୍ର ବ୍ୟତିକ୍ରମ ।

ଦାଶରଥିବାବୁ ନାହାନ୍ତି । କେହି ରହିବେ ନାହିଁ । ସମସ୍ତେ ହଜିଯିବେ କାଳର କରାଳ ଗର୍ଭରେ । ମହାକାଳ ସମସ୍ତ ମଧ୍ୟ ପୋଛିଦେବ ସେମାନଙ୍କର ସ୍ମୃତି । କିନ୍ତୁ ତାଙ୍କର ହାତର ସ୍ପର୍ଶରେ ଯେଉଁମାନେ ନୂତନ ଜୀବନ ଲଭ କରିଛନ୍ତି ସେମାନଙ୍କ ସ୍ମୃତିରେ ସେ ଉଜ୍ଜ୍ୱଳ ରହିବେ । ସେଇ ତ ଜୀବନର ସାର୍ଥକତା ।



# ଉଜ୍ଜ୍ୱଳ ସ୍ମୃତି

ସମସ୍ତ ବଡ଼ ବଳବାନ । ସବୁ ହଜିଯାଏ ତାହାର ସ୍ପର୍ଶରେ । ଯେଉଁ ଦୁଃଖ ଆଜି ଖୁବ୍ ବଡ଼ ବା ଦାରୁଣ ମନେହୁଏ, ତାହା ସହ୍ୟ ହୋଇଯାଏ କାଲିକୁ । ବାପାମାଆଙ୍କୁ ପୁଅଝିଅମାନେ ଭୁଲି ଯାଆନ୍ତି କର୍ମ ଜଞ୍ଜାଳରେ । ସେଇଯୋଗୁଁ ସ୍ୱର୍ଗତ ପିତାମାତାଙ୍କ ପାଇଁ ଶ୍ରାଦ୍ଧର ବ୍ୟବସ୍ଥା ।

ଦୀନବନ୍ଧୁ ବାବୁ ବାହୁଡ଼ିଲେଣି ଅନେକ ଦିନରୁ । ଠିକ୍ କେଉଁ ବର୍ଷ, ତାହା ମୋର ହେଉ ନାହିଁ । ସେଦିନ କିନ୍ତୁ ମୃତ୍ୟୁ ସମ୍ବାଦ ପାଇଲାକ୍ଷଣି ଅନେକ କଥା ମନ ଭିତରେ ଝୁଲୁଛି ଯାଉଥିଲା । ମହାକାଳ ତାକୁ ମଧ୍ୟ ଖାଇ ଗଲାଣି ଦୁଇପଟରୁ ।

ହଠାତ୍ ଶ୍ରୀ ଅମର କୁମାର ବେହେରାଙ୍କର ଏକ ଚିଠି । ଦୀନବନ୍ଧୁ ବେହେରାଙ୍କ ସ୍ମୃତି ପଖାଳିବା ପାଇଁ ଏକ ସ୍ମରଣିକା ପ୍ରକାଶ କରିବାର ପ୍ରସ୍ତାବନା ତାଙ୍କ ଚିଠିରେ । ମୋଠାରୁ ସେ ଏକ ଲେଖା ଲୋଡ଼ୁଛନ୍ତି ତାଙ୍କ ଉପରେ । କିଏ ମରିଗଲେ ମୁଁ ଏକ ଲେଖା ପ୍ରକାଶ କରେ ବୋଲି ମୋଉପରେ ଏକ ଅପବାଦ ରହିଛି । ପ୍ରଶଂସା ମିଳେ, ଆଉ ମଧ୍ୟ ଅନେକ କିଛି ମିଳେ । ବନ୍ଧୁ ବର୍ଗରପଦ ଲିଙ୍ଗରାଜ ରଥ କହନ୍ତି, "ଶ୍ରଦ୍ଧାଞ୍ଜଳିକୁ ଏକ ସାହିତ୍ୟରେ ତମେ ପରିଣତ କରିଛ" । ଆଉ କେତେକ ବନ୍ଧୁ କହନ୍ତି,"ତମେ କଣ ଓବିଚୁଆରିଗୁଡ଼ାକ ଆଗରୁ ଲେଖି ରଖିଛ ନା କଣ ? ଆମ ନାଁ ସେ ତାଲିକାରେ ଅଛି ତ" । ଦୁଇ ଦଶନ୍ଧି ତଳେ ଏଇପରି ଲେଖିବା ଆରମ୍ଭ କଲାବେଳେ ଓଡ଼ିଶାର ଖବରକାଗଜମାନଙ୍କରେ ପ୍ରାୟତଃ ମୃତ୍ୟୁ ସମ୍ବାଦ ହିଁ ପ୍ରକାଶ ପାଉଥିଲା । ଜୀବନୀ ବା ଶ୍ରଦ୍ଧାଞ୍ଜଳିର ସଂଖ୍ୟା ଖୁବ୍ କମ୍ । ଏବେ ଜୀବନୀ ଲେଖିବା ଏକ ଧାରାରେ ପରିଣତ ହୋଇ ସାରିଲାଣି । ସେଥିପାଇଁ ମୁଁ ତୃପ୍ତ ।

ଚିଠିଟି ସେଇ ଧାରାନୁଯାୟୀ ଆସିଛି ବୋଲି ଭାବିଲି । କିନ୍ତୁ ଚିଠିଟି ପଢ଼ି ଜାଣିଲି ଯେ ପତ୍ର ଲେଖକ ଦୀନବନ୍ଧୁବାବୁଙ୍କ ଜୀବନ ସହିତ ଯେପରି ଜଡ଼ିତ, ମୋ ଉପରେ ମଧ୍ୟ ସେଇପରି ଏକ ଗ୍ରେଟକାଟିଆ ଗବେଷଣା କରି ସାରିଛନ୍ତି । ତା'ନ ହେଲେ ଏଇ ଭି. ଓ. ପି. ମଣିଷଟି ଯେ ଦିନେ ଭଞ୍ଜନଗର (ଏକଦା ରସେଲକୋଣ୍ଡା) ସହରରେ ପଢ଼ୁଥିଲି ଏବଂ ଦୀନବନ୍ଧୁବାବୁଙ୍କ ସଂସ୍ପର୍ଶରେ ଆସିଥିଲି, ଏ କଥା ସେ ଆବିଷ୍କାର କଲେ କିପରି ?

ଶ୍ରୀ ଅମର କୁମାର ବେହେରଙ୍କୁ ମୋର ସ୍ମରଣ ହେଉନାହିଁ । କିଏ ସେ ? ଦୀନବନ୍ଧୁବାବୁଙ୍କ ପୁଅ, ପୁରୁଷ, ନାତି, କୋଇଁ ? ଆଜିକାଲି ସ୍ମୃତି ସାଉଁଟିବା କାମ କେବଳ ସେଇମାନେ ହିଁ କରୁଛନ୍ତି । ଉପାୟ ନାହିଁ । ଯେଉଁ ବ୍ୟକ୍ତି ପୁଅ, ପୁରୁଷ, ଝିଅ, କୋଇଁ, ପରିବାର ଛାଡ଼ି ଜନସେବାରେ ଆପଣାକୁ ନିୟୋଗ କରିଗଲା, ତା'ର ସ୍ମୃତି ରକ୍ଷା କରିବା କ'ଣ ସେଇ ଦେଶର କର୍ତ୍ତୃପକ୍ଷମାନଙ୍କର ଦାୟିତ୍ୱ ନୁହେଁ ? କିନ୍ତୁ ଦୁଃଖର ବିଷୟ ତାହା ହେଉନାହିଁ । ପୁଣି ଦାୟିତ୍ୱ ପଡ଼ୁଯାଉଛି ସେଇ ପୁଅ, ପୁରୁଷମାନଙ୍କ ଉପରେ । ସେମାନେ ବଂଚିଥିଲେ ହେଉଛି, ନ ହେଲେ ଗଲା । ଆଉ ଯଦି ମରିଥିବା ବ୍ୟକ୍ତି ଅନୁଷ୍ଠାନଟିଏ ଗଢ଼ି ଦେଇଛି, ତା'ହେଲେ ସେଇ ଅନୁଷ୍ଠାନ ହୁଏତ ଉକ୍ତ ବ୍ୟକ୍ତିର ସ୍ମୃତି ପାଇଁ ସଭାଟିଏ କରିବେ ଅବା । ପ୍ରାଣନାଥ ପଟ୍ଟନାୟକ କଲେଜଟିଏ ଛାଡ଼ିଦେଇ ଯାଇନଥିଲେ, ଧୂଳୀଶ୍ୱର ବଡ଼ିଆ ଗୁରୁରକେଲାରେ ଅନୁଷ୍ଠାନଟିଏ ଗଢ଼ିଦେଇ ଯାଇନଥିଲେ, ହୁଏତ ସେମାନେ ସାଧୁଚରଣ ମହାନ୍ତି ବା ଡାକ୍ତର ରବି ଘୋଷଙ୍କ ଭଳି ବିସ୍ମୃତ ହୋଇ ସାରନ୍ତେଣି । କେବଳ କରୁଛା ଦେଶସେବା କ'ଣ ସ୍ମୃତ ହୋଇ ରହିବା ପାଇଁ ଯଥେଷ୍ଟ ? କିଏ ମନେରଖିଛି ସ୍ୱର୍ଗତ ନିରଞ୍ଜନ ପଟ୍ଟନାୟକ ବା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କୁ । ନିରଞ୍ଜନବାବୁଙ୍କ କୋଇଁ ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେଲାପରେ ଏକ କଲେଜ ପ୍ରତିଷ୍ଠା ହେଲା ନିରଞ୍ଜନବାବୁଙ୍କ ନାଁରେ । କିନ୍ତୁ ସେ ଜାନକୀବାବୁଙ୍କ ଶ୍ୱଶୁର ନିରଞ୍ଜନ ପଟ୍ଟନାୟକ ନାମରେ ବିଦିତ ସେଠାରେ । ଏହା ମୋର ପ୍ରତ୍ୟକ୍ଷ ଅନୁଭୂତି । ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ନାମରେ ବିଜୁ ପଟ୍ଟନାୟକ ଛକ (ଏହି ନାମକରଣ ପୌର ବା ଜିଲ୍ଲା କର୍ତ୍ତୃପକ୍ଷ କରିନାହାନ୍ତି ଠାରୁ ମହାନଦୀକୂଳ ପର୍ଯ୍ୟନ୍ତ ରାସ୍ତାକୁ ନାମିତ କରାଯିବା ପ୍ରସ୍ତାବ ହେଲାକ୍ଷଣି ଉତ୍ତର ମିଳିଲା 'କର୍ତ୍ତୃପକ୍ଷ'ଙ୍କଠାରୁ ବିଜୁବାବୁ ତ ଏପର୍ଯ୍ୟନ୍ତ କିଛି କହି ନାହାନ୍ତି । ଅର୍ଥାତ୍ ବିଚରା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କୁ ଅପେକ୍ଷା କରିବାକୁ ହେବ ବିଜୁବାବୁଙ୍କ ସମ୍ମତି ବା ପ୍ରସ୍ତାବନା ପର୍ଯ୍ୟନ୍ତ ।

ସେଇଯୋଗୁଁ ଅମର ବାବୁଙ୍କ ଚିଠି ପାଇଲା ପରେ ମୋ ମନରେ ଏଇ ପ୍ରତିକ୍ରିୟା ଦେଖାଗଲା ଯେ ଶେଷକୁ ଦୀନବନ୍ଧୁ ବେହେରଙ୍କ ପଚାଶ ବର୍ଷରୁ ଅଧିକ କାଳ ଜନସେବା ପରିଣତ ହେଲା ପାରିବାରିକ ସ୍ମୃତିରକ୍ଷାରେ । ଆଉ ଗଂଜାମ ବାସୀ ? ସେ ପ୍ରଶ୍ନର ଉତ୍ତର ମିଳିବ ନାହିଁ । କାରଣ ଗଂଜାମ ଜିଲ୍ଲା ଓଡ଼ିଶାର ବହୁ ମହାରଥୀଙ୍କ ଜନ୍ମ ଦେଇଛି । କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିସ୍ମୃତ ମହାକାଳ ଗର୍ଭରେ । ଓଡ଼ିଶା ଯେଉଁ ମାନଙ୍କ ପାଇଁ ଗର୍ବିତ, ସେମାନଙ୍କର ସ୍ମୃତିରକ୍ଷା ସାରା ରାଜ୍ୟରେ ହେବ, ଏହା କେବଳ ଗଂଜାମ ଜିଲ୍ଲାସମ୍ଭୂତ ବରପୁତ୍ରମାନଙ୍କ ମଧ୍ୟରେ ସୀମିତ ନୁହେଁ, ସବୁ ଜିଲ୍ଲା ପାଇଁ ଏହା ପ୍ରଯୁଜ୍ୟ । ତାର ହିସାବ ନିକାଶ ଏଇ ଗୋଟିଏ ଲେଖାରେ ହୋଇ ପାରିବ ନାହିଁ ।

ଗଂଜାମ ଜିଲ୍ଲାର ନେଟେଙ୍ଗା ଗ୍ରାମ ଏକ ଜଣାଶୁଣା ଗାଁ । ସେଇ ଜଡ଼କୁ ରଘୁପୁର ଗାଁ । ସେଇଠି ଦୀନବନ୍ଧୁ ବେହେରା ଜନ୍ମ ହୁଅନ୍ତି ୪ (ଚାରି) ମାର୍ଚ୍ଚ ୧୯୦୭ ମସିହାରେ । ଓଡ଼ିଶା ପ୍ରଦେଶ ଗଢ଼ା ହେବାକୁ ଅଧିକ ତିରିଶ ବର୍ଷ ବାକି ଥାଏ । ଦୀନବନ୍ଧୁ ପଢ଼ିବାକୁ ଆସିଲେ ରସେଲକୋଣ୍ଡା ସହରରେ ଥିବା ହାଇସ୍କୁଲକୁ । ସେତେବେଳେ ଗଂଜାମ ଜିଲ୍ଲାରେ ବିଭିନ୍ନ ସ୍ଥାନରେ ହାଇସ୍କୁଲ ପ୍ରତିଷ୍ଠା ହୋଇଥାଏ । ନେଟେଙ୍ଗା ଭଂଜନଗରକୁ ପାଖ । ଏଇ ସ୍କୁଲରେ ମୁଁ ନିଜେ ଦୁଇଥର ପଢ଼ିବାର ସୁଯୋଗ ପାଇଛି । ଥରେ ୧୯୩୭ ମସିହାରେ ଏବଂ ଆଉ ଥରେ ୧୯୪୫ ମସିହାରେ । ଏବଂ ସବୁଠାରୁ ମଜାର କଥା ଏଇ ସ୍କୁଲ ସଂକ୍ରାନ୍ତରେ ଏକ ବିଶାଳ ଜନସଭାରେ ହିଁ ମୋର ଦୀନବନ୍ଧୁ ବାବୁଙ୍କ ସହିତ ପ୍ରତ୍ୟକ୍ଷ ପରିଚିତି ଘଟେ ଏବଂ ଅକ୍ଷୁର୍ଣ୍ଣ ରହେ ତାଙ୍କର ବାହୁଡ଼ିବା ପର୍ଯ୍ୟନ୍ତ । ସେ କଥା ବାଦ୍ ପରେ ।

ଦୀନବନ୍ଧୁ ଆସିଲେ ସିଲଟ, ବହି ପାଠ ପଢ଼ିବା ପାଇଁ ରସେଲକୋଣ୍ଡା ହାଇସ୍କୁଲକୁ । କିନ୍ତୁ ଜୀବନର ବିଶାଳ ଚାହାଳୀରେ ମଧ୍ୟ ଏଇଠୁ ତାଙ୍କର ପଢ଼ା ଆରମ୍ଭ ହେଲା । ମାତ୍ର ସପ୍ତମ ଶ୍ରେଣୀରେ ପଢ଼ିଲାବେଳେ ସେ ମହାତ୍ମା ଗାନ୍ଧୀଙ୍କୁ ଭେଟନ୍ତି ୧୯୨୧ ମସିହାରେ ବ୍ରହ୍ମପୁରରେ । ତାଙ୍କର କାଉଁସ୍ତି ସ୍ପର୍ଶରେ ଏକ ନୂତନ ଦୀନବନ୍ଧୁଙ୍କର ଜନ୍ମ ହୁଏ ଏବଂ ମାନ୍ଦ୍ରାଜର କୋଡ଼ାଲୋର ଜେଲରେ ଛଅ ମାସ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ପଡ଼େ ତାଙ୍କୁ । ସ୍ୱାଧୀନତା ପାଇଁ ଆଦ୍ୟ ବଳିଦାନର ପର୍ବ ସେଇଠି ସରେ । ୧୯୨୦ ମସିହାର ଉଦ୍‌ବେଳନ ପରେ ଏକ ଭଟ୍ଟା ଦେଖାଦିଏ କିଛି କାଳ ପାଇଁ । ଚତୁର ଜନନାୟକ ମୋହନଦାସ କରମଚାନ୍ଦ ଗାନ୍ଧୀ ଆପଣାର କର୍ମୀମାନଙ୍କୁ ଖଦୀକର୍ମରେ ନିଯୋଗ କରନ୍ତି । ଦୀନବନ୍ଧୁ ଦୂରବର୍ତ୍ତୀ କୋଦଳା ଗ୍ରାମକୁ କେନ୍ଦ୍ର କରି ଖଦୀ ଏବଂ କଂଗ୍ରେସ କାମରେ ଲାଗିଯାଆନ୍ତି ।

ପାଠ ପଢ଼ିବାର ତୃଷ୍ଣା କିନ୍ତୁ ଥାଏ ଅବାରିତ । ସ୍ୱାରତମଣି ଗୋପବନ୍ଧୁ ଦାସ (ଉତ୍କଳମଣି ନୁହନ୍ତି) ଙ୍କର ସତ୍ୟବାଦୀ ବନବିଦ୍ୟାଳୟ ତା' ପାଇଁ ଦ୍ୱାର ଉନ୍ମୁକ୍ତ କରିଦେଲା । ସତ୍ୟବାଦୀ ବନବିଦ୍ୟାଳୟ ଛାତ୍ରମାନେ ତ' ପୁଣି ପରୀକ୍ଷା ଦେବେ । ସ୍କୁଲ ତ କର୍ତ୍ତୃପକ୍ଷଙ୍କ ସ୍ୱୀକୃତି ପାଇନାହିଁ । ତେଣୁ ଦୀନବନ୍ଧୁ ବେହେରା ଅନ୍ୟ ଛାତ୍ର ମାନଙ୍କ ପରି ଆସିଲେ କଟକ ପ୍ୟାରୀମୋହନ ଏକାଡେମୀକୁ ପଢ଼ିବା ପାଇଁ । ଇମିତି ଆସିଥିଲେ ବହୁ ଛାତ୍ର । ଡକ୍ଟର ସଦାଶିବ ମିଶ୍ର ସେମାନଙ୍କ ମଧ୍ୟରେ ଅନ୍ୟତମ । ସ୍କୁଲ ପାଠ ପଢ଼ା ସରିଲା ୧୯୨୮ ରେ । ମାଟ୍ରିକ ପାଶ୍ କଲେ ପ୍ୟାରୀ ମୋହନ ଏକାଡେମୀରୁ । ରେଭେନ୍‌ସା କଲେଜରେ ପାଠ ପଢ଼ା ଆରମ୍ଭ ହେଲା କିଛିଦିନରେ । ଯାହାଙ୍କର ପାଦତଳେ ବସି ସେ ସ୍କୁଲର ପାଠ ଓ ଜୀବନର ପାଠ ପଢ଼ିବା ଆରମ୍ଭ କରିଥିଲେ, ସେଇ ଗୋପବନ୍ଧୁ ଦାସଙ୍କର ମହାପ୍ରୟାଣ ହୁଏ । ସତ୍ୟବାଦୀର ସେଇ ବକୁଳବନ

ଭିତରେ ଗୋପବନ୍ଧୁଙ୍କ ଚିତାଗ୍ନି ଦୀନବନ୍ଧୁଙ୍କର ଜୀବନକୁ ଉଦ୍ଭାସିତ ଏବଂ ଶାଣିତ କରିଦିଏ ।

ଭାଷା ଭିତ୍ତିରେ ପ୍ରଦେଶ ଗଠନ ପାଇଁ ଜାତୀୟ ଗୌରବ (ଉତ୍କଳ ଗୌରବ ନୁହଁନ୍ତି) ମଧୁସୂଦନଙ୍କର ଦୃପ୍ତ ଆହ୍ୱାନ ନିନାଦିତ କରେ ଦୀନବନ୍ଧୁଙ୍କର ହୃଦୟକୁ । ଓଡ଼ିଆ ରାଜ୍ୟ ଗଠନ ଦାବୀ କରି ଛାତ୍ରମାନଙ୍କର ବିରାଟ ପଟୁଆରର ନେତୃତ୍ୱ ନିଅନ୍ତି ଦୀନବନ୍ଧୁ । ଛାତ୍ରମାନଙ୍କର ନେତା ଭାବରେ ଦୀନବନ୍ଧୁଙ୍କର ନାମ ଛୁଟିକାପଡ଼େ ନୂତନ ଦିଗନ୍ତକୁ ।

ସେ ଭାଗଲପୁରରେ ବି.ଏ. ପଢ଼ନ୍ତି ଏବଂ ସେଇଠାରୁ ପାଟନା ବିଶ୍ୱବିଦ୍ୟାଳୟରେ ବି. ଏ. ପାସ୍ କରନ୍ତି । କାହିଁକି ସେ ଭାଗଲପୁର ଗଲେ, ତାହା ମୁଁ ଜାଣିନାହିଁ । ଭାଗଲପୁରରୁ ପୁଣି କଟକ । ଆଇନ ପଢ଼ନ୍ତି ରେଭେନ୍ସା କଲେଜରେ । ଆଇନ ପାଠ୍ୟକ୍ରମ ପାଇଁ ସ୍ୱତନ୍ତ୍ର କଲେଜ ଗଢ଼ାହେବା ପାଇଁ ଅନେକ ସମୟ ବାକି । ଗୋପବନ୍ଧୁ ଯାଇଥିଲେ । ରହିଯାଇଥିଲେ ମଧୁସୂଦନ । ଦୀନବନ୍ଧୁ ବେହେରଙ୍କର ଦୁଇ ଦିଗ୍‌ବାରେଣୀ ଆଲୋକ । ମଧୁସୂଦନ ଦାସଙ୍କର ମହାପ୍ରସ୍ଥାଣ ଘଟେ ୧୯୩୪ ମସିହାରେ । ସତୀଚଉରା ପାଖ ମହାନଦୀ କୂଳରେ ବସି ଦୀନବନ୍ଧୁ ଦେଖନ୍ତି ଆପଣାର ଜୀବନର ସ୍ରୋତକୁ ।

୧୯୩୫ ମସିହାରେ ଆଇନ ପାସ୍ କରି କିଛି ସମୟ ପାଇଁ ସେ କଟକରେ ଓକିଲାତି କରନ୍ତି । କିନ୍ତୁ ୧୯୩୭ ମସିହାରେ ସେ ଗଞ୍ଜାମର ଆସିକା ସହରରେ ବିଧିବଦ୍ଧ ଓକିଲାତି ଆରମ୍ଭ କରନ୍ତି ଏବଂ କଂଗ୍ରେସ କର୍ମୀ ଭାବରେ ବୁଲନ୍ତି ଗାଁ କୁ ଗାଁ । ୧୯୩୭ ମସିହାରେ ଓଡ଼ିଶା ପ୍ରଦେଶ ଗଠନ ହୁଏ । ଆଉ ମାନ୍ଦ୍ରାଜ ଜିଲ୍ଲାର ଅଧିନ ନୁହେଁ ଗଞ୍ଜାମ ଜିଲ୍ଲା । ଏହା ବର୍ତ୍ତମାନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପାଞ୍ଚ ଜିଲ୍ଲା ମଧ୍ୟରେ ଅନ୍ୟତମ । ୧୯୩୭ ମସିହା ନିର୍ବାଚନରେ କଂଗ୍ରେସର ବିପୁଳ ବିଜୟ ହୁଏ ଓଡ଼ିଶାରେ । ଗଞ୍ଜାମ ଜିଲ୍ଲାରେ କଂଗ୍ରେସର ବିଜୟ କେତନ ଉଡ଼େ ଏବଂ ବ୍ରିଟିଶ ସମର୍ଥିତ ପ୍ରାର୍ଥୀମାନେ ପରାଜିତ ହୁଅନ୍ତି ବହୁ ଭୋଟରେ ।

୧୯୦୨ ମସିହା । ଭାରତ ଛାଡ଼ ଆନ୍ଦୋଳନର ବ୍ରାହ୍ମ ମୁହୂର୍ତ୍ତ । ଦୀନବନ୍ଧୁ ବେହେରା ରହିଲେ ଅନ୍ତରୀଣ ବନ୍ଦୀ ଭାବରେ ଦୀର୍ଘ ତିନିବର୍ଷ କାଳ । ତଥାପି ସେଇ ଭିତରେ ତାଙ୍କର ନିବିଡ଼ ସମ୍ପର୍କ ରହିଥିଲା ଜାତୀୟ ଆନ୍ଦୋଳନର ସେଇ ମହାରଥୀମାନଙ୍କ ସହିତ, ଯେଉଁମାନେ ଜେଲଖାନା ଯିବା ପରିବର୍ତ୍ତିରେ ଆତ୍ମଗୋପନ କରି ଆନ୍ଦୋଳନ ଚଳାଇ ରଖିବାକୁ ଚାହୁଁଥିଲେ । ସେମାନଙ୍କ ନାମରେ ଗିରଫଦାରୀ ପରୱାନା ଝୁଲୁଥିଲା । କେତେକଙ୍କ ବିରୁଦ୍ଧରେ 'ଦେଖିଲା ମାତ୍ରେ ଗୁଳି କର' ପରୱାନା ଝୁଲୁଥିଲା । ସେମାନଙ୍କ ସହିତ ସମ୍ପର୍କ ରଖିବା ଏବଂ ସେମାନଙ୍କର କାର୍ଯ୍ୟକୁ ସଂଯୋଜିତ କରିବା ଥିଲା ଏକ କଠୋର କାର୍ଯ୍ୟ । ଦୀନବନ୍ଧୁବାବୁଙ୍କ ଉପରେ ସେ ଦାୟିତ୍ୱ

ସ୍ୱତନ୍ତ୍ରବକ ସ୍ୱବରେ ପଢ଼ୁଥିଲି । କାରଣ ଯେଉଁ ମୁଷ୍ଟିମେୟ ନେତା ବାହାରେ ରହୁ ଯାଇଥିଲେ, ସେମାନଙ୍କ ମଧ୍ୟରେ ଦୀନବନ୍ଧୁ ବେହେରା ଅନ୍ୟତମ । ମୋର ଦାଦା ସ୍ୱର୍ଗତ ବଇଷ୍ଣ ନାରାୟଣ ଜଣେ କଂଗ୍ରେସ କର୍ମୀ ଥିଲେ । ବାପା ଥିଲେ ବନ୍ୟ ବିଭାଗର ଜଣେ କର୍ମଚାରୀ । ବାପାଙ୍କର ବଦଳି ହୁଏ ରସେଲକୋଣ୍ଡା (ଭଞ୍ଜନଗର)କୁ ଓଡ଼ିଶା ପ୍ରଦେଶ ଗଠନ ସହିତ ଏବଂ ଦାଦାଙ୍କର ରସେଲକୋଣ୍ଡାରେ ମହୁସୁବା ପରଠାରୁ ଯେଉଁ କଂଗ୍ରେସ ନେତାମାନଙ୍କ ସହ ସମ୍ପର୍କ ପ୍ରତିଷ୍ଠା ହୁଏ, ସେମାନଙ୍କ ମଧ୍ୟରେ ଦୀନବନ୍ଧୁବାବୁ ଅନ୍ୟତମ । ତେଣୁ ଗଞ୍ଜାମ ଜିଲ୍ଲାର ବହୁ ରାଜନୈତିକ ନେତାମାନଙ୍କ ସହିତ ପାରିବାରିକ ସମ୍ପର୍କ ଆମର ବହୁଦିନର । ଏହି ସମୟରେ ମୁଁ ଆମ ଘରେ ପଣ୍ଡିତ ଗୋଦାବରୀଶ ମିଶ୍ର, ବନମାଳୀ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ବହୁବାର ଆଲୋଚନା କରିବାର ମନେପଡ଼ୁଚି ଟିକିଏ ଟିକିଏ ।

୧୯୪୭ ମସିହା । ଭାରତ ସ୍ୱାଧୀନତାର ଦ୍ୱାରଦେଶରେ । ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସଭାପତି ନିର୍ବାଚିତ ହୁଅନ୍ତି ଦୀନବନ୍ଧୁ ବେହେରା ସର୍ବସମ୍ମତିକ୍ରମେ । ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଯାଇଥାନ୍ତି ରସେଲକୋଣ୍ଡା (ଭଞ୍ଜନଗର) ବିରାଟ ସାଧାରଣ ସଭା । ସଭା ଶେଷରେ କାହାରି କିଛି ପଚାରିବାର ବା କହିବାର ଅଛିକି ବୋଲି ମହତାବବାବୁ କହିଲେ । ଦୀନବନ୍ଧୁବାବୁ ଉପସ୍ଥିତ ଏବଂ ସଭାପତି । ମୋର ମନେପଡ଼ୁଚି । ଠିକ୍ ମୋ ଆଗ ଧାଡ଼ିରେ ବସିଥିଲେ ମୋର ଶିକ୍ଷକ ସବରଜ୍ ଅଲ୍ଲୀ । ସେ ପ୍ରଶ୍ନ କଲେ ଇଂରାଜୀରେ । What about the Pay Commission Report ? କ'ଣ ଉତ୍ତର ମିଳିଲା ମୋର ମନେ ନାହିଁ । ଠିକ୍ ପଛଧାଡ଼ିରେ ମୁଁ ବସିଥିଲି । ସାହସ ବଢ଼ିଗଲା । ଉଠି ଆମ ହାଇସ୍କୁଲର ବହୁ ଅସୁବିଧା କଥା କହିଲି । ମଞ୍ଚକୁ ଶୁଭିଲା ନାହିଁ ମୋ କଥା । ଦୀନବନ୍ଧୁବାବୁ ଡାକିଲେ ମୋତେ ସଭାମଞ୍ଚ ଉପରକୁ । ଗଲି, ଯାହା ମନକୁ ଆସିଲା କହିଲି । ହାଇସ୍କୁଲର ଘର ଦୁଆର ଇତ୍ୟାଦି । ମହତାବବାବୁ ଓ ଦୀନବନ୍ଧୁବାବୁ ସେଇଦିନ ସ୍କୁଲକୁ ଆସିଲେ ଏବଂ ଆଜି ଯେଉଁ ଦୁଇ ମହଲା କୋଠା ସେଠାରେ ଦଣ୍ଡାୟମାନ, ତାହା ସେଇ ଦିନର ପରିସ୍ଥିତିର ଫଳ ।

ଏକାଦଶ ଶ୍ରେଣୀର ଛାତ୍ର । କହିଦେଲି ସିନା ସଭାରେ । ଯାଏ କୁଆଡ଼େ ? ସ୍ୱାଧୀନତା ଆସୁଛି । ଠିକ୍ ସେତିକିବେଳେ ନୂତନ ପ୍ରଧାନମନ୍ତ୍ରୀ (ସେତେବେଳେ ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା)ଙ୍କୁ ପ୍ରଶ୍ନ, ପୁଣି ଏଇ ସ୍ୱଳ୍ପବୟସ୍କ ଛୁଆର ? କିଏସେ ବାଳକ ? ଯୁଆଡ଼େ ଗଲି ସମସ୍ତେ ଆଙ୍ଗିଠାରି, ନଚେତ ଅଙ୍ଗୁଳି ଦେଖାଇ ଦେଖାଇଲେ ମୋତେ । ତେଣେ ଦଳେ ଅଫିସର ଯାଇଁ ହାଜର ଆମ ଘରେ । ଯେମିତି କଣ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର ଧରା ପଡ଼ିଛି କି ଅଉ । ବାପାଙ୍କୁ କହି ଦିଆ ହେଲା । ଆଜି ସଭାରେ ତୁମ ପୁଅ ଗୁଣମଣି ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ଗଞ୍ଜାମ ଜିଲ୍ଲା ବୋର୍ଡ଼

ଚେୟାରମ୍ୟାନ୍‌ଙ୍କୁ ପ୍ରଶ୍ନ କରୁଛୁ । କଣ ହେବ କେଜାଣି ? ବାପା ଭୟ ପାଇଗଲେ ବେଶ୍ । ମୁଁ ଘରକୁ ସେ ପର୍ଯ୍ୟନ୍ତ ଫେରିନାହିଁ । ଦାଦାଙ୍କ କାନକୁ କଥାଟି ଗଲା । ସେ ହସି ଉଡ଼ାଇଦେଲେ । ହରେକୃଷ୍ଣ ମହତାବଙ୍କୁ ପ୍ରଶ୍ନ କରନ୍ତା ନାହିଁ କଣ ମୋକାଗୋଡ଼ା ଜଙ୍ଗଲର ବାଘକୁ ପ୍ରଶ୍ନ କରିଥାନ୍ତା ? ଦାଦା ଖୋଜିବାକୁ ଗଲେ ମୋତେ ଏବଂ ମୋତେ ସାଇକେଲରେ ବସାଇ ଯାଇ ସିଧା ହାଜର ଡାକ ବଙ୍ଗଳାରେ । ମହତାବ ବାବୁଙ୍କ ସହିତ କଲେଜ ଜୀବନର ପରିଚୟ । ମହତାବ ବାବୁ ଦୀନବନ୍ଧୁ ବାବୁ ମୋତେ ସାବାସ ଦେଲେ ଏବଂ ତା'ର କିଛିଦିନ ପରେ (ନାଁ ଠିକ୍ ପରଦିନ ମୋର ମନେ ନାହିଁ) ଦୀନବନ୍ଧୁ ବାବୁ ଆସି ସ୍କୁଲରେ ଏକ ସଭା କଲେ ଏବଂ ମୋର କଥା ମଧ୍ୟ ଉଲ୍ଲେଖ କଲେ ।

ଅନେକ ବର୍ଷ ବିତିଗଲାଣି । ବିଶେଷ କିଛି ମନେ ନାହିଁ । ତେବେ ଏଇ ଘଟଣା ମନେ ଅଛି ଏଇଥିପାଇଁ ଯେ ଏହା ପରଠାରୁ ଆମ ପ୍ରଧାନ ଶିକ୍ଷକ ସ୍ୱର୍ଗତ ଉଦୟସିଂହ ପଟ୍ଟନାୟକଙ୍କର ମୋ ପ୍ରତି ଧାରଣା ବଦଳିଗଲା । ଆଗରୁ ତାଙ୍କ ପୁଅ, ମୋର ସହପାଠୀ ବନ୍ଧୁ ସୁରସିଂହ (ବର୍ତ୍ତମାନ ଗୋପାଳପୁର ସମୁଦ୍ର ତଟରେ ବୌଦ୍ଧତ୍ୱ ଲାଭ ପାଇଁ ଉଦ୍ୟମ କରୁଛି) ଏବଂ ମୁଁ ଅନ୍ୟମାନଙ୍କ ସହ ମିଶି ଟେଷ୍ଟ ପରୀକ୍ଷାରେ ଅଟକ ପ୍ରଥା ଉଠାଇବା ଇତ୍ୟାଦି ଆନ୍ଦୋଳନରେ ଭାଗ ନେଇ ତାଙ୍କର ସ୍ନେହପୂର୍ଣ୍ଣ ଅସୂୟା ଲାଭ କରିଥିଲୁ । କିନ୍ତୁ ବର୍ତ୍ତମାନ ତାହା ବଦଳିଗଲା । ଗାନ୍ଧୀବାଦୀ ଉଦୟସିଂହ ଭାବିଲେ ଯେ ପିଲାଗୁଡ଼ାକ ଖାଲି ବାଳୁଙ୍ଗା ନାହାନ୍ତି, ବୃହତ୍ତର ସ୍ୱାର୍ଥ ପାଇଁ ମଧ୍ୟ ଲଢ଼ି ପାରନ୍ତି ।

ଦୀନବନ୍ଧୁ ବାବୁଙ୍କ ସହିତ ଏଇ ଯେଉଁ ସଖ୍ୟ ପ୍ରତିଷ୍ଠା ହେଲା, ତାହା ରହିଲା ବହୁ ଦିନ ପର୍ଯ୍ୟନ୍ତ । ଦୀନବନ୍ଧୁ ବାବୁ ବିଧାନସଭାକୁ ନିର୍ବାଚିତ ହେଲେ ଋଷେଲକୋଣ୍ଡା (ଭଞ୍ଜନଗର)ରୁ ଏବଂ ସେତେବେଳେ ବିଧାନସଭା ଥିଲା ରେଭେନ୍‌ସା କଲେଜ ହଲରେ । ବିଧାନସଭାର ସଭ୍ୟମାନେ କଲେଜ ଛକରେ ଯେଉଁଠି ଏବେ ଷ୍ଟେଟ ବ୍ୟାଙ୍କ ଅଫ ଇଣ୍ଡିଆର ଅଫିସ ହୋଇଛି, ସେଇଠି ରହୁଥିଲେ । ମୁଁ କଲେଜ ଆସି କଟକ ହୋଟେଲ ପାଖରେ ଏକ ଗ୍ରେଟିଆ ଗଳିରେ ଥିବା ଅଲୁଗୋଲ ମେସରେ ରହୁଥିଲି । ପ୍ରତିଦିନ ଦେଖାହୁଏ । ସେ ଓଡ଼ିଶା ଆସେମ୍ବ୍ଲି କଂଗ୍ରେସ ପାର୍ଟିର ସେକ୍ରେଟେରୀ ନିର୍ବାଚିତ ହୁଅନ୍ତି । ୧୯୪୬ରୁ ୧୯୫୨, ପୁଣି ୧୯୫୨ରୁ ୧୯୫୭ । ସେ ବିଧାନସଭାକୁ ନିର୍ବାଚିତ ହୁଅନ୍ତି ଭଂଜନଗର ନିର୍ବାଚନ ମଣ୍ଡଳୀରୁ ଏବଂ ଉଲ୍ଲେଖ କରିବାର କଥା ଉଭୟ ଡକ୍ଟର ମହତାବ ଏବଂ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ତାଙ୍କର ଏହି ପଦବୀ ବଜାୟ ରହେ । ନବବାବୁ ଓଡ଼ିଶାକୁ ଦାନ ଦେଲେ ଜିଲ୍ଲା ପରିଷଦ ଆଇନ । କ୍ଷମତା ବିକେନ୍ଦ୍ରୀ କରଣର ଆଦ୍ୟ ପଦକ୍ଷେପ । ଭାରତ ବର୍ଷରେ ପ୍ରଥମ । ସେ କଥା କେହି ମନେ ରଖିନାହାନ୍ତି । କାରଣ ପରେ, ବହୁବର୍ଷ ପରେ ଏଇଭଳି ପଦକ୍ଷେପ

ପାଇଁ ଅନ୍ୟମାନେ ପୁରସ୍କାର ଏବଂ ପ୍ରଶଂସା ପାଇଛନ୍ତି । ଇତିହାସର ଏହାହିଁ ହେଉଛି ନିଷ୍ଠୁର ପରିହାସ । ନୂଆକରି ଜିଲ୍ଲା ପରିଷଦ ଗଠନ ହୋଇଥାଏ । ବହୁତ ଦାୟିତ୍ୱ । ସେଥିପାଇଁ ବଛାଗଲେ ଲୋକ । ଦୀନବନ୍ଧୁ ବାବୁ ହେଲେ ଗଂଜାମ ଜିଲ୍ଲା ପରିଷଦର ଚେୟାରମ୍ୟାନ । ୧୯୬୧.ରୁ ୧୯୬୭, ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେ ପୁଣି ନିର୍ବାଚିତ ହେଲେ ଭଂଜନଗରରୁ ଓଡ଼ିଶା ବିଧାନସଭାକୁ । ୧୯୬୧ ରୁ ୧୯୬୭ ।

ସମୟର ପରିବର୍ତ୍ତନ ଘଟୁଥିଲା । ରାଜନୀତି ସେବା ପରିବର୍ତ୍ତିରେ ଜୀବିକାରେ ପରିଣତ ହୋଇ ଯାଉଥିଲା ଦ୍ରୁତ ଗତିରେ । ରାଜନୀତିର ସେୟାର ମାର୍କେଟରେ ବ୍ୟବସାୟ କରିବା ଆଉ ପୁରୁଣାକାଳିଆ ଲୋକମାନଙ୍କୁ ପୋଷାଇଲା ନାହିଁ ।

ଦୀନବନ୍ଧୁ ବାବୁ କେବଳ ରାଜନୀତି ଭିତରେ ଆପଣାର କାର୍ଯ୍ୟକୁ ସୀମିତ କରି ରଖିନଥିଲେ । ବହୁ ବିଭାଗକୁ ଏହା ପରିବ୍ୟାପ୍ତ ହୋଇଥିଲା । ଶ୍ରୀବତ୍ସ ଗୋରକ୍ଷା ଆଶ୍ରମ (ତନରଡ଼ା) ଠାରୁ ଖଦୀ ଏବଂ ଗ୍ରାମୋଦ୍ୟୋଗ ଶିଳ୍ପ ପର୍ଯ୍ୟନ୍ତ ବହୁ ବିଭାଗକୁ ସେ ସ୍ପର୍ଶ କରିଥିଲେ । ମୁଜାଗଡ଼, କୁଲାଡ, ବେଲଗୁଣ୍ଠା, ଗାଲେରୀ, ଜଗନ୍ନାଥ ପ୍ରସାଦ, କେନ୍ଦୁପଦା, ନେଟେଙ୍ଗା, ତନରଡ଼ାରେ ହାଇସ୍କୁଲ ତାଙ୍କର ଉଦ୍ୟମରେ ହୋଇଥିଲା । ଭଂଜନଗରରେ କଲେଜ ପ୍ରତିଷ୍ଠା ପାଇଁ ତାଙ୍କର ଦାନ ମଧ୍ୟ ପ୍ରଭୂତ । କୌଣସି ହାଇସ୍କୁଲ ମ୍ୟାନେଜିଙ୍ଗ କମିଟିରେ ଗଣ୍ଡଗୋଳ ବାଡ଼ିଆପିଟା ହୋଇ ନାହିଁ । ଆଜିକାଲି ଗୋଟିଏ ସ୍କୁଲ ମାନେ ଗାଁ ଦୁଇଭାଗ, ବାଡ଼ିଆପିଟା, ଠେଙ୍ଗା ଭୁଜାଲି ଏବଂ ହାତବୋମା । ସ୍କୁଲ ପ୍ରତିଷ୍ଠା ଆଉ ଏକ ବେଉସା । ସେମିତି କିଛି ହୋଇନାହିଁ ।

ଦୀନବନ୍ଧୁ ବାବୁ ଅନେଇ ଦେଖୁଥିଲେ ପଛକୁ ବିନା ଅନୁଶୋଚନାରେ । ଗଂଜାମ ଜିଲ୍ଲା କଂଗ୍ରେସ କମିଟିର ସେ ବହୁ ବର୍ଷ ସମ୍ପାଦକ । ସଭାପତି ଶ୍ରୀ ବିଶ୍ୱନାଥ ଦାସ । ପୁଣି ଦୀନବନ୍ଧୁ ବାବୁ ସଭାପତି ବହୁ ବର୍ଷ ଧରି । ଓଡ଼ିଶାର ତିନି ମହାରଥୀ ଶ୍ରୀ ବିଶ୍ୱନାଥ ଦାସ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ସହଯୋଗିତ୍ୱ ସେ ଲାଭ କରିଛନ୍ତି । ଲମ୍ବା ଲମ୍ବା ଛାଇ ପଡ଼ିଲାଣି । ଜୀବନର ଅପରାହ୍ଣ ଉପସ୍ଥିତ । ଯେ କୌଣସି ମୁହୂର୍ତ୍ତରେ ସନ୍ଧ୍ୟା ଆସିଯାଇପାରେ । ଆୟୁ, କର୍ମମୟ ଜୀବନ । ଦିନେ ତ ବିଶ୍ରାମ ନେବାକୁ ହେବ ।

ସେଇ ବିଶ୍ରାମର ସମୟ ଆସିଗଲା । ସମସ୍ତେ ଯିବେ । କେହି ରହିବେ ନାହିଁ । ସମୟର ବାଲୁକାରେ ଯାହାର ପାଦ ଯେତିକି ଜୁଳୁ ଜୁଳୁ ରହିଥିବ ତାହାର ଜୀବନ ତ ସାର୍ଥକ । ଦୀନବନ୍ଧୁ ବେହେରା ସ୍ମୃତ ହୋଇ ରହିବେ ବହୁକାଳ ଧରି ।

□

# ଜାତସ୍ୟ ହି ଧ୍ରୁବ ମୃତ୍ୟୁ

ଜନ୍ମିଲେ ମରଣ ସତ୍ୟ । କିନ୍ତୁ ଏତେ ଶୀଘ୍ର, ଏତେ ଅଚାନକ କାହିଁକି ? ପାଠ ପଢ଼ୁଥିଲେ ଆମର ସମୟରେ । ଭଲ ବି ପଢ଼ୁଥିଲେ । ନିଜର ବୌଦ୍ଧିକ ସହକର୍ମୀ ରେଖାଙ୍କୁ ସହଧର୍ମିଣୀ ଭାବରେ ବାଛିଥିଲେ । ଟେନସନ ଭିତରକୁ ଯିବେ ନାହିଁ ବୋଲି ଅଧ୍ୟାପନାକୁ ବୃତ୍ତି କରିଥିଲେ । ସେଇ ଥିଲା ପେଶା, ସେଇଥିଲା ନିଶା । ବ୍ୟସନ କିଛି ନ ଥିଲା । ମାଦକ ଦ୍ରବ୍ୟ ଛୁଇଁ ନଥିଲେ । କେବଳ ପାନ ଖାଇବା ଥିଲା ସଉକ । ପ୍ରିନ୍‌ସିପାଲ ପଦବୀ ବିଶେଷତଃ ଖ୍ରୀଷ୍ଟ କଲେଜର ଅଧ୍ୟକ୍ଷ ପଦବୀର ଟେନସନ ଯୋଗୁଁ ତାକୁ ବି ଛାଡ଼ିଲେ ପରିଶେଷରେ । ଝିଅ ବିଭା ସରିଥିଲା । ନାତି ଆଣି ଦେଇଥିଲା ତୃପ୍ତି ଦୁଇଜଣଙ୍କ ପାଇଁ । ପୁଅ ବିଭା ସରିଥିଲା । ଉଚ୍ଚଶିକ୍ଷା ପାଇଁ ପୁଅକୁ ପଠେଇଥିଲେ ଆମେରିକା । ବୋହୂର ବିଛଣା ବାନ୍ଧି ସାରିଥିଲେ ଆମେରିକା ପଠେଇବା ପାଇଁ । ସ୍ୱାମୀ ସ୍ତ୍ରୀ ସ୍ୱପ୍ନ ଦେଖୁଥିଲେ, ଦୁହେଁ କିଛି ଦିନ ପରେ ଯାଇ ଆମେରିକା ବୁଲି ଆସିବେ । ବହିଲେଖା ଅଧା ହୋଇଥିଲା ।

ହଠାତ୍ ଦୋଳ ପୂର୍ଣ୍ଣିମା । ଅବିର ଖେଳିବେ ଠାକୁର । ମାତ୍ର ଅଳ୍ପ ସମୟ [illegible]ଙ୍କ ଛାତିରେ ଯନ୍ତ୍ରଣା । ତା'ପରେ ସବୁ ଶେଷ । ଶ୍ମଶାନରେ ଚିତା ଜଳୁଛି । ସମସ୍ତେ ଘେରି ବସିଛନ୍ତି ରେଖାଦେବୀଙ୍କୁ । ଅଧ୍ୟାପକ, ଲେଖକ, ବନ୍ଧୁ, ସହପାଠୀ, ଛାତ୍ର, ଆକାଶବାଣୀ, ଦୂରଦର୍ଶନର ଷ୍ଟାଫ, ସମସ୍ତଙ୍କର ଭିଡ଼ । ସାନ୍ତ୍ୱନା ଦେବାପାଇଁ କାହାରି ଭାଷା ନାହିଁ । ସମସ୍ତେ ନୀରବ । ଭାଷାରେ ତ ସମବେଦନା ଦିଆଯାଇ ପାରେନା । ମହାକାଳ ସମୟ ହିଁ ସର୍ବଦୁଃଖହର ।

ସମସ୍ତେ ହେଜୁଛନ୍ତି । ଭଲ ମଣିଷଟିଏ । ସାହିତ୍ୟ ଥିଲା ଏକମାତ୍ର ପେଶା ଆଉ ନିଶା । ପୃଷ୍ଠା ଓଲଟି ପଡ଼ିଛି । ଲେଖା ରହିଯାଇଛି ଅଧାରେ । ସେ ବହି ଅଧାରେ ରହିଯିବ, ଲେଖା ରହିଯିବ ମଧ୍ୟ ଅଧାରେ । ରେଖାଦେବୀ କଇଁ କଇଁ କାନ୍ଦୁଛନ୍ତି । ବୁକୁଫଟା କାନ୍ଦଣା । ସମସ୍ତେ ଆଖିରୁ ଲୁହ ପୋଛୁଛନ୍ତି । ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଆଉ ନାହାନ୍ତି । ବିଶ୍ୱାସ ହେଉ ନାହିଁ । ମୃତ୍ୟୁ ତ ଚିର ରହସ୍ୟମୟ । ମନେ ହେଉଛି ସେ ଯେମିତି ଅଛନ୍ତି । ଏଇ ଫେରି ଆସିବେ, କୁଆଡ଼େ ଯାଇଛନ୍ତି । ଏଇମିତି ସେ ରହିବେ ଚିରଦିନ ବନ୍ଧୁ ବାନ୍ଧବଙ୍କର ସ୍ମୃତିପଟ୍ଟରେ । ସେ ହସ ହସ ମୁହଁ ଯେମିତି ରହିଯିବ ମାନସପଟ୍ଟରେ, ଲୁହବୋଳା ସ୍ମୃତିର ପସରା ହୋଇ ।

□

# ହାତୀ ଗୁମ୍ଫାର ଆଖିରେ
# ଚୋପାଏ ଲୁହ

ପିଲାଦିନେ ପଢ଼ିଥିଲି ରାଜକିଶୋର ରାୟଙ୍କର ଗଳ୍ପ 'କଳିଙ୍ଗ ଶିଳ୍ପୀ' । ସେ ଥିଲେ ମୋର କ୍ଲାସ ଶିକ୍ଷକ । ସେ ଗଳ୍ପର ଶେଷ ଧାଡ଼ିଟି ଏଇପରି ଥିଲା ପରି ମନେ ପଡୁଛି । ଖଣ୍ଡଗିରିର ଗୁମ୍ଫାର ପାଷାଣର ଗୁଳ୍ମରେ ଲିଖିତ । ଯୋଗୀଙ୍କ ପାଇଁ ଉଦ୍ଦିଷ୍ଟ ଶୁକପକ୍ଷୀ ଶିଳ୍ପ କଳିଙ୍ଗର ରାଜା ବସ୍ତୁଭୂମାଙ୍କ ଉପହାର ଦିଅ ।

ଆଜି ସେଇ ଖଣ୍ଡଗିରିର ହାତୀଗୁମ୍ଫାର ପାଷାଣ ଦେହରେ ଦେଖା ଦେଉଛି ଚୋପାଏ ଲୁହ । କେତେ ନାଟକ, କେତେ କାହାଣୀ । କେତେ ନାରୀର ପାଦର ସ୍ପର୍ଶରେ ଏଇ ପଥର ରୋମାଞ୍ଚିତ ହୋଇଛି । କେତେ ବୀରର ଧନୁର ଟଙ୍କାରରେ ପ୍ରକମ୍ପିତ ହୋଇଛି ଏହାର ବୁକୁ । କିନ୍ତୁ କେହିତ ଏଇ ହାତୀ ଗୁମ୍ଫାର କାହାଣୀ କହି ନାହାନ୍ତି । ଯିଏ କହିଥିଲା, ଯିଏ ଆବିଷ୍କାର କରିଥିଲା ଏଇ ପ୍ରସ୍ତର ଗୁମ୍ଫାର ଗୁମାନ, ସେଇ ଶିଳ୍ପୀ ଆଜି ଆଖି ମୁଦି ଦେଇଛି ।

ଧୀରେନ୍ ଦାସ ଜନ୍ମ ହୋଇଥିଲେ ଅନୁଗୋଳର ଅମଲାପଡ଼ାରେ । ପିତା ଭାଗିରଥୀ ଦାସଙ୍କର ପ୍ରତିଭାରୁ ଷ୍ଟର ପୁଅଙ୍କ ମଧ୍ୟରୁ ତିନି ପୁଅ କିଛି କିଛି ପାଇଥିଲେ ଉତ୍ତରାଧିକାର ସୂତ୍ରରେ । ଦେବ, ଧୀରେନ ଏବଂ ରବି । ଧୀରେନ ବାବୁଙ୍କର ବଡ଼ଭାଇ ହେଉଛନ୍ତି ଦେବ ମହାପାତ୍ର । ( ପୁଅ ହୋଇଯାଇଥିବାରୁ ସେ ମହାପାତ୍ର ନାମରେ ପରିଚିତ) କୁକ୍କୁମ ପତ୍ରିକାର ସଂପାଦକ, ହାସ୍ୟରସାତ୍ମକ ଲେଖା, ଷ୍ଟେଜ୍ କ୍ରାଫ୍ଟରେ କୁଶଳତା ତଥା ଶିଳ୍ପୀ ଭାବରେ ସେ ଏକଦା ଓଡ଼ିଶାରେ ପରିଚିତ ଥିଲେ ବେଶ୍ । ସେ ନେଇ ଯାଇଥିଲେ ଧୀରେନ୍ ଦା'ଙ୍କୁ ବମ୍ବେକୁ କୁକ୍କୁମ ପତ୍ରିକାରେ ସାହାଯ୍ୟ କରିବା ପାଇଁ ଏବଂ ଧୀରେନ୍ ଦାସଙ୍କ ପ୍ରତିଭା ସେଇଠି ବିକଶିତ ହୁଏ । ଦୁର୍ଘଟଣା ଅନେକ ସମୟରେ ଇତିହାସ ସୃଷ୍ଟି କରେ । ଧୀରେନ୍ ଦାସ ବମ୍ବେରୁ ଫେରି ଆସନ୍ତି ଓଡ଼ିଶାକୁ, ଓଡ଼ିଶାର ଲୁପ୍ତ ସାଂସ୍କୃତିକ ଐତିହ୍ୟର ପୁନରୁଦ୍ଧାର ପାଇଁ । ଏହାକୁ ପରିଚିତ କରାଇବା ପାଇଁ ଜାତୀୟ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ।

ଆରମ୍ଭ ହୁଏ କାର୍ଯ୍ୟ । ରାଜପଥ, ମୁକ୍ତାକାଶ ହେଉଛି ତାଙ୍କର ଷ୍ଟେଜ । ବୈଷ୍ଣବ ପାଣିଙ୍କର ଗୀତିନାଟ୍ୟ, ଓଡ଼ିଶାର ପାଲା, ଓଡ଼ିଶାର ଲୋକସଂସ୍କୃତି ହେଉଛି ତାଙ୍କର ଆଧାର । ପାଗଳ ନାଁ କ'ଣ ? ହଁ, ସେ ଟିକିଏ ପାଗଳ ହୋଇଯାଇଥିଲେ ନିଶ୍ଚୟ । ଏତେ ବଡ଼ ସଂସ୍କୃତି ରହିଯିବ ଲୋକଲୋଚନର ଅଗୋଚରରେ, ଏହା ତାଙ୍କର ଅସହ୍ୟ ହେଲା । ବହୁ ନିନ୍ଦା, ଗାଳି ଗୋଡ଼ଣା ତାଙ୍କୁ ଭୋଗ କରିବାକୁ ପଡୁଛି ।

ସେ ବ୍ୟଥିତ ହୋଇଛନ୍ତି, ଅଭିଯୋଗ କରିଛନ୍ତି ; କିନ୍ତୁ କ୍ଷାନ୍ତ ହୋଇ ନାହାନ୍ତି ମୃତ୍ୟୁ ପର୍ଯ୍ୟନ୍ତ ।

ଖଣ୍ଡଗିରି ପାହାଡ଼ର ହାତୀଗୁମ୍ଫା । ଏହାର ଶିଳାଲେଖ ବହୁ ଗବେଷକଙ୍କୁ ଆକୃଷ୍ଟ କରିଛି । ବହୁ ମୁଣ୍ଡ ଖେଳିଛି ଏହାକୁ ଡ଼ିସଇଫେର କରିବା ପାଇଁ । କିନ୍ତୁ ଏହି ହାତୀଗୁମ୍ଫା କ'ଣ ? କଣ ଥିଲା ଏହା ? ଧୀରେନ୍ ଦାସ ହିଁ ପ୍ରଥମେ ଥୋଇଲେ ଏଇ ପ୍ରସ୍ତାବନା । ଏହା ଥିଲା ଏକ ରଙ୍ଗମଞ୍ଚ ବା ପ୍ରେକ୍ଷାଳୟ । ସେ ଖୋଜିଲେ ପୋଥି ପରେ ପୋଥି । ମାପଚୁପ କଲେ । ଲମ୍ବ ଚଉଡ଼ା । ହାତୀଗୁମ୍ଫା ଉପରେ ଏକ ନୂତନ ଆଲୋକପାତ ।

ତା' ପରେ ଯାତ୍ରା । ଯାତ୍ରା, ଯାହା ଥିଏଟର ଯାତଗ୍ର ସବୁ ସେଇଆ । ସବୁ ଲୋକ ସଂସ୍କୃତିର ମୂଳ ସମାନ । ସେଇ ଶବ୍ଦ, ସେଇ ଅଭିବ୍ୟକ୍ତି, ସେଇ ସୁର, ସେଇ ଧ୍ୱନି । ଧୀରେନ୍ ଦା' କହିଯାଉଥିଲନ୍ତି ଅନର୍ଗଳ । ଗ୍ରୀକ୍ , ରୋମାନ, ରୁଷ, ଫ୍ରେଞ୍ଚ ଲୋକ-ସଂସ୍କୃତିର ଅଦ୍ୟ ଉତ୍ସ ସମାନ ।

ଆମର ଯାତ୍ରା, ଆମର ପାଲା, ଆମର ଦାସକାଠିଆ କେବଳ ପୁରାତନ ନୁହେଁ, ଉନ୍ନତ ମଧ୍ୟ । ଧୀରେନ ଦା' ବାଲିଯାତ୍ରା ସମ୍ବନ୍ଧରେ ଗୀତନାଟ୍ୟ ପରିବେଷଣ କରନ୍ତି ସଂସ୍କୃତି ବିହାରର ବ୍ୟାନରରେ । ସଂସ୍କୃତି ବିହାରର ଅବଦାନ ଅପରିସୀମ । କଟକର ଏକଦା ପ୍ରସିଦ୍ଧ ଏବଂ ଅଧୁନାଲୁପ୍ତ ଯାତ୍ରାକୁ ସେମାନେ ଆଣିଲେ ପୁଣି ଜନ ସମ୍ମୁଖକୁ । ଧୀରେନ୍ ଦା' ସଙ୍ଗଠିତ କରନ୍ତି ଏଇ ଗୀତନାଟ୍ୟକୁ । ଲୋକସଂସ୍କୃତିର ଗବେଷକ । ବାରବାଟୀ ଖାଇର ପାଣିରେ ପ୍ରତିଫଳିତ ହେଉଛି ଆରପଟର ଗୀତ-ନାଟ୍ୟ । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଦେଖୁଛନ୍ତି ନାଟକ । ଘୁଷୁରି ପାଟରି ଭାଜି ପଡ଼ୁଛି । ସବୁ ସୁର, ସବୁ ଧ୍ୱନି ସମାନ ।

ଧୀରେନ୍ ଦା' ଆସନ୍ତି । ଆବୃତ୍ତି କରନ୍ତି ବୈଷ୍ଣବ ପାଣିଙ୍କ ନାଟକରୁ । ନିଜେ ତନ୍ମୟ ହୋଇ ଯାଆନ୍ତି ଏବଂ ଶ୍ରୋତାଙ୍କୁ ମଧ୍ୟ ତନ୍ମୟ କରନ୍ତି ।

ଅନେକ ଅଭିଯୋଗ ତାଙ୍କର । ଦୀର୍ଘ ଅଭିଯୋଗ । ଏଇ ଜାତି, ଏଇ ଦେଶ ବିରୁଦ୍ଧରେ । ଆଜି ଲୁହ ଝରୁଛି, କୋହ ଉଠୁଛି । ଏକ ବିରାଟ ଶୂନ୍ୟତା ପୂରଣ କରିବା ପାଇଁ ଲୋକ ଆଖିରେ ପଡୁନାହାନ୍ତି । କିନ୍ତୁ ଜୀବଦ୍ଦଶାରେ ଧୀରେନ୍ ଦା'ଙ୍କୁ ଟିକିଏ ଉତ୍ସାହ ମିଳିଥିଲେ କେତେ କଥା ହୋଇଥାନ୍ତା ।

ତା' ହେଲା ନାହିଁ । ଇମିତି ଅନ୍ୟମାନଙ୍କର ଭାଗ୍ୟରେ ନଘଟୁ ଏଇ ଚେତାବନୀ ଧୀରେନ୍ ଦା' ଆମକୁ ଦେଇ ଯାଇଛି । ତାର ସେଇ ବଜ୍ରଗମ୍ଭୀର ନିର୍ଦ୍ଦେଶନା ଏଇ ଜାତି ପାଇଁ ଧ୍ୱନିତ ହୋଇଛି ।



# ଅନନ୍ୟ ମଣିଷ

ଶ୍ରୀ ନବକୃଷ୍ଣ ଚୌଧୁରୀ ଆମ ଦେଶର ଇତିହାସରେ ଏକ ବିସ୍ମୃତ ଚରିତ୍ର । ମୃତ୍ୟୁର ଅନେକ ବର୍ଷ ପରେ ଡକ୍ଟର ବୈଦ୍ୟନାଥ ମିଶ୍ରଙ୍କର ଉଦ୍ୟମରେ ପ୍ରତିଷ୍ଠିତ ସାମାଜିକ ବିଜ୍ଞାନ ଇନ୍‌ଷ୍ଟିଚ୍ୟୁଟ୍‌କୁ ନବବାବୁଙ୍କ ନାମରେ ନାମିତ କରାଯାଇଛି । ଏହାଛଡ଼ା ତାଙ୍କର ସ୍ମୃତିରକ୍ଷା ପାଇଁ ଆଉ କିଛି ହୋଇ ନାହିଁ । ଏଥିପାଇଁ ଅବଶ୍ୟ ନବବାବୁ ନିଜେ କିଛି ପରିମାଣରେ ଦାୟୀ । ବୟସ ବଢ଼ିବା ସହିତ ନବବାବୁ ଯେତିକି ସାଲସୱାନ ବିପ୍ଳବୀ ହେବାକୁ ଲାଗିଲେ ସେତିକି ସିନିକ୍ ମଧ୍ୟ ହେବାକୁ ଲାଗିଲେ । ଆମ ଦେଶର ରାଜନୀତିଜ୍ଞମାନେ ପ୍ରାୟତଃ କମ୍ ପଢ଼ନ୍ତି । କାରଣ ସେଥିପାଇଁ ସେମାନଙ୍କର ସମୟ ନଥାଏ । କିନ୍ତୁ ନବବାବୁ ତାର ଏକ ବ୍ୟତିକ୍ରମ । ମୃତ୍ୟୁ ପର୍ଯ୍ୟନ୍ତ ସେ ପଢ଼ୁଥିଲେ ଠିକ୍ ସ୍କୁଲ ପିଲାଙ୍କ ଭଳି । ପାଖରେ ଡିକ୍‌ସନାରୀ ନିଶ୍ଚୟ ଥିବ । ଏକ ଧାରୁଆ ପେନ୍‌ସିଲ ହାତରେ ଧରିଥିବେ, ପଢ଼ୁଥିବେ, ଗାର ଦେଉଥିବେ, ଶବ୍ଦର ଅର୍ଥ ପାଇଁ ଡିକ୍‌ସନାରି ଦେଖୁଥିବେ । ପଢ଼ିସାରି ପରିଶେଷରେ ମନ୍ତବ୍ୟ ମଧ୍ୟ ଲେଖିଥିବେ ବହି ଉପରେ । ମୋର ମନେ ପଡ଼ୁଛି । ତାଙ୍କଠାରୁ ଟ୍ରଟସ୍କିଙ୍କର ଏକ ପୁସ୍ତକ ମୁଁ ମାଗି ଆଣିଥିଲି ପଢ଼ିବା ପାଇଁ । ଛଅ ଭଲ୍ୟୁମ୍‌ର ବହି । ପ୍ରାୟ ପାଞ୍ଚହଜାର ପୃଷ୍ଠା । ବହିର ପୃଷ୍ଠା ଓଲଟାଇ ମୁଁ ସ୍ତମ୍ଭୀଭୂତ । ପ୍ରତ୍ୟେକ ପୃଷ୍ଠାରେ ପେନ୍‌ସିଲ ଦାଗ ଏବଂ ମନ୍ତବ୍ୟ । ପ୍ରତ୍ୟେକ ଭଲ୍ୟୁମ୍ ଶେଷରେ ପ୍ରାୟ ଏକ ପୃଷ୍ଠା ବ୍ୟାପୀ ମନ୍ତବ୍ୟ । ମୋତେ ଲାଗିଥିଲା ଦୁଇମାସରୁ ଊର୍ଦ୍ଧ୍ୱ କାଳ ସେ ବହି ଶେଷ କରିବାପାଇଁ, କି ବେଶୀ ମୋର ଏଇନା ହେଉ ହେଉନାହିଁ । କିନ୍ତୁ ବହି ଫେରାଇଲା ବେଳକୁ ମୋତେ ରୀତିମତ ଏକ ପରୀକ୍ଷା ଦେବାକୁ ପଡ଼ିଲା । ବାଜି ରାଉତ ଛାତ୍ରାବାସରେ ଦୁଇଦିନରୁ ଊର୍ଦ୍ଧ୍ୱକାଳ କଟିଗଲା ସେ ବହି ଉପରେ ଆଲୋଚନାରେ । ଅବଶ୍ୟ ବହି ଉପରେ ନୋଟ୍ ଦେଖି ମୁଁ ଆଗରୁ ପ୍ରସ୍ତୁତ ହୋଇ ଯାଇଥିଲି ଏମିତି ଏକ ପରୀକ୍ଷା ଆଶଙ୍କାରେ । ନବବାବୁ ପଢ଼ନ୍ତି । ପଢ଼ିବା ତାଙ୍କର ନିଶା । ପଢ଼ିଲାବେଳେ ସେ ବେଳେବେଳେ ବେଶ୍ କିଛି ସିଗାରେଟ୍ ମଧ୍ୟ ଟାଣନ୍ତି । ନବବାବୁ ମଧ୍ୟ ଏକ ପ୍ରଚଣ୍ଡ ଅନ୍-କନ୍‌ଭେନ୍‌ସନାଲ ମଣିଷ ଥିଲେ । ଗାନ୍ଧିବାଦୀ ଠିକ୍ । କିନ୍ତୁ ଗାନ୍ଧିବାଦର ଅନୁକରଣ କରିବାକୁ ସେ ପ୍ରସ୍ତୁତ ନୁହନ୍ତି । ସେ ନିରାମିଷାଶୀ ନୁହନ୍ତି ବା ସିଗାରେଟ୍ ଖାଇବା ମଧ୍ୟ ଛାଡ଼ି ନାହାନ୍ତି । ମୁଁ ଶୁଣିଛି ଯେ ଜୟପ୍ରକାଶ ମଧ୍ୟ ଏମିତି ଜଣେ ଗାନ୍ଧିବାଦୀ ଥିଲେ । ସେ ଲେଖିଲେ ଗାନ୍ଧିଜୀଙ୍କୁ । ମୁଁ ଓ୍ୱାର୍ଦ୍ଧା ଆଶ୍ରମରେ ରହିବି । ମୁଁ କିନ୍ତୁ ନିରାମିଷାଶୀ ନୁହେଁ । ମୁଁ ଆମିଷ ଖାଇବି । ଗାନ୍ଧିଜୀ ମଧ୍ୟ ତାଙ୍କଠାରୁ

ବେଶୀ ଚତୁର । ସେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ ସେଥିପାଇଁ । ନବବାବୁ ଏଇପରି ଜଣେ ଅନ୍-କନ୍‌ଭେନ୍‌ସନାଲ ଗାନ୍ଧିବାଦୀ । ତାଙ୍କ ଭଳି ବିଦ୍ୱାନ ଖୁବ୍ କମ୍, ରାଜନୀତିଜ୍ଞ-ମାନଙ୍କ ମଧ୍ୟରେ ତ ସେ ଏକ ସ୍ୱତନ୍ତ୍ର ଧାରାର ବ୍ୟକ୍ତି । କିନ୍ତୁ ସେ କିଛି ଲେଖିବାକୁ ନାରାଜ । ଏପରିକି ନିଜର ଆତ୍ମ-ଜୀବନୀ ଲେଖିବା ପାଇଁ ବହୁ ଅନୁରୋଧକୁ ସେ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି ସିଧାସଳଖ, ମୁହେଁ ମୁହେଁ । କାହିଁକି ଲେଖିବି, କ'ଣ ଦରକାର, କିଏ ପଢ଼ିବ, କ'ଣ ମୂଲ୍ୟ ତାହାର ? —ଏଇଭଳି ଠୋ ଠା ଉତ୍ତର ତାଙ୍କଠାରୁ ଶୁଣିବାକୁ ମିଳିଲା ଅନୁରୋଧକାରୀମାନଙ୍କୁ । ପୁଣି ସେଇ ଅନୁରୋଧକାରୀ-ମାନଙ୍କ ଭିତରେ ତାଙ୍କର ସହଯୋଗୀ ଯେତିକି ଥିଲେ, ତାଙ୍କର ରାଜନୈତିକ ବିରୋଧୀ ଲୋକମାନଙ୍କ ସଂଖ୍ୟା ଥିଲା ତା'ଠାରୁ ବେଶୀ ।

ନବବାବୁ କିଛି ଲିପିବଦ୍ଧ କରିଯାଇ ନାହାନ୍ତି । ବରଂ ବହୁ ମୂଲ୍ୟବାନ ଚିଠିପତ୍ରକୁ ସେ ଚିରି ବା ପୋଡ଼ି ଧ୍ୱଂସ କରିଦେଇ ଯାଇଛନ୍ତି । ସେ ସବୁ ଚିଠି ତାଙ୍କର ବ୍ୟକ୍ତିଗତ ଚିଠି । କିନ୍ତୁ ଏ ଜାତି ପାଇଁ, ଏ ଜାତିର ଇତିହାସ ପାଇଁ ତାହା ଥିଲା ଅତ୍ୟନ୍ତ ମୂଲ୍ୟବାନ । କିନ୍ତୁ ନବବାବୁ ଧୀରେ ଧୀରେ ଇମିତି ସିନିକ୍ ହୋଇଗଲେ ଯେ ସେ ସବୁ ଚିଠି ବା ଦଲିଲ ଅନ୍ୟ କାହାକୁ ଦେଲେ ନାହିଁ କି ରଖିଲେ ନାହିଁ । ଉତ୍ତର ପୁରୁଷ ଦରିଦ୍ର ହୋଇଗଲା ।

ନବବାବୁ ପଢ଼ନ୍ତି । ପଢ଼ନ୍ତି ସବୁ ବିଷୟରେ । ମୋର ମନେପଡ଼ୁଛି । ନବବାବୁ ଗିରଫ ହେଲେ "ଜରୁରୀ ପରିସ୍ଥିତି" ସମୟରେ । ବନମାଳୀ ପଟ୍ଟନାୟକ କଂଗ୍ରେସ ଦଳର ନେତା । ସେ ବ୍ୟଥିତ ହେଲେ, ବିଚଳିତ ହେଲେ ନବବାବୁ ପ୍ରଭୃତିଙ୍କ ଗିରଫ ସମ୍ବାଦ ଶୁଣି । ମୁଖ୍ୟମନ୍ତ୍ରୀଙ୍କୁ ସେ ଫୋନ୍ କଲେ । କହିଲେ ଯେ ମହତାବ ବାବୁ, ନବବାବୁ ତ ଗିରଫ ହେଲେ । ମହତାବବାବୁ ସବୁ ପରିସ୍ଥିତିକୁ ସମ୍ଭାଳି ନିବେ । ନବବାବୁ କିନ୍ତୁ ଭାରି ସେନ୍‌ସିଟିଭ୍ । ତାଙ୍କୁ ଯେଉଁଠି ରଖ, ଯେମିତି ରଖ, ତାଙ୍କୁ ତାଙ୍କର ଆବଶ୍ୟକତାନୁଯାୟୀ ବହି ଯୋଗାଇଦେବ ଏବଂ ଯୋଗାଇଦେବ କିଛି ସିଗାରେଟ୍ । ବହି ନ ପାଇଲେ ନବବାବୁ ପାଗଳ ହୋଇଯିବେ । ଏତିକି ତୁମକୁ ଅନୁରୋଧ । ବନମାଳୀ ପଟ୍ଟନାୟକ ମହତାବବାବୁଙ୍କର ବିଶ୍ୱସ୍ତ ଲୋକ ଥିଲେ । ନବବାବୁଙ୍କୁ ମୁଖ୍ୟମନ୍ତ୍ରୀତ୍ୱରୁ ବିଦାକରି ମହତାବବାବୁଙ୍କୁ ମୁଖ୍ୟମନ୍ତ୍ରୀ କରାଇବାରେ (1956) ତାଙ୍କର ଭୂମିକା ସମସ୍ତେ ଜାଣନ୍ତି । କିନ୍ତୁ ବ୍ୟକ୍ତିଗତ ସ୍ତରରେ ନବବାବୁଙ୍କ ପ୍ରତି ତାଙ୍କର ଦରଦ ଇମିତି ଥିଲା । ନବବାବୁ କିପରି ରାଜନୈତିକ ବାଦବିସମ୍ବାଦର ଊର୍ଦ୍ଧ୍ୱକୁ ଯାଇଥିଲେ ଏହା ତାହାର ଏକ ପ୍ରମାଣ ।

କଟକରେ ବିଜୁ ପଟ୍ଟନାୟକଙ୍କ ପୈତୃକ ବାସଭବନର ନାମ ହେଉଛି 'ଆନନ୍ଦ ଭବନ' । ତୁଳସୀପୁରରେ ଏହା ଅବସ୍ଥିତ । ଆନନ୍ଦ ଭବନର ଦୁଇଟି ଗେଟ୍ । ଗୋଟିଏ

ପଟରେ ଡାକ୍ତର ଜର୍ଜ ପଟ୍ଟନାୟକଙ୍କର (ସେ ଆଉ ନାହାନ୍ତି) ନାମ ଫଳକ ଏବଂ ଆଉ ଗୋଟିଏ ପଟରେ ଶ୍ରୀ ବିଜୁ ପଟ୍ଟନାୟକଙ୍କର ନାମ ଫଳକ । ଯାହା ପାଖକୁ ଯିବାର କଥା ସେଇ ଗେଟ୍ ଦେଇ ଯିବାକୁ ପଡ଼େ । ବିଜୁ ବାବୁଙ୍କ ପାଖକୁ ଯାଉଥିବା ବ୍ୟକ୍ତିମାନେ ଜର୍ଜ ବାବୁଙ୍କ ଗେଟ୍ ଦେଇ ଗଲେ ଜର୍ଜ ପଟ୍ଟନାୟକଙ୍କର ବାଘୁଆ ପାଟି ଶୁଣିବାକୁ ପଡ଼େ । ଜର୍ଜବାବୁ କହନ୍ତି—ସମସ୍ତଙ୍କୁ ପାଗଳ । ସମସ୍ତଙ୍କୁ ପାଟିକଲି । ମହତାବବାବୁଙ୍କ ପର୍ଯ୍ୟନ୍ତ । କିନ୍ତୁ ଜଣଙ୍କୁ ପାରିଲି ନାହିଁ । ସେ ହେଉଛନ୍ତି ନବବାବୁ । ସେ ନିଶ୍ଚୟ ଆମ ଗେଟ୍ ଦେଇ ଆସିବେ । କହିବେ ମୁଁ ଆସିଥିଲି ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଘରକୁ (ଜର୍ଜ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କ ବାପା) ବୋଝ୍, ନାତି, ନାତୁଣୀଙ୍କୁ ଦେଖିଯିବି । ଚା ଖାଇବେ । ବୋହୂ (ଜର୍ଜ ପଟ୍ଟନାୟକଙ୍କ ସ୍ତ୍ରୀ)ଙ୍କ ସାଙ୍ଗରେ, ପିଲାପିଲିଙ୍କ ସାଙ୍ଗରେ କଥାବାର୍ତ୍ତା ହେବେ । କିଛି ସମୟ ବିଶ୍ରାମ ନେବେ । ତା'ପରେ କହିବେ ଦେଖିଲି—ବିଜୁ ଅଛି କି ? ଆମ ସମସ୍ତିଙ୍କର ପାଟି ବନ୍ଦ । ସେ ହେଉଛନ୍ତି ନବକୃଷ୍ଣ ଚୌଧୁରୀ ।

ଜରୁରୀକାଳୀନ ପରିସ୍ଥିତିର ପରବର୍ତ୍ତୀ ସମୟ । ନିର୍ବାଚନ ଆଗରେ । ନନ୍ଦିନୀ ଦେବୀ କଂଗ୍ରେସ ଛାଡ଼ିଥାନ୍ତି । ସେଇ ସମୟର କଥା । ଟିକଟ ବଣ୍ଟାଯାଉଛି । ନବବାବୁଙ୍କର ସନ୍‌ସାଇନ୍ ପଢ଼ିଆ ପାଖ ଘରେ ଦେଖିବାକୁ ଭେଟ । ବିଶ୍ୱନାଥ ପଣ୍ଡିତ ପ୍ରଦ୍ୟୁମ୍ନ ବଳ ଏବଂ ମୁଁ । କୌଣସି ଏକ ବିଷୟ ନେଇ ନବବାବୁ ଫୋନ୍‌କଲେ ବିଜୁବାବୁଙ୍କୁ । ଫୋନ୍ ଚାଲିଲା ପ୍ରାୟ ଘଣ୍ଟାଏ କାଳ । ଆର ପଟରୁ ବିଜୁବାବୁ କ'ଣ କହୁଛନ୍ତି ଆମେ ଶୁଣିବା ସମ୍ଭବ ନୁହେଁ । ଏପଟରୁ କିନ୍ତୁ ନବବାବୁ ଯାହା କହୁଥାନ୍ତି ତାହା ଆମେ ସ୍ତବ୍ଧ ହୋଇ ଶୁଣୁଥାଉ । ଉଚ୍ଚବାଚ ପର୍ଯ୍ୟନ୍ତ କଥା ଗଲା । ନବବାବୁ ଭୀଷଣ ଗାଳିଦେଲେ ବିଜୁବାବୁଙ୍କୁ । ଏପରି କଠୋର କଥାସବୁ କହିଲେ ଯେଉଁଥିରୁ ମନେ ହେଲା ଯେ ସେ ଦୁହିଁଙ୍କ ମଧ୍ୟରେ ବୋଧହୁଏ ବହୁକାଳଧରି କଥାବାର୍ତ୍ତା ବି ହେବ ନାହିଁ । ଆମେ ସବୁ ଫେରିଲୁ ।

ତା'ପର ଦିନ ସକାଳୁ ମୋର କାହିଁକି ମନେ ହେଲା ଯାଇ ନବବାବୁଙ୍କୁ ଦେଖି ଆସିବି । ଗଲାବେଳେ ନବବାବୁ ବସିଛନ୍ତି ଏକ ତକ୍ତା ଉପରେ, ଆଉ ପାର୍ଶ୍ୱରେ ବିଜୁବାବୁ ବସିଛନ୍ତି ତଳେ । ଦୁହିଁଙ୍କ ଭିତରେ କଥାବାର୍ତ୍ତା ଚାଲିଛି ନିବିଡ଼ ଭାବରେ । ହସ ଖୁସି ଚାଲିଛି । ନୁମା (ମାଳତୀ ଦେବୀ) ଆଣି ଚା' ଦେଉଛନ୍ତି ଦୁହିଙ୍କଙ୍କୁ । ନବବାବୁ ବିଜୁବାବୁଙ୍କ ମୁଣ୍ଡ ପିଠିରେ କଣ ସବୁ କହି ଆଉଁସୁଥାଉଛନ୍ତି । କାଲି ଯେ ଦୁହିଙ୍କ ଭିତରେ ଇମିତି ଏକ ତୋଫାନ ହୋଇଯାଇଛି ତା'ର କୌଣସି ସୂଚନା ନାହିଁ । କାଲି କଥା କାଲିରେ ହିଁ ରହିଯାଇଛି । ଇମିତି ଏକ ମଣିଷ ନବବାବୁ ।

ଆମେ ସବୁ କଟକ ଜେଲରେ ବନ୍ଦୀ । ୧୯୪୯ ମସିହା । ଆମର ସ୍ଲୋଗାନ ହେଉଛି—ଏ ଆଜାଦୀ ଝୁଟା ହୈ । ସ୍ୱାଧୀନତା ନିରର୍ଥକ, ମିଥ୍ୟା । ନବବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଜେଲ ପରିଦର୍ଶନ କରିବାକୁ ଯାଉଥାନ୍ତି । ଆମେ ଓ୍ୱାର୍ଡ଼ ୧୫, ୧୬, ୧୭ରେ ତାଙ୍କୁ ଅପେକ୍ଷା କରିଚୁ । ସେ କିନ୍ତୁ ଗଲେ ନାହିଁ । ଡକାଇ ପଠାଇଲେ ମନମୋହନ ମିଶ୍ର ଏବଂ ରାମଚନ୍ଦ୍ର ମିଶ୍ରଙ୍କୁ (ରାମବାବୁ ଆଉ ନାହାନ୍ତି) । ମନମୋହନ ବାବୁ ପଚାରିଲେ ନବବାବୁଙ୍କୁ । ଆପଣ ଗଲେ ନାହିଁ । ଆମେ ସବୁ ଅପେକ୍ଷା କରିଥିଲୁ । ନବବାବୁ କହିଲେ, ଗଲି ନାହିଁ । ସେଇଠି ବୈଷ୍ଣବ (ପଟ୍ଟନାୟକ), ବନମାଳୀ (ଦାସ), ବ୍ରଜ (ପଟ୍ଟନାୟକ) ପ୍ରଭୃତି ଅଛନ୍ତି । ଲାଜ ମାଡ଼ିଲା । ନବବାବୁଙ୍କ ଆଖିରେ ଲୁହ ଦେଖିଲେ ମନମୋହନବାବୁ । ବନମାଳୀ ଦାସ, ବୈଷ୍ଣବ ପଟ୍ଟନାୟକ, ବ୍ରଜ ପଟ୍ଟନାୟକ ଗଡ଼ଜାତ ଆନ୍ଦୋଳନରେ ତାଙ୍କର ସହକର୍ମୀ ଥିଲେ । ଆଜି ସେମାନେ ହୁଏତ ଏକ ଭିନ୍ନ ଶିବିରରେ । କିନ୍ତୁ ଏକଦା ତ ସହଯୋଦ୍ଧୃତ୍ୱ ସେମାନଙ୍କ ଭିତରେ ମମତାର ବୀଜ ବପନ କରିଥିଲା ।

୧୯୫୬ ମସିହାର କଥା । ଏବେବି ସ୍ମୃତିପଟରେ ଝଲକୁଛି । ନବବାବୁ ମୁଖ୍ୟମନ୍ତ୍ରୀ ଭାବରେ ଯାଇଥାନ୍ତି ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ହୋଇ । ସେଇ ସନ୍ଧ୍ୟାରେ ନିଖିଳ ଭାରତ କଂଗ୍ରେସ କମିଟି ସୀମା କମିଶନର ସୁପାରିଶକୁ ଗ୍ରହଣ କରି ଦେବାର ନିଷ୍ପତ୍ତି କଲେ । ସରେଇକଲା-ଖରସୁଆଁ ଚାଲିଗଲା ବିହାରକୁ । ସିଂହଭୂମିର ଓଡ଼ିଶା ସହିତ ମିଶ୍ରଣ ତ ଦୂରର କଥା । ଆଗରୁ ଆମ ପାଖରେ ସୂଚନା ପହଞ୍ଚିଥିଲା ଯେ କଂଗ୍ରେସ ସୀମା କମିଶନର ପ୍ରସ୍ତାବକୁ ଗ୍ରହଣ କରି ନେଇପାରେ ଏବଂ ଆମେ, ଛାତ୍ରମାନେ ନିଷ୍ପତ୍ତି କରିଥିଲୁ ଯେ ଏହା ଯଦି ହୁଏ ତାହେଲେ ତୁରନ୍ତ ଆନ୍ଦୋଳନ ଆରମ୍ଭ କରିବାକୁ ହେବ, କାରଣ ଏହା ଏକ ଜାତୀୟ ଅପମାନ ହେବ । ମୁଁ ଏ ଖବର ପାଇବା ମୁହୂର୍ତ୍ତରେ ନବବାବୁଙ୍କୁ ଭେଟିବା ପାଇଁ ଏକ ଇଣ୍ଟରଭିଉ କାର୍ଡ ପଠାଇଲି । କାରଣ ନବବାବୁଙ୍କୁ ସିଧାସଳଖ ଭେଟିବାକୁ ତତ୍‌କାଳୀନ ପୂର୍ବ ଛାତ୍ରାବାସ ସୁପରିନ୍‌ଟେଣ୍ଡେଣ୍ଟ (ସେ ଆଉ ନାହାନ୍ତି) ଡରିଲେ । କାଳେ କଣ ହୋଇଯିବ । ନବବାବୁ ସ୍ଲିପ୍ ପାଇ ସାଙ୍ଗେ ସାଙ୍ଗେ ମୋତେ ଡାକଲେ ଏବଂ ସମ୍ବୋଧନ ଆରମ୍ଭ ହେଲା । କିଓ, ବିପ୍ଳବୀମାନେ କେବେଠାରୁ ଇଣ୍ଟରଭିଉ କାର୍ଡ ଦେଇ ଆସିବା ପାଇଁ ସ୍ଥିର କଲ । ତମ ବନ୍ଧୁ ବନ୍ଦ୍ୟୋପାଧ୍ୟାୟ, (ହରିଶ୍ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ, ତତ୍‌କାଳୀନ କଲେଜ ୟୁନିଅନ ସଭାପତି ଏବଂ ବର୍ତ୍ତମାନ ମନ୍ତ୍ରୀ) କୁଆଡ଼େ ଗଲେ ? ସେ ନାହାନ୍ତି କଟକରେ । ଶୁଣି କହିଲେ, ତମେମାନେ ଯାହା ପାରୁଚ କର । ଗୋଟାଏ କଥା ଆଖିବୁଜିଆ କାମ ନକଲେ ଏମାନେ (ଅର୍ଥାତ୍ କଂଗ୍ରେସ ନେତୃବୃନ୍ଦ) ଚେତିବେ ନାହିଁ । ଆମେ ସବୁ ଇସ୍ତଫା ଦେଉଛୁ । ଇସ୍ତଫାପତ୍ର ନେଇ ମୁଁ ଯାଉଚ

କାଲି ଦିଲ୍ଲୀ । ତମେମାନେ ଯାହା ପାରୁଚ ତୁରନ୍ତ କର । ମୁଁ ତାଙ୍କୁ କହିଲି, ଦେଖନ୍ତୁ, ସ୍ୱତନ୍ତ୍ର ଆନ୍ଦୋଳନର ଅନେକ ନେତା ଆଜି ନାହାନ୍ତି କଟକରେ । କେବଳ ଅଛନ୍ତି ସ୍ୱତନ୍ତ୍ର କଂଗ୍ରେସର ନେତା ଶ୍ରୀ ସନ୍ତୋଷ କୁମାର ସାହୁ । (ପୂର୍ବତନ ପାର୍ଲାମେଣ୍ଟ ସଭ୍ୟ) ଅଛନ୍ତି । କିନ୍ତୁ ସେଥିପାଇଁ ଚିନ୍ତା ନାହିଁ । ଆମେ ବର୍ତ୍ତମାନ ହିଁ ଅନିର୍ଦ୍ଦିଷ୍ଟକାଳ ଧର୍ମଘଟର ଡାକରା ଦେଲୁ । ଆପଣ କଣ କହୁଛନ୍ତି ? ନବବାବୁ ତାଙ୍କର ସ୍ୱଭାବସୁଲଭ ଭାଷାରେ କହିଲେ ବିପ୍ଳବ କଣ ଅନୁମତି ନେଇ କରାଯାଏ ? କେଉଁ ବିପ୍ଳବର ଇତିହାସରୁ ଏହା ଶିକ୍ଷା କଲ ବିପ୍ଳବୀ ? ନବବାବୁ ବିଚକ୍ଷଣ ମନୀଷ ।

ଧର୍ମଘଟ ଆରମ୍ଭ ହେଲା ସେଇ ରାତିରୁ । ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ (ସେ ଆଉ ନାହାନ୍ତି), ବିକାଶମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କୁ ଭେଟିବାକୁ ଏବଂ ସେମାନଙ୍କର ଇସ୍ତଫା ଦାବୀ କରିବାକୁ ଶହ ଶହ ଛାତ୍ର ଛୁଟିଲେ । ନବବାବୁ ଗଲେ ଦିଲ୍ଲୀ । କଟକରେ ରେଡ଼ିଓ ଷ୍ଟେସନ (ମଧୁପୁର ହାଉସ, ମଧୁସୂଦନ ମାର୍ଗ) ଘେରାଉ ହେଲା । ଗୁଳି ଚାଲିଲା । ସୁଶୀଲ ଦେ ଶହୀଦ ହେଲେ । ବିକ୍ଷୋଭକାରୀଙ୍କ ନେତୃତ୍ୱ ନେଲେ ଶ୍ରୀମତୀ ମାଳତୀ ଚୌଧୁରୀ । (ନବବାବୁଙ୍କ ପତ୍ନୀ) "ଏ ସରକାରର ମତିଭ୍ରମ ଘଟିଛି ।" ଏହି ଥିଲା ତାଙ୍କର ତେଜୋଦୀପ୍ତ ଉକ୍ତି । ନବବାବୁଙ୍କର ଅନ୍ତରଙ୍ଗ ବନ୍ଧୁ ଓ ନେତା ଜବାହାରଲାଲ ନେହେରୁ । ସେ ବୁଝାଇଦେଲେ ତାଙ୍କୁ ପ୍ରଦେଶ ଗଠନ ବଡ଼ ନାଁ ଜାତୀୟ ଐକ୍ୟ ବଡ଼ ? ରେଡ଼ିଓ ଷ୍ଟେସନ ଉପରେ "ଆକ୍ରମଣ"କୁ ସେମାନେ ଧରିନେଲେ ଯେ ଜାତୀୟ ବିରୋଧୀ ଶକ୍ତି ନିଶ୍ଚୟ ଏଥିରେ କାମ କରୁଛି ।

ନବବାବୁ ଆଦର୍ଶ ଏବଂ କର୍ମ ଭିତରେ ସବୁବେଳେ ଦୋଦୁଲ୍ୟମାନ । ତାଙ୍କର ସମଗ୍ର ଜୀବନ ହେଉଛି ଏଇ ଦୁଇ ଭିତରେ ବିବାଦର ପ୍ରତୀକ । ଆଦର୍ଶ ସହିତ କାର୍ଯ୍ୟର ସଂଘର୍ଷ ତାଙ୍କୁ ଅନେକ ସମୟରେ ଅସ୍ଥିର ଏବଂ ଛାସିଲେଟିଙ୍ଗ କରିଛି । ନବବାବୁ ଏହି ସଂଘର୍ଷର ଏକ ପ୍ରତିଛବି ।

୧୯୫୬ ମସିହା କେଉଁ ମାସ ହେବ ଠିକ୍ ମନେ ପଡ଼ୁନାହିଁ । ମୋ ନାଁରୁ ଓ୍ୱାରେଣ୍ଟ ଉଠିଯାଇଥାଏ କିନ୍ତୁ ମୋକଦମା ଚାଲିଥାଏ । ଦେଖିଲାମାତ୍ରେ ଗୁଳିକର ବା Shoot at sightର ଆଦେଶ ଉଠିଛି ମାତ୍ର । କଟକ ସହରର ମଙ୍ଗଳାବାଗରେ ପ୍ରଭାତ ମହାପାତ୍ର (୯ଜଷ୍ଟିସ ହରିହର ମହାପାତ୍ରଙ୍କ ପୁଅ) ଏକ ଆଧୁନିକ ବହି ଦୋକାନ ଖୋଲି ଥାଆନ୍ତି । ଅନେକ ନୂତନ ଧରଣର ବହି ଆଣନ୍ତି ସେ । ମୁଁ ସେଇଠାରୁ ପ୍ରସିଦ୍ଧ ବ୍ରିଟିଶ ସାମ୍ୟବାଦୀ ନେତା ଜନ୍ ଷ୍ଟ୍ରାଚିଙ୍କର ଖଣ୍ଡିଏ ବହି କିଣିଥାଏ ବହିର ନାଁ ହେଉଛି Contemporary Capitation । ବହିଟା ଖୁବ ଚିତ୍ତାକର୍ଷକ ହୋଇଥିବା ଯୋଗୁଁ ପୁରା ପଢ଼ି ଦେଇଥାଏ ରାତ୍ରୀକୁ । ହଷ୍ଟେଲରେ ଶୋଇଚି । ହଠାତ୍

କଏ ଜଣେ ଆସି କହିଲା ଜଣେ କଏ ଭଦ୍ରଲୋକ ଗାଡ଼ିରେ ବସିଛନ୍ତି । ମୋତେ ଖୋଜୁ-ଛନ୍ତି । ସେତେବେଳେ ମୋ ଭଳିଆ ଲୋକଙ୍କୁ ଗାଡ଼ିରେ ଆସି ଖୋଜିବା ଲୋକ ବହୁତ କମ୍ । ମୁଁ ତରତର ହୋଇ ଆସି ଦେଖିଲା ବେଳକୁ ଗାଡ଼ି ଭିତରେ ନବବାବୁ । ମୋ ହାଲୁକ ଶୁଖିଗଲା । ସୀମା ଆନ୍ଦୋଳନର ଉତ୍ତେଜନା କମି ନାହିଁ । ନବବାବୁ ମୁଖ୍ୟମନ୍ତ୍ରୀ । ଛାତ୍ରମାନେ ଦେଖିଲେ ଗୋଟାଏ ଗଣ୍ଡଗୋଳ ସୃଷ୍ଟପାତ ହୋଇ ଯାଇପାରେ । ନବବାବୁ କିନ୍ତୁ ନିର୍ଲିପ୍ତ ଭାବରେ ମୋତେ ନିର୍ଦ୍ଦେଶ ଦେଲେ ଗାଡ଼ିରେ ବସିବା ପାଇଁ । ଗାଡ଼ିରେ ବସିଲି । ସେ ନିର୍ଦ୍ଦେଶ ଦେଲେ ଡ୍ରାଇଭରକୁ । ଚାଲ କଲେଜ ଛକ । ସେଠାରେ ପହଞ୍ଚି ଡ୍ରାଇଭରକୁ ନିର୍ଦ୍ଦେଶ ଦିଆଗଲା ବଟୁ ଭାଇ ଗୁଜରାଟୀ ଗୁ ଜଲଖିଆ ଦୋକାନ ଆଗରେ ରଖିବା ପାଇଁ । ନବବାବୁ ଏବଂ ତାଙ୍କ ନିର୍ଦ୍ଦେଶରେ ମୁଁ ପଶିଲୁ ଦୋକାନରେ । ଦୋକାନୀ ନବବାବୁଙ୍କୁ ଦେଖି ଆଗ୍ରହ, ଆଶ୍ଚର୍ଯ୍ୟରେ ଚାହିଁଆଁ । ଖୋଦ୍ ମୁଖ୍ୟମନ୍ତ୍ରୀ ତାଙ୍କ ଦୋକାନରେ । ନବବାବୁ ବରାଦ ଦେଲେ କିଛି ଜଲଖିଆ ଆଉ ଚାହା ତିନିଜଣଙ୍କ ପାଇଁ । ସେ, ମୁଁ ଓ ଡ୍ରାଇଭର । ଦୋକାନୀ ପଇସା ନେବାକୁ ନାରାଜ । ନବବାବୁ ନଚ୍ଛୋଡ଼ବନ୍ଧା । ବାଧ୍ୟ ହୋଇ ସେ ପଇସା ନେଲେ । ଗାଡ଼ିକୁ ବରାଦ ଦିଆହେଲା ରେଭେନ୍‌ସା କଲେଜ ପଡ଼ିଆକୁ ଯିବାପାଇଁ । ପିଲ୍‌ଗ୍ରିମ ରୋଡ଼ ଦେଇ ଗାଡ଼ି ପୁରୁଣା ଧାଓ୍ୱାର ହାଉସ ବାଟରେ ପଡ଼ିଆ ମଝିରେ ପହଞ୍ଚିଲା । ସେଇଠି ଥିଲା ଏକ ସିମେଣ୍ଟ ବେଞ୍ଚ । (ଏବେ ଅଛି କି ନାହିଁ ଜାଣେ ନାହିଁ) । ନବବାବୁ ବସିଲେ ଏବଂ ମୋତେ ବସିବାକୁ କହିଲେ । ଏପର୍ଯ୍ୟନ୍ତ ଏହି ଉପକ୍ରମଣିକା କାହିଁକି ଜାଣିବା ମୋ ପକ୍ଷରେ ଅସମ୍ଭବ । ସେ ଆରମ୍ଭ କଲେ, ହଇହୋ ପଣ୍ଡିତେ ! ଜନ୍ ଷ୍ଟାଚିଙ୍କର ସେ ବହିରେ ଯେଉଁ ବିଶ୍ଳେଷଣ ଦିଆଯାଇଛି ତମେ ସେଥିରେ ଏକମତ ? ମୁଁ ପ୍ରଥମେ ସ୍ତମ୍ଭୀଭୂତ ହୋଇଗଲି । ନବବାବୁ କେମିତି ଜାଣିଲେ ମୋର ସେ ବହି କିଣା କଥା ? କ'ଣ ଆପଣଙ୍କର ସ୍ପେଶାଲ ବ୍ରାଞ୍ଚ ମୋ ପିଛାରେ ଏତେଦୂର ପର୍ଯ୍ୟନ୍ତ ଲାଗିଛି ନା କ'ଣ ? ନବବାବୁ ହସି ହସି କହିଲେ, ନାହିଁ ହୋ ! ଆମର ସ୍ପେଶାଲ ବ୍ରାଞ୍ଚ କ'ଣ ଏତେ ଏଫିସେଣ୍ଟ ହେଲାଣି ? ମୁଁ ଯାଇଥିଲି ପ୍ରଭାତ ମହାପାତ୍ରଙ୍କ ବହି ଦୋକାନକୁ । ସେ ବହି ଖଣ୍ଡିକ କିଣିଲାବେଳେ ପଚାରିଲି କ'ଣ ଏଇଟା ଆମର ଶେଷ କପି ? ପ୍ରଭାତ କହିଲା ସେ ନାହିଁ, ଦୁଇଟି କପି ଥିଲା । ଖଣ୍ଡିଏ କପି କାଲି ବିକ୍ରୀ ହୋଇଯାଇଛି, ଶେଷ ଖଣ୍ଡିକ ଆପଣ ନେଉଛନ୍ତି । କାଲି କପିଟି କଏ କିଣିଛି ବୋଲି ପଚାରିବାରୁ ସେ ତମ ନାଁ କହିଲା । ସେଇ ଯୋଗୁଁ ଭାବିଲି ତମ ସାଙ୍ଗରେ ଆଲୋଚନା ହେବା ଉଚିତ ବହି ବିଷୟରେ । ଚାଲିଲା ଆଲୋଚନା । ରାତି ହେଲା । ସେ ମୋତେ ହଷ୍ଟେଲରେ ଛାଡ଼ି ଦେଇଗଲେ ।

ଇମିତି ଏକ ଘଟଣା କଥା କହନ୍ତି ଡକ୍ଟର ବୈଦ୍ୟନାଥ ମିଶ୍ର । ସେ ଘରୁ ବିଶ୍ୱବିଦ୍ୟାଳୟକୁ ଗଲାବେଳେ ବାଟରେ ଗୋଟାଏ ଯାଗାରେ ରାସ୍ତା ଛାଡ଼ି ଚାଲିବାଟରେ

ଯାଆନ୍ତି ପାଖ ପଡ଼ିବ ବୋଲି । ଦିନେ ଗଳିବେଳକୁ ଦେଖିଲେ ନବବାବୁ ଠିଆ-ହୋଇଛନ୍ତି ସେହି ଚଲାବାଟରେ ବହି ଖଣ୍ଡିଏ ଧରି । ବୈଦ୍ୟନାଥ ବାବୁ ତାଙ୍କୁ ଦେଖି ଆଚମ୍ବିତ ହେଲେ । ଭାବିଲେ ବୋଧହୁଏ ଆଉ କାହାକୁ ଅପେକ୍ଷା କରିଛନ୍ତି । ଆଶ୍ଚର୍ଯ୍ୟ ହେଲେ ଯେତେବେଳେ ନବବାବୁ କହିଲେ ଯେ ସେ ତାଙ୍କୁ ହିଁ ଅପେକ୍ଷା କରିଛନ୍ତି । ଆପଣ କିମିତି ଜାଣିଲେ ଯେ ମୁଁ ଏଇ ଚଲାବାଟରେ ଯାଏ ବୋଲି ? ଆହୁରି ଆଶ୍ଚର୍ଯ୍ୟ ହେଲେ ଯେତେବେଳେ ସେ କହିଲେ ଯେ ସେ ଖବର ନେଇ ଜାଣିଛନ୍ତି ବୈଦ୍ୟନାଥ ବାବୁ ଏଇ ବାଟରେ ଠିକ୍ ଏତିକିବେଳେ ଘରୁ ଅଫିସ୍‌କୁ ଯାଆନ୍ତି ।

ଇମିତି ଅନେକ ଘଟଣା ହାରୁକା ମାରେ । ତାଙ୍କର ସଦାଶିବ ମିଶ୍ର ସମ୍ବଲପୁରରୁ ଫେରୁଥିଲେ କଟକ ଅନୁଗୋଳ ବାଟ ଦେଇ ଖଟୁଭାଇଙ୍କ (ଖଗାଉ ସୁନ୍ଦର ଦାସ) ସାଙ୍ଗରେ । ନବବାବୁ ଅସୁସ୍ଥ ହୋଇ ପଡ଼ିଛନ୍ତି । ଜୀବନର ସନ୍ଧ୍ୟା ଉପସ୍ଥିତ । ନବବାବୁ ଶୋଇ ରହିଛନ୍ତି । ସଦାଶିବ ବାବୁ ଭାବିଲେ ଯେ ଖଟୁଭାଇଙ୍କ ସହିତ ନବବାବୁଙ୍କ ପରିଚୟ କରାଇଦେବେ । ପରିଚୟ କରାଇବା ପୂର୍ବରୁ ନବବାବୁ ପଚାରିଲେ ଖଟୁଭାଇଙ୍କୁ, ଖଟୁଭାଇ କିମିତି ଅଛ ? ସମସ୍ତ ଅତିକାନ୍ତ ହୋଇଛି । କିନ୍ତୁ ପରିଚିତି ଭୁଲି ନାହାନ୍ତି ।

ନବବାବୁଙ୍କ ସହିତ ଥରେ ଆଲୋଚନା ପାଇଁ ଯାଇଥିଲେ ଶ୍ରୀ ଶରତ ପଟ୍ଟନାୟକ, କମ୍ୟୁନିଷ୍ଟ ପାର୍ଟିର ନେତା (ସେ ଆଉ ନାହାନ୍ତି) । ଦୁହେଁ ପୁରୁଣା ବନ୍ଧୁ ବହୁଦିନର । କିନ୍ତୁ ସେଦିନ କୌଣସି କାରଣରୁ ଦୁହିଁଙ୍କ ଭିତରେ କଜିଆ ହେଲା । ପାଟିତୁଣ୍ଡ, ଉଚ୍ଚବାଚ୍ଚ ପରେ ନବବାବୁ କହିଲେ ଶରତବାବୁଙ୍କୁ ଘରୁ ବାହାରିଯିବା ପାଇଁ । ଶରତ ବାବୁ ବାହାରିଯିବା ପାଇଁ ନାରାଜ । କଥାଟା ବେଶ୍ ଅପ୍ରୀତିକର ସ୍ତରକୁ ଯିବାକୁ ଲାଗିଲା । ଯାହାହେଉ ୱାରେନ ମିଶ୍ର ପ୍ରଭୃତି ପହଞ୍ଚି କଥାଟାକୁ ସ୍ୱେତକରେ ରଖି-ଦେଲେ । କିନ୍ତୁ ତା'ପରଦିନ ଶରତ ପଟ୍ଟନାୟକଙ୍କୁ ଆଚମ୍ବିତ କରି ହଠାତ୍ ନବବାବୁ ଡାକିଲେ, ଆସ ଚ'ଖାଇ ଯାଅ । ସତେ ଯେପରି କାଲି କିଛି ଘଟିନାହିଁ । ଏଇଭଳି ଏକ ବ୍ୟତିକ୍ରମର ମଣିଷ ଥିଲେ ନବବାବୁ ।

ନବବାବୁ ୧୯୫୧ରେ ମୁଖ୍ୟମନ୍ତ୍ରୀ । ସେଇ ବର୍ଷ ଜୁଲାଇ ମାସରେ ପ୍ରସିଦ୍ଧ କଲେଜ ଦରମା ବୃଦ୍ଧିବିରୋଧୀ ଛାତ୍ର ଆନ୍ଦୋଳନ ଦେଖାଦିଏ । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ଏକ ଗୁରୁତର ସଙ୍କଟ ଭିତରେ । କମ୍ୟୁନିଷ୍ଟ ପାର୍ଟିର ସବୁନେତା ଏବଂ ବହୁ କର୍ମୀ ଜେଲ ଭିତରେ । ଛାତ୍ର ଆନ୍ଦୋଳନର ନେତୃତ୍ୱ ସୋସାଲିଷ୍ଟ ପାର୍ଟିର ଛାତ୍ରନେତାମାନଙ୍କ ହାତରେ । କେବଳ ଛାତ୍ରସଂଘର ଅଖିଳ ମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ । ଛାତ୍ର-ସଂଘର ନେତା ବ୍ରଜବନ୍ଧୁ ମିଶ୍ର (ସେ ଆଉ ନାହାନ୍ତି) ସଦ୍ୟ ଅସିଥାନ୍ତି ପୁରୀରୁ କଟକକୁ । ବିଶ୍ୱମ୍ଭର ସାମନ୍ତ (ବର୍ତ୍ତମାନ ପଣ୍ଡିଚେରି ଆଶ୍ରମରେ ଅନ୍ତେବାସୀ) ଆସିଥାନ୍ତି କଲେଜକୁ

ସଦ୍ୟ । ଶିବାଜୀ ପଟ୍ଟନାୟକ (ବର୍ତ୍ତମାନ ପାର୍ଲାମେଣ୍ଟ ସଭ୍ୟ) ଜେଲରୁ ଫେରି କଲେଜକୁ ପୁଣି ଫେରିଥାନ୍ତି । କହ୍ନୁ ଇତିହାସର ଚକ୍ର ଭିତରେ ହଠାତ୍ ସେମାନେ ସ୍ୱଳ୍ପ ଆସିଲେ ନେତୃତ୍ୱକୁ । ଗଣ କଂଗ୍ରେସର ଅନ୍ୟତମ ନେତା ଶ୍ରୀ ପ୍ରବୀର ପାଲିତ ସେମାନଙ୍କ ସହ ଯୋଗ ଦଅନ୍ତି । ଛାତ୍ର ଆନ୍ଦୋଳନ ସମ୍ପ୍ରସାରିତ ହୁଏ । ତତ୍କାଳୀନ ଛାତ୍ରସଂଘର ଅନ୍ୟତମ ନେତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ (ପରେ କଂଗ୍ରେସଦଳଭୁକ୍ତ ହୋଇ ଅନ୍ୟତମ ମୁଖ୍ୟମନ୍ତ୍ରୀ) ଜଡ଼ିତ ହେବା ଫଳରେ ଆନ୍ଦୋଳନ ଅଧିକ ସମ୍ପ୍ରସାରିତ ହୋଇଯାଏ । ରାତିରେ ହଠାତ୍ ନବବାବୁ ଆକାଶବାଣୀରେ ଘୋଷଣା କରନ୍ତି ଯେ ଗୋଟାଏ ଜଣାଶୁଣା ଦେଶଦ୍ରୋହୀ ଦଳ ନ୍ୟାୟସଙ୍ଗତ ସରକାରକୁ ଭାଙ୍ଗିଦେବା ପାଇଁ ଷଡ଼ଯନ୍ତ୍ର କରୁଛନ୍ତି, ଏହା ବର୍ତ୍ତମାନ ପ୍ରମାଣିତ ହୋଇଛି । କାହାପାଇଁ ଏହା ଉଦ୍ଦିଷ୍ଟ ତାହା ପରିଷ୍କାର । ସେଇ ରାତିରେ କମ୍ୟୁନିଷ୍ଟ ପାର୍ଟିର ଦୁଇଜଣ ନେତା ତାଙ୍କୁ ହଠାତ୍ ଭେଟିଲେ ଏବଂ ପଚାରିଲେ ଏହାର କାରଣ ? ଆଲୋଚନା ହେଲା । ସକାଳୁ ଦେଖାଗଲା ଯେ ରାତିରେ ପୁଲିସବାଲା ଯେଉଁ ସବୁ ବୟାନ ଏବଂ ପଦକ୍ଷେପର ଉପଦେଶ ଦେଇଥିଲେ ତାକୁ ନବବାବୁ ବାତିଲ କରିଦେଇଛନ୍ତି ।

ନିର୍ବାଚନ ବଡ଼ଚଣାରେ । ନବବାବୁ ପ୍ରାର୍ଥୀ ତାଙ୍କ ବିରୁଦ୍ଧରେ ପ୍ରାର୍ଥୀ ଛାତ୍ରନେତା ଶ୍ରୀ କୁଳମଣି ମହାପାତ୍ର ଏବଂ କମ୍ୟୁନିଷ୍ଟ ପାର୍ଟିର ସମର୍ଥିତ ପ୍ରାର୍ଥୀ ଡାକ୍ତର ଜଗନ୍ନାଥ ଦାସ । ନିର୍ବାଚନରେ ନବବାବୁ ଜିତିଲେ । ପରେ ଯେତେବେଳେ ନବବାବୁଙ୍କ ସାଙ୍ଗରେ ଦେଖା ହୋଇଛି ସେତେବେଳେ ସେ ଏବଂ ନୁମା ପ୍ରଥମେ ପଚାରିଛନ୍ତି ଅସୁସ୍ଥ କୁଳମଣି ମହାପାତ୍ରଙ୍କ କଥା (କୁଳମଣିବାବୁ ମଧ୍ୟ ଆଉ ନାହାନ୍ତି) ଏବଂ ତାହା ଏକ ମାମୁଲି ପଚାରିବା ନୁହେଁ । ସେ ପଚାରିବାରେ ଭରି ରହିଥିଲା ଗଭୀର ଆତ୍ମୀୟତା ଏବଂ ଦରଦ ।

ନବବାବୁଙ୍କ ସହିତ ମୋର ପାରିବାରିକ ପରିଚୟ । କଟକ ଛାଡ଼ି ସେ ଗଡ଼ଜାତ ଆନ୍ଦୋଳନ ସମୟରେ ଆନ୍ଦୋଳନର କେନ୍ଦ୍ର ଭାବରେ ଗଢ଼ିଲେ ବାଜି ରାଉତ ଛାତ୍ରାବାସ । ସେଇଠି ସେ ତାଙ୍କର କର୍ମଭୂମି ଗଠନ କଲେ । ଅନୁଗୋଳ ଗଲେ ତାଙ୍କୁ ଦେଖିବାକୁ ଯାଏ । ସକାଳେ ଗଲେ ସନ୍ଧ୍ୟାକୁ ଫେରିବାକୁ ପଡ଼େ । ସେଇଠି ଭେଟିବାକୁ ଅନେକ ଲୋକ ଯାଆନ୍ତି । ବଡ଼ ଓ ସାନ ।

ରାଷ୍ଟ୍ରପତି ଶ୍ରୀ ନୀଲମ ସଞ୍ଜିବ ରେଡ଼ି ତାଙ୍କୁ ଭେଟିବାକୁ ଚାହିଁଲେ । ସାଙ୍ଗେ ସାଙ୍ଗେ ତତ୍କାଳୀନ ସରକାର ଆୟୋଜନ କରିବାକୁ ଚାହିଁଲେ ନବବାବୁଙ୍କୁ ଭୁବନେଶ୍ୱର ଆଣିବା ପାଇଁ । ରାଷ୍ଟ୍ରପତି ମନାକଲେ । ସେ କହିଲେ ସେ ଯିବେ ଅନୁଗୋଳ ତାଙ୍କୁ ଦେଖା କରିବାକୁ । ସରକାର ପୁଣି ଆୟୋଜନ କଲେ ନବବାବୁଙ୍କୁ

ସର୍ଚ୍ଚ ହାଉସକୁ ଆଣିବା ପାଇଁ । ରାଷ୍ଟ୍ରପତି କହିଲେ ଯେ ସେ ନବବାବୁଙ୍କୁ ଭେଟିବାକୁ ଯିବେ ବାଜି ରାଉତ ଛାତ୍ରାବାସକୁ । ଗାଡ଼ି ରହିବ ରାସ୍ତା ଉପରେ । ସେ ଏକୁଟିଆ ଯିବେ ଗୁଲ ଗୁଲ ଆଶ୍ରମ ଭିତରକୁ । ତାହାହିଁ ହେଲା ।

କମ୍ୟୁନିଷ୍ଟ ପାର୍ଟିର କିଜେଣ୍ଡାରି ନେତା ଶ୍ରୀ ପି. ସି. ଯୋଷୀ (ସେ ଆଉ ନାହାନ୍ତି) ଓଡ଼ିଶା ଆସିଥିଲେ, ଚାହିଁଲେ ନବବାବୁଙ୍କୁ ଭେଟିବା ପାଇଁ । ଓ.ଟି.ଏମ୍ ର ଏକ ଗାଡ଼ି ବନ୍ଦୋବସ୍ତ କରିଦେଲେ ଶ୍ରୀ ସାରେନ ମିତ୍ର (ସେ ଆଉ ନାହାନ୍ତି) । ସାରେନ ଦା' ଗାଡ଼ି ବନ୍ଦୋବସ୍ତ କରିଦେଲେ ପି.ସି. ଜୋଷୀ ଏବଂ ନବବାବୁଙ୍କ ସମ୍ପର୍କରେ ଯେଉଁ ପ୍ରଶଂସାର ବାଣୀ କହୁଥିଲେ ତାହା ଶୁଣିଲେ ଯେକୌଣସି ଲୋକ ଈର୍ଷ୍ୟା ହେବ । ଏକେତ ପି.ସି. ଜୋଷୀ କମ୍ୟୁନିଷ୍ଟ ପାର୍ଟିର ନେତା ଏବଂ ନବକୃଷ୍ଣ ଚୌଧୁରୀଙ୍କୁ ବିଦାକରି ହରେକୃଷ୍ଣ ମହତାବଙ୍କୁ ପୁଣି ମୁଖ୍ୟମନ୍ତ୍ରୀ କରାଇବାର ମୁଖ୍ୟନାୟକ ହୋଇଥିଲେ ସାରେନ ମିତ୍ର । କିନ୍ତୁ ସାରେନ ମିତ୍ରଙ୍କର ନବକୃଷ୍ଣ ଚୌଧୁରୀଙ୍କ ବ୍ୟକ୍ତିଗତ ଜୀବନ ପ୍ରତି ଏ'କି ଆଦର !

ପି.ସି. ଜୋଷୀଙ୍କୁ ସାଙ୍ଗରେ ନେଇ ନବବାବୁଙ୍କ ଆଶ୍ରମରେ ପହଞ୍ଚିଲୁ । ଘଣ୍ଟାକର ପ୍ରୋଗ୍ରାମ ଦିନକର ପ୍ରୋଗ୍ରାମରେ ପରିଣତ ହେଲା । ପ୍ରଥମେ ପି.ସି. ଜୋଷୀ ପ୍ରସ୍ତାବନା କଲେ ଯେ ସେ ନା ନବବାବୁ ବୟସରେ କିଏ ବଡ଼ ତାହା ସ୍ଥିର କରାଯାଉ । କାରଣ ନବବାବୁ ଯଦି ବଡ଼ ହେବେ ତା'ହେଲେ ଭାଉଜ ଭାବରେ ମାଲତୀ ଦେବୀଙ୍କ ଉପରେ ତାଙ୍କର ଅଧିକାର ବଢ଼ିଯିବ । ଯତକୁସତ ଦେଖାଗଲା ଯେ ନବବାବୁ ଜୋଷୀଙ୍କଠାରୁ ବୟସରେ କିଛି ମାସ ବଡ଼ । ଆରମ୍ଭ ହେଲା ଜୋଷୀଙ୍କ ବିଗ୍ରହ ଭୂମାଙ୍କ ଉପରେ ।

ମୋର ଦାଦା ସ୍ୱର୍ଗତ ବରିଷ୍ଠ ନାରାୟଣ ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମ ଏବଂ ବିଶେଷତଃ ବୌଦ, ସୁନପୁର, ଗଣିପୁର, ବାମଣ୍ଡା ପ୍ରଭୃତି ପୂର୍ବତନ ଗଡ଼ଜାତ ପ୍ରଜା-ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ । କଲେଜରେ ନବବାବୁଙ୍କର ସମସାମୟିକ ହେଉ ଉଭୟଙ୍କ ମଧ୍ୟରେ ପରିଚୟ କଲେଜ ବେଳରୁ । ବାଜି ରାଉତ ଛାତ୍ରାବାସରୁ ଆମ ଗାଁ ମାଇଲିଏ ବାଟ । ନବବାବୁଙ୍କ ସହିତ ପରିଚିତ ସେଇଯୋଗୁଁ ପାରିବାରିକ । ଦାଦା ବଞ୍ଚିଥିଲା ପର୍ଯ୍ୟନ୍ତ ଯେତେବେଳେ ଦେଖାହେଲେ ସେ ଦାଦାଙ୍କ କଥାହିଁ ପଚାରୁଥିଲେ ଏବଂ କହୁଥିଲେ କଲେଜ ବେଳର କଥା ।

ନବବାବୁଙ୍କ ବାଜି ରାଉତ ଛାତ୍ରାବାସ ଅନାଥ ବାଳକ ଓ ବାଳିକାମାନଙ୍କର ଆଶ୍ରୟସ୍ଥଳ । ଏଇଭଳି ଏକ ଆଶ୍ରମବାସିନୀ ମୋର ପୁଅକୁ ବିବାହ କରିଛି । ତା'ର ବାପା ମାଆଙ୍କ ଭିତରୁ ଜଣେ ଆଦିବାସୀ ଏବଂ ଜଣେ ମୁସଲମାନ । ସେମାନଙ୍କର ବିବାହ

ଏପର୍ଯ୍ୟନ୍ତ ତାର ବାପା ମା ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । କିନ୍ତୁ ସେମାନଙ୍କ ଛଡ଼ା ଅନ୍ୟ ସମସ୍ତେ ଏହି ବିବାହକୁ ସ୍ୱୀକୃତି ଦେଇଛନ୍ତି । ନବବାବୁଙ୍କ ଆଶ୍ରମରେ ଏଇଭଳି ଅନେକ ଝିଅ ଅଛନ୍ତି । କଷ୍ଟ ବସ୍ଥସ । ବେଳେବେଳେ କିଛି ଟିକିଏ ଏପାଖ ସେପାଖ ଯେ କେତେକଙ୍କର ହେଉ ନଥିବ ତା'ନୁହଁ । କିନ୍ତୁ ମାଲତୀ ଦେବୀ ଏ ବିଷୟରେ କଠୋର । ତାଙ୍କ ଆଖିରେ ସାମାନ୍ୟ ଭୁଲଭଟକା ପଡ଼ିଲେ ଶାସ୍ତି ମିଳେ । ଏଇଭଳି ଦୁଇଟି ଝିଅଙ୍କୁ କ'ଣ ଟିକିଏ ତ୍ରୁଟି ପାଇଁ ମାଲତୀ ଦେବୀ ବିଦାକରି ଦେଇଥିଲେ ଆଶ୍ରମରୁ । ବିଧା ଠିକ୍ ନୁହେଁ । ତ୍ରୁଟି ପରେ ଆଉ ବର୍ତ୍ତମାନ ପାଇଁ ନ ପଠାଇବା ସକାଶେ ସେମାନଙ୍କର ବାପାମା'ଙ୍କୁ ଲେଖି ଦିଆଯାଉଥିଲା । ନବବାବୁ ଏହା ବୁଝି ନଥିଲେ । ଗମ୍ଭୀର ମାନବିକତା ତାଙ୍କୁ ମଣିଷର ଆସ୍ତିମୂଳକ ଦିଗ ପ୍ରତି ଯେପରି ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିବାକୁ ସାହାଯ୍ୟ କରୁଥିଲା ଠିକ୍ ସେଇପରି ମଣିଷର ନାସ୍ତିମୂଳକ ଦିଗ ପ୍ରତି ତାଙ୍କର ସହାନୁଭୂତି ଥିଲା ବୈଜ୍ଞାନିକ ଦୃଷ୍ଟିକୋଣଦ୍ୱାରା ପ୍ରଭାବିତ । ମଣିଷ ପୂର୍ଣ୍ଣାଙ୍ଗ ନୁହେଁ । ସେ ଦେବତା ନୁହେଁ । ରାକ୍ଷସ ବି ନୁହେଁ । ମଣିଷକୁ ମଣିଷ ଭାବରେ ବିଚାର କର । ନବବାବୁଙ୍କ ଜୀବନର ସନ୍ଧ୍ୟା ଉପଗତ । ସେ ଅଚେତ ହୋଇ ପଡ଼ିଛନ୍ତି । ସମସ୍ତେ ଘେରି ବସିଛନ୍ତି । ସେ ଆଖି ଖୋଲିଲେ । କିଛି କହିବେ । ସମସ୍ତେ ଅପେକ୍ଷା କରିଛନ୍ତି । ନବବାବୁ ପଚାରିଲେ—ସେ ଦୁଇଟି ଝିଅ ଆସିଲେଣି ! ସେମାନଙ୍କୁ ତୁରନ୍ତ ଡକାଇ ପଠାଗଲା ।

ଆଶ୍ରମରେ ଥରେ ଭାରତ ସରକାରଙ୍କ କ୍ଷେତ୍ର ପ୍ରସ୍ତୁତ ସଂସ୍ଥା ତରଫରୁ ସିନେମା ଦେଖାଯିବାର ବ୍ୟବସ୍ଥା ହୋଇଥାଏ । କ୍ଷେତ୍ର ପ୍ରସ୍ତୁତ ସଂସ୍ଥାର କର୍ମକର୍ତ୍ତା ମାଲତୀ ଦେବୀଙ୍କ ମନୋଭାବ ଜାଣନ୍ତି । ତେଣୁ ସେ ବାଛିବାଛି ଏପରି ଏକ ଚଳଚିତ୍ର ଆଣିଥିଲେ ଯେଉଁଥିରେ ଉଲଗ୍ନତା ବେଶୀ ନଥିବ କିନ୍ତୁ ବର୍ତ୍ତମାନର ବମ୍ବେ ଚଳଚିତ୍ରରେ ଉଲଗ୍ନତା ଆଦୌ ନଥିବା ଏକ ଚଳଚିତ୍ର ପାଇବା କଠିନ । ଚଳଚିତ୍ର ଚାଲିଛି । ମାଲତୀ ଦେବୀ ଅଧାରେ ଆସି ପହଞ୍ଚିଗଲେ । ଦେଖିଲେ ଚଳଚିତ୍ର କିଛି ସମୟ ଏବଂ ଚଳଚିତ୍ର ବନ୍ଦ କରିଦେବା ପାଇଁ ନିର୍ଦ୍ଦେଶ ଦେଲେ । ବିଚରା କର୍ମକର୍ତ୍ତା ଡରରେ ଆସି ନବବାବୁଙ୍କ ପାଖରେ ପହଞ୍ଚିଲେ ଏବଂ ନିବେଦନ କଲେ ଯେ ଚଳଚିତ୍ର ଯାହାଥିଲା ସେଥିରୁ ବାଛିକରି ଆଣିଥିଲି । କେଉଁଠୁ ଭଲ ଚଳଚିତ୍ର ଆଣିବି ? ନବବାବୁ ସେକଥା ନଶୁଣି କହିଲେ, ଶୁଣ, ତୁମେ ଟିକିଏ କଠୋର ଲୋକ । ସେ ଜାଣନ୍ତି ନାହିଁ ଯେ ଭଲ ଆଉ ଭେଲ ଦୁଇଟାଯାକ ନଜାଣିଲେ ଭଲଟାକୁ ଭେଲରୁ ବାଛିବା ଜଣକ ପକ୍ଷରେ ସମ୍ଭବ ନୁହେଁ । ତମେ ଗୋଟାଏ କାମକର । ତମେ ଏଇ ସୁସୁଡ଼ା ଗାଁରେ କାଲି ଚଳଚିତ୍ର ଦେଖାଅ । (ସୁସୁଡ଼ା ଗାଁ ଭିତରେ ବାଜି ରାଉତ ଚ୍ଛାତ୍ରାବାସ) ସେଇଟାତ ମାଲତୀ ଦେବୀଙ୍କ କର୍ତ୍ତୃତ୍ୱର ବାହାରେ । ମୁଁ ପିଲମାନଙ୍କୁ କହିଦେବି । ସେମାନେ ଚୁପକରି ଚାଲିଯିବେ ଦେଖିବାପାଇଁ । କ୍ଷେତ୍ର ପ୍ରସ୍ତୁତ ସଂସ୍ଥାର କର୍ମକର୍ତ୍ତା ଆସିଥିଲେ ନିଜକୁ ରକ୍ଷା

କରିବାପାଇଁ ଏକ ସମ୍ଭାବ୍ୟ ଆକ୍ରମଣରୁ । ବର୍ତ୍ତମାନ ଓଲଟି ଉତ୍ସାହ ପାଇଲେଣି । ସନ୍ଧ୍ୟାରୁ ନବବାବୁ ପିଲମାନଙ୍କୁ ଡାକି ସେଇକଥା କହିଲେ । ପିଲମାନଙ୍କର ପ୍ରବଳ ଭୟ ମାଲତୀ ଦେବୀଙ୍କୁ । ଆମେ କେମିତି ଯିବୁ ? କେମିତି ଯିବ ? ମାଲତୀ ଦେବୀ ସେମାନଙ୍କୁ ମଣିଷ କରି ଗଢ଼ୁନାହାନ୍ତି । ହଷ୍ଟେଲରୁ କିମିତି ଖସି ପଳେଇବ ଜାଣିନ, ଆଉ ମଣିଷ କଣ ହେବ ? ସେଇଠୁ ଶିଖେଇଲେ ପିଲଙ୍କୁ କିମିତି ଯିବାକୁ ପଡ଼େ । ଆଲୁଅ ଲିଭାଇଦେବ । ମଶାରି ପକାଇ ଦେବ । ତକିଆକୁ ବିଛଣା ଉପରେ ଲମ୍ବାକରି ସଜାଇ ଦେଇ ଚଦର ଘୋଡ଼ାଇ ଦେବ ଏବଂ ତାପରେ ଚୁପକରି ଖସି ପଳାଇବ । ପିଲାଏ ସେଇଆ କଲେ କିନ୍ତୁ ମାଲତୀ ଦେବୀ ତାହା ଜାଣି ପାରି ପିଲଙ୍କ ଘରେ ତାଲା ପକାଇ ଦେଲେ ପିଲାଏ ସିନେମା ଦେଖି ଫେରିଲାବେଳକୁ ଘରେ ତାଲା ପଡ଼ିଛି । ବର୍ତ୍ତମାନ ଯାଆନ୍ତି କୁଆଡ଼େ ? ହଠାତ୍ ଦେଖାଗଲା ଯେ ନବବାବୁ ତାଙ୍କ ଘରେ ନାହାନ୍ତି । ମାଲତୀ ଦେବୀ ଭାବିଲେ ଯେ ନିଶ୍ଚୟ ନବବାବୁ ପିଲଙ୍କ ସାଙ୍ଗରେ ସିନେମା ଦେଖି ଯାଇଛନ୍ତି । ପିଲମାନେ ଫେରି ବାରଣ୍ଡାରେ ବସିଛନ୍ତି । ଏ ଖବର ଜୁମା ପାଇଲେଣି । କିନ୍ତୁ ନବବାବୁ ଗଲେ କୁଆଡ଼େ ? ଖୋଜା ଚାଲିଲା । ନବବାବୁଙ୍କ ପତ୍ତା ନାହିଁ । ମାଲତୀ ଦେବୀଙ୍କ ସବୁ ରାଗ ପାଣି ଫାଟିଗଲାଣି । ବହୁତ ସମୟ ଖୋଜାଖୋଜି ପରେ ଦେଖାଗଲା ପିଲଙ୍କ ହଷ୍ଟେଲରେ ଗୋଟିଏ ପିଲାର ଖଟରେ ନବବାବୁ ଶୋଇଛନ୍ତି । ବାହାରୁ ତାଲା ବନ୍ଦ ହେବାରୁ ପାଟି ଶୁଭୁନାହିଁ ଭିତରକୁ । ନବବାବୁ ଉଠିଲେ । ଏଠି ତମେ କଣ କରୁଛ ? ମାଲତୀ ଦେବୀଙ୍କ ଏଇ ପ୍ରଶ୍ନରେ ନବବାବୁ ହସି ହସି କହିଲେ, ପିଲଗୁଡ଼ାକ ସିନେମା ଦେଖି ଯାଇଥିଲେ । ତାଙ୍କ ଘର ପୁଣି ଜଗନ୍ତା କିଏ ? ମୁଁ ଜଗିଥିଲି । ନିଦ ମାଡ଼ିଲା । ଶୋଇ ପଡ଼ିଥିଲି । ପିଲମାନେ ଫେରିଲେଣି ? ମାଲତୀ ଦେବୀ କଣ ଆଉ କହିବେ ?

ନବବାବୁଙ୍କ ମର ଦେହକୁ ସେଦିନ ଚିତାଗ୍ନିରେ ଶୁଆଇଦେଇ ଫେରିଲା ବେଳେ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କ ସାଶ୍ରୁଳ ନୟନରେ ଶ୍ରୀ ବିନୋଦ ମହାନ୍ତି ଏଇ ଶେଷୋକ୍ତି ଦୁଇଟି କଥା କହୁଥିଲେ ।

ନବବାବୁ ଇମିତି ଏକ ବିଚିତ୍ର ମଣିଷ ଥିଲେ ।

ଚୀନ୍ ଭାରତ ସଂଘର୍ଷ । ୧୯୬୨ ମସିହାର କଥା । ନବବାବୁଙ୍କ ମତରେ ଉତ୍କଟ ହେଉଛି ଚୀନର । ମାକ୍‌ମୋହନ ଲାଇନ ଏକ କାଳ୍ପନିକ ରେଖା ଏବଂ ତାହା ଚୀନା କର୍ତ୍ତୃପକ୍ଷ ସ୍ୱୀକାର କରି ନାହାନ୍ତି କେବେହେଲେ । ବିବାଦ ତେଣୁ ଆମ ପକ୍ଷରୁ । ଏବଂ ଆମପକ୍ଷରୁ ହିଁ ସଂଘର୍ଷ ଆରମ୍ଭ ହୋଇଛି । ନବବାବୁ ଏକ ସଭା ଆହ୍ୱାନ କଲେ କଟକ ଟାଉନହଲରେ । ନବବାବୁ ଯେଉଁକି ମ୍ୟାପ୍, ଡାଟା, ଷ୍ଟାଟିଷ୍ଟିକ୍ସ ଉପସ୍ଥାପନା କଲେ ତାହା ସମସ୍ତଙ୍କୁ ବିସ୍ମିତ କରିଥିଲା । ପରେ ଯେତେବେଳେ

ମାକ୍ସୱେଲଙ୍କର India's China War ବହି ପ୍ରକାଶିତ ହେଲା । ସେତେବେଳେ ନବବାବୁଙ୍କର ଯୁକ୍ତି ଉପଲବ୍ଧି କରିହେଲା ।

ନବବାବୁ ପଢ଼ନ୍ତି ବହୁତ । ସେହି ହିସାବରେ ତାଙ୍କର ଖ୍ୟାତି ଥିଲା ଏପରି ଯେ ଅନେକ ବ୍ୟକ୍ତି ଓ ଅନୁଷ୍ଠାନ ତାଙ୍କ ପାଖକୁ ସଦ୍ୟ ପ୍ରକାଶିତ ବହି ପଠାଇବାକୁ ଆପଣାର କର୍ତ୍ତବ୍ୟ ବୋଲି ମନେ କରନ୍ତି । ବହି ଆସେ ବିଦେଶରୁ । ଆମେ ଏକ ଆନ୍ତର୍ଜାତିକ ସେମିନାରର ଆୟୋଜନ କରିଥାଉ । ୧୯୭୮ ମସିହାର କଥା । ନବବାବୁ ଏକ ପଛ ଧାଡ଼ି ଚୌକିରେ ବସିଥାନ୍ତି । ମୋତେ ଗଗନ ବିହାରୀ ଜେନା (ସେ ଆଉ ନାହାନ୍ତି) ଠାରି ଦେଖାଇଦେଲେ । ବୁଢ଼ା, ପଛରେ ବସିଛି । ଯା' କହିବୁ ଆଗକୁ ଯିବା ପାଇଁ । ମୁଁ ଯାଇଁ ସେଇ ଅନୁରୋଧ କଲି । ନବବାବୁ ମୋତେ ତାଙ୍କ ପାଖ ଚୌକିରେ ବସିବାକୁ କହି ଏକ ପଂକ୍ତି ଉଚ୍ଚାର କଲେ । ଅରସିକେଷୁ ରସସ୍ୟ ନିବେଦନଂ, ମାଲିଖଂ, ମାଲିଖଂ । ବୁଝିଲ ତମେ ଗୋଟିଏ ଅରସିକ ଲୋକ ହେଲ କେବେଠାରୁ ? ସାଂସ୍କୃତିକ କାର୍ଯ୍ୟକ୍ରମରେ ସବୁବେଳେ ପଛରେ ବସିବ । ତା'ହେଲେ ତାଳିମାରି ହେବ, ସିଟି ମାରିହେବ, ବୁଝିଲ । ଏବଂ ଭଲ ନ ଲାଗିଲେ ଚୁପ୍‌ଚାପ ଉଠି ଚାଲିଯାଇ ହେବ । ଆଗ ଧାଡ଼ିରେ ବସିଲେ ସେସବୁ ହେବ କେଉଁଠୁ ? ନବବାବୁ କହୁଛନ୍ତି ମୋର ପାଟି ବନ୍ଦ ।

ନବବାବୁ କଂଗ୍ରେସର ନେତା ଥିଲେ । ଥିଲେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତା । ରାଜନୀତି ଛାଡ଼ିଲେ । ସର୍ବୋଦୟ ଆନ୍ଦୋଳନରେ ଝାସଦେଲେ । ତା'ପରେ ଦେଖାଗଲା ଯେ ନବବାବୁ ଧୀରେ ଧୀରେ ନକ୍ସଲବାଦୀ ବା ଅଲଟ୍ରା ଲେଫ୍ଟ ହୋଇ ଉଠିଲେ । ନାଗଭୂଷଣ ପଟ୍ଟନାୟକଙ୍କୁ ଫାସିକାଠରୁ ମୁକ୍ତ କରିବା ପାଇଁ ତାଙ୍କର ଉଦ୍ୟମ ତାଙ୍କୁ ସ୍ମୃତ କରି ରଖିବ ଏବଂ ସେଥିପାଇଁ ମହତାବବାବୁ ଓ ତାଙ୍କର ମିଳିତ ଉଦ୍ୟମ ହମସ୍ତଙ୍କୁ ବିସ୍ମିତ କଲା । ଲୁଆଡ଼େ ଗଲା ତାଙ୍କ ଭିତରେ ଥିବା ରାଜନୈତିକ ବିବାଦ ? ନବବାବୁ ନକ୍ସଲବାଦୀମାନଙ୍କ ସପକ୍ଷରେ ହାଇସମିତିରେ ଉଦ୍‌ବୋଧନ ଦେଲେ । ନବବାବୁଙ୍କର ଯେପରି ଏକ ଘଟାନ୍ତର ବା ରୂପାନ୍ତର ଘଟିଯାଉଛି । ନକ୍ସଲବାଦୀ ନେତା ନାଗଭୂଷଣ ଜେଲରେ । ସେ ଶ୍ୱାସରୋଗାକ୍ରାନ୍ତ । ମୋ ସ୍ତ୍ରୀ ଅଧ୍ୟାପିକା ଡକ୍ଟର କମଳ କୁମାରୀ ପଟ୍ଟନାୟକ ଚେର ମୂଳି ପତ୍ର ସାହାଯ୍ୟରେ ଶ୍ୱାସ ରୋଗର ଚିକିତ୍ସା କରନ୍ତି । ଦିନେ ହଠାତ୍ ନବବାବୁ ଫୋନ୍ କଲେ ଯେ ନାଗଭୂଷଣଙ୍କର ଚିକିତ୍ସା ଦରକାର । ଅଧ୍ୟାପିକା କମଳ କୁମାରୀ ରାଜି ହେଲେ ସେ ଭାରତ ସରକାରଙ୍କୁ ଲେଖିବେ ନାଗଭୂଷଣଙ୍କ ସହିତ ଜେଲରେ ସାକ୍ଷାତ କରିବା ପାଇଁ । ଏହା କାର୍ଯ୍ୟକାରୀ ହେବା ପୂର୍ବରୁ ନାଗଭୂଷଣ ଜେଲରୁ ଖଲାସ ହୋଇଗଲେ ।

ନବବାବୁଙ୍କ କୁଟୀରରେ ଦୁଇଟି ଫଟୋ ଦେଖିବାକୁ ମିଳେ । ଗୋଟିଏ ହୋ-ଚି-ମିନ୍‌ଙ୍କର ଏବଂ ଆଉ ଗୋଟିଏ ଲେନିନ୍‌ଙ୍କର । ନବବାବୁ ହୋ-ଚି-ମିନ୍‌ଙ୍କ ପରି ଦାଢ଼ି ରଖିବାକୁ ଆରମ୍ଭ କଲେ । ଗାନ୍ଧିବାଦୀ ନବକୃଷ୍ଣ ଚୌଧୁରୀଙ୍କ ଘରେ ଏ ପ୍ରକାରର ଫଟୋ ଅନେକଙ୍କୁ ବିସ୍ମିତ କରିଛି । ଅନେକ ପ୍ରଶ୍ନବାଚୀ ଉଠିଛି । କିନ୍ତୁ ନବବାବୁ ତ ସବୁର ଏକ ବ୍ୟତିକ୍ରମ ।

ନବବାବୁ ସେଦିନ ବିଦାୟ ନେଲେ । ନିଜକୁ ଇତିହାସରେ ରଖିବା ପାଇଁ କୌଣସି ଉଦ୍ୟମ ସେ କରିନାହାନ୍ତି । ବରଂ ଇତିହାସ ପୃଷ୍ଠାରୁ ଆପଣାକୁ ପୋଛି ଦେବା ପାଇଁ ସେ ଉଦ୍ୟମ କରିବାକୁ ଆରମ୍ଭ କଲେ ଜୀବନର ଅପରାହ୍ଣରେ । ସେନ୍‌ସିଟିଭ୍ ଲୋକ । ଜରୁରୀକାଳୀନ ପରିସ୍ଥିତିରେ ତାଙ୍କୁ କାରାବାସ ଭୋଗିବାକୁ ପଡ଼ିଲା । କାରାବାସ ପାଇଁ ସେ ବିବ୍ରତ ହୋଇନାହାନ୍ତି, କିନ୍ତୁ ସ୍ୱାଧୀନ ଭାରତରେ ଯେ ତାଙ୍କୁ କାରାବାସ ଭୋଗିବାକୁ ପଡ଼ିବ ଏହା ବୋଧହୁଏ ତାଙ୍କର କଳ୍ପନାର ବାହାରେ ଥିଲା । ନବବାବୁ ସେଇ ଆଘାତରୁ ଆଉ ଉଭୁରି ପାରିଲେ ନାହିଁ । ଏକ ଭଗ୍ନସ୍ୱାସ୍ଥ୍ୟ, ଭଗ୍ନ ମନ ତାଙ୍କର ସହଚର ହୋଇଗଲା ।

ସେଦିନ ଦିଲ୍ଲୀ ସହରରେ ଆସାମ ନିବାସର ସମ୍ମୁଖ ରାସ୍ତାକୁ "ଲୋକପ୍ରିୟ ଗୋପୀନାଥ ବର୍ଦୋଲୋଇ ସରଣୀ" ନାମରେ ନାମିତ ହେବା ଦେଖି ଆନନ୍ଦିତ ହୋଇଥିଲି, ଦୁଃଖିତ ମଧ୍ୟ ହୋଇଥିଲି ଯେ ଓଡ଼ିଶା ଭବନର ସମ୍ମୁଖ ରାସ୍ତା କ'ଣ ନବକୃଷ୍ଣ ଚୌଧୁରୀଙ୍କ ନାମରେ ନାମିତ ହୋଇ ପାରନ୍ତା ନାହିଁ ? ତାଙ୍କର ତ କେହି ଶତ୍ରୁ ନାହାନ୍ତି । ଆସି ବନ୍ଧୁ ପାର୍ଲ୍ୟାମେଣ୍ଟ ସଭ୍ୟମାନଙ୍କୁ କହିଲି । ଯୋଜନା, ଭୂସଂସ୍କାର, ଭାରତୀୟ ଆଇନ କଂଗ୍ରେସକୁ ଶିଖାଇଥିଲେ କିଏ ? ସେମାନଙ୍କ ମଧ୍ୟରେ ନବବାବୁ ଅନ୍ୟତମ ଏବଂ ପାଇଓନିଅର ମଧ୍ୟ । ଏହା ହିଁ ଥିଲା ସେମାନଙ୍କର ମତ । କିନ୍ତୁ ବିଲେଇ ବେକରେ ଘଣ୍ଟି ବାନ୍ଧିବ କିଏ ? କିଏ ଯାଇ କହିବ ପ୍ରଧାନମନ୍ତ୍ରୀଙ୍କୁ ? କଟକ ଫେରି ଓଡ଼ିଶାର ସବୁ ପାର୍ଲ୍ୟାମେଣ୍ଟ ସଭ୍ୟ, ମୁଖ୍ୟମନ୍ତ୍ରୀ, ବହୁ ରାଜନୈତିକ ନେତାଙ୍କୁ ଚିଠି ଲେଖିଲି । ମଲା ଘୋଡ଼ାର ଟାଙ୍ଗ ଗଣି ଲାଭ କଣ ? ଜୀବିତ ବ୍ୟକ୍ତିମାନଙ୍କର ସ୍ମୃତି ସଜାଡ଼ୁ ସଜାଡ଼ୁ ବେଳ ପଳାଉଛି, ମୃତ ବ୍ୟକ୍ତିର ସ୍ମୃତିକୁ ମନେପକାଇ ଲାଭ କ'ଣ ମିଳିବ ! ସେଥିରୁ କିଛି ଭୋଟ ମିଳିବାର ସମ୍ଭାବନା ଥିଲେ ଅବା ଦେଖାଯାଆନ୍ତା ।

ନବବାବୁ ଇତିହାସର ଏକ ବିସ୍ମୃତ ଚରିତ୍ର । ସେ ଚିଠିର କିଛି କିଛି ଉତ୍ତର ମିଳିଲା । କିନ୍ତୁ ଫଲୋ-ଅପ୍ କେହି କଲେ ନାହିଁ ।

ନବବାବୁ ବଞ୍ଚିଥିଲେ ଆଜି ତାଙ୍କୁ ୯୧ ବର୍ଷ ପୂରନ୍ତାଣି । ନବବାବୁ ମଣିଷର ଦାନ୍ତ ଭଳି । ଦାନ୍ତର ଉପକାର ବହୁତ । ଦାନ୍ତ ଝଡ଼ିଗଲେ ପରେ ତାର ମୂଲ୍ୟ ବେଶୀ ଜଣାପଡ଼େ । କିନ୍ତୁ ସେତେବେଳକୁ ଆଉ ଦାନ୍ତ ଉଠିବାର ଅବକାଶ ନଥାଏ ।



# ଉଜଳା ସ୍ମୃତି

ନବଘନ ଆଉ ନାହିଁ । ହଠାତ୍ ଚମକ ଲାଗିଲା । ସମସ୍ତ କେତେ ଶୀଘ୍ର ଚାଲି ଯାଉଛ ।

ଆଖି ଫେରିଗଲା ୪୫।୪୬ ବର୍ଷ ତଳକୁ । ଆମେ ନୂଆ ହୋଇ ଆସିଥାଉ ରେଭେନ୍‌ସା କଲେଜକୁ । ଆମେ ସହପାଠୀ । ଭାରତବର୍ଷ ନୂଆ ହୋଇ ସ୍ୱାଧୀନତା ଲାଭ କରୁଥାଏ । ପ୍ରଚଣ୍ଡ ଉଦ୍‌ବେଳନ କାଳ । ତା' ସହିତ ଭୟାବହ ସାମ୍ପ୍ରଦାୟିକ ଦଙ୍ଗା । ସ୍ୱାଧୀନ ଭାରତ କଣ ବଞ୍ଚି ପାରିବ ନାହିଁ, ତିଷ୍ଠି ରହି ପାରିବ ନାହିଁ ? ଏଇ ପ୍ରଶ୍ନ ସମସ୍ତଙ୍କୁ, ବିଶେଷତଃ ଯୁବ ସମାଜକୁ ଧାଉଁଥିଲା ।

ନବଘନ ଜେନା ଚିନ୍ତା କରନ୍ତି । ଇଏ କି ସ୍ୱାଧୀନତା ? ଆମେ କଣ ଏଇ ସ୍ୱାଧୀନତା ଚାହିଁଥିଲୁ ? ଚାହିଁଥିଲୁ ସାମ୍ପ୍ରଦାୟିକତାବାଦର ବିଷରେ ସାରା ଭାରତ ଜର୍ଜରିତ ହେଉ ? ଆମେ କଣ ଚାହିଁଥିଲୁ ଯେ ସ୍ୱାଧୀନତା ମାନେ ଖାଲି ସାଇନ ବୋର୍ଡର ପରିବର୍ତ୍ତନ ? ଧୀରେ ଧୀରେ ଏକ ଗ୍ରୁପ ଗଢ଼ିଉଠେ । ଶିବାଜୀ ପଟ୍ଟନାୟକ (ବର୍ତ୍ତମାନ ପାର୍ଲାମେଣ୍ଟ ସଭ୍ୟ), ଉଦୟ ନାଥ ସୁବୁଦ୍ଧି (କେଉଁଠି ଅଛନ୍ତି କହି ପାରିବି ନାହିଁ , ନବଘନ ଜେନା ଓ ମୁଁ । ନବଘନ ଆମ ସମସ୍ତଙ୍କଠାରୁ ବୟସରେ ବଡ଼ ଏବଂ ସେ ଏକ ପରିବେଶ ରାଜନୈତିକ ବେଷ୍ଟନୀରୁ ଆସିଥାଆନ୍ତି ।

ଗୋଟାଏ ଅଧ୍ୟାୟ । ଏଇ ସମୟରେ କୌଣସି ଏକ ଛୁଟିରୁ ଫେରି ଆମେ ଖବର ସମ୍ବାଦ ପାଇଲୁ ଯେ ନବଘନ ହଠାତ୍ ବନ୍ଦୀ ହୋଇ ପଡ଼ିଛନ୍ତି । କାହିଁକି, କିମିତି ଏବଂ କେଉଁଠି ଅନେକ ପ୍ରଶ୍ନ, ଅନେକ ହସ ଏଇ 'ହଠାତ୍ ଭାଗ୍ୟୋଦୟ' ଉପରେ । ନବଘନଙ୍କର ରାଜନୈତିକ କାର୍ଯ୍ୟ ହଠାତ୍ ଧିମେଇ ଗଲା ଏବଂ ହଠାତ୍ ସେ ସକ୍ରିୟ ରାଜନୀତିରୁ ଦୂରେଇ ଗଲେ ।

ଏଇ "ଦୂରେଇ" ଯିବାର କାରଣ ଜଣା ପଡ଼ିଲା ପରେ । ତତ୍‌କାଳୀନ କମ୍ୟୁନିଷ୍ଟ ପାର୍ଟିର ନେତା ୮ ଶରତ ପଟ୍ଟନାୟକ ଥିଲେ ଜଣେ କଣ୍ଟ୍ରୋଲକର୍ମୀ ଲୋକ । ସେ କମ୍ୟୁନିଷ୍ଟ ପାର୍ଟିର ନୂଆ ଲାଇନକୁ କାର୍ଯ୍ୟକାରୀ କରିବା ପାଇଁ ଗୁପ୍ତକର୍ମୀ ମାନଙ୍କର ସନ୍ଧାନ କରୁଥିଲେ । ପାର୍ଟିର ଅଣ୍ଡର ଗ୍ରାଉଣ୍ଡ ମେସିନାରୀ ପାଇଁ ବିଶ୍ୱସ୍ତ ଲୋକ ଦରକାର କରୁଥିଲେ । ସେମାନଙ୍କୁ ବଛା ଯାଉଥିଲା ଏବଂ ଯେଉଁମାନେ ବଛାଗଲେ

ସେମାନଙ୍କ ମଧ୍ୟରେ ନବଘନ ଜେନା ଅନ୍ୟତମ । ନବଘନ ଜେନାଙ୍କର କର୍ମ ପରିସର ବଦଳି ଗଲା ଏବଂ ସେ ବ୍ୟବସାୟରେ ମନ ଦେଲେ ।

ନବଘନ ଜେନା କଟକରେ ରହୁଥିଲେ ସିନା, ମନ ଥିଲା ଗାଁରେ । ସେ ଗାଁକୁ ଛାଡ଼ି ନଥିଲେ । ଗ୍ରାମରେ ବହୁ ପ୍ରକାର ଜନମଙ୍ଗଳ କାର୍ଯ୍ୟ କରିବା ଥିଲା ତାଙ୍କର ନିଶା ଏବଂ ତାହା ଅବ୍ୟାହତ ରହିଥିଲା ମୃତ୍ୟୁ ପର୍ଯ୍ୟନ୍ତ ।

ନବଘନଙ୍କର ଆଉ ଏକ ଅଧ୍ୟାୟ ଆରମ୍ଭ ହେଲା ୧୯୫୧-୫୨ ମସିହାରେ । ଅଣ୍ଡର ଗ୍ରାଉଣ୍ଡ କାମସବୁ ଯାଇଥିଲା । ବର୍ତ୍ତମାନ କିନ୍ତୁ ସେ ଆଉ ପୂର୍ବ ଦମରେ ରାଜନୈତିକ କାର୍ଯ୍ୟ କରିବା ପାଇଁ ସକ୍ଷମ ନଥିଲେ । ପରିବାର ବଢ଼ିଥିଲା, ବ୍ୟବସାୟ ବଢ଼ିଥିଲା । ରାଣୀହାଟ ସ୍କୁଲର ପୁରାତନ ଛାତ୍ର ଥିଲେ ନବଘନ । ହେଡ଼ମାଷ୍ଟର ୰ବାଞ୍ଛାନିଧି ବାବୁ ମାଗିଥିଲେ ''ଗୁରୁ ଦକ୍ଷିଣା'' ରାଣୀହାଟ ହାଇସ୍କୁଲର ବିକାଶ ପାଇଁ କାର୍ଯ୍ୟ—ଏହାହିଁ ଥିଲା ତାଙ୍କର ଗୁରୁ ଦକ୍ଷିଣା । ନବଘନ ସେଇଥି ପାଇଁ କାର୍ଯ୍ୟ ଆରମ୍ଭ କଲେ ଏବଂ ତାହା ତାଙ୍କର ବହୁ ସମୟ ନେଲା ।

ପରେ ସେ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଜଗବନ୍ଧୁ ସ୍ୱାଇଁ ଏବଂ ସ୍ୱର୍ଗତ ସମଦ୍ ଖାଁଙ୍କ ସହ ମିଶି ଓଡ଼ିଶା ମେସିନାରୀ ପରିଚାଳନା କଲେ । ଏହା ଏକ ସମୃଦ୍ଧ ଅନୁଷ୍ଠାନ ରୂପେ ଗଢ଼ିଉଠି ଥିଲା ।

ପରେ ସମୟର ବାତଚକ୍ରରେ ତାହା ହଜିଗଲା ଏବଂ ନବଘନ ପୁଣି ଫେରିଲେ ନିଜର ସ୍ୱାଧୀନ ବ୍ୟବସାୟକୁ । ବ୍ୟବସାୟ କଲେ କିନ୍ତୁ ନାଁ ସେଥିରେ ତାଙ୍କର ମନ ଭରିଲା ନାଁ ସେ ଫେରିପାରିଲେ ସକ୍ରିୟ ରାଜନୀତିକୁ । କାରଣ ରାଜନୀତି ମଧ୍ୟ ବିପର୍ଯ୍ୟସ୍ତ ହେବାକୁ ଆରମ୍ଭ କରିଥିଲା ।

ନବଘନ ସେଇଯୋଗୁଁ କେବଳ ଜନମଙ୍ଗଳ କାର୍ଯ୍ୟରେ ହିଁ ନିଜକୁ ବିନିଯୋଗ କରି ରଖିଲେ ।

ସମୟ ଅତିକ୍ରାନ୍ତ ହେବାକୁ ଲାଗିଲା । ନବଘନ ରୋଗର ଶିକାର ହେଲେ । ବହୁମୂତ୍ର, ରକ୍ତଚାପ ତାଙ୍କୁ ଖାଇବାକୁ ଲାଗିଲା । ପାରିବାରିକ ଜଞ୍ଜାଳ ମଧ୍ୟ ତାଙ୍କୁ ଗ୍ରାସ କରିଗଲା । ମାନସିକ ଦୁଃଶ୍ଚିନ୍ତା ବହୁମୂତ୍ର ଏବଂ ରକ୍ତଚାପ ରୋଗକୁ ବୃଦ୍ଧି କରେ ଏବଂ ତାହାହିଁ ହେଲା ।

ସନ୍ଧ୍ୟା ଆସିବାକୁ ଆଉ ଡେରି ନାହିଁ । ନବଘନ ସହପାଠୀ ପ୍ୟାରୀମୋହନ, ପ୍ରଫୁଲ୍ଲ ଏବଂ ରାମ ରାୟ ସହିତ ଅବସର କଟାଇବାକୁ ଲାଗିଲେ । ପିଲାଦିନର ସ୍ମୃତି ପଖାଳିବା ତାଙ୍କର ଥିଲା ଅନ୍ୟତମ କାର୍ଯ୍ୟ । ଆଉ କଣ କରି ପାରିବେ ସେ ?

ସାଙ୍ଗ, ସହପାଠୀ, ବନ୍ଧୁମାନେ ଧୀରେ ଧୀରେ ବିଦାୟ ନେଲେଣି । ଗଗନ ବିହାରୀ ଜେନା ସେମାନଙ୍କ ମଧ୍ୟରେ ମୁଖ୍ୟ । ସେଦିନ ଘରେ ତାଙ୍କର ଚିତା ଜଳିଲା ବେଳେ ସେ ସେଇ କଥା ମଖାଳୁଥିଲେ ।

ହଠାତ୍ ସେଦିନ ସେଇ ସମୟ ଆସିଗଲା । ନବଘନ ଜେନା ଆମ ସମସ୍ତଙ୍କଠାରୁ ବିଦାୟ ନେଇ ଚାଲିଗଲେ । କୁଆଡ଼େ ଗଲେ ? ସେ ଅନନ୍ତ ପ୍ରଶ୍ନର ଉତ୍ତର ତ ମିଳିନାହିଁ ।

ନବଘନ ଜେନା ଆଉ ନାହାନ୍ତି । କେହି ରହିବେ ନାହିଁ ଏହାହିଁ ତ ଚିରନ୍ତନ ସତ୍ୟ । ସମସ୍ତର ବାଲିରେ ତାଙ୍କର ପାଦ ଚିହ୍ନ ଦୁକୁ ଦୁକୁ ହୋଇ ଜଳୁଥିବ ବହୁ ଦିନ ଧରି । ତାଙ୍କର ମୃତ୍ୟୁରେ ପତାକା ଅର୍ଦ୍ଧନମିତ ହେଲା ନାହିଁ, ଖବର କାଗଜରେ ଫଟୋ ବାହାରିଲା ନାହିଁ , ବହୁ ସଭାରେ ଶୋକ ପ୍ରସ୍ତାବ ପଠିତ ହେଲା ନାହିଁ କିନ୍ତୁ ଏହାହିଁତ ସତ୍ୟ ବହୁ ସୈନିକଙ୍କ ପାଇଁ, ଯେଉଁ ମାନଙ୍କର ଦାନରେ,ତ୍ୟାଗରେ ଦେଶ ସମୃଦ୍ଧ ହୁଏ କିନ୍ତୁ ସେମାନଙ୍କ ପାଇଁ କେବଳ "ଅଜଣା ସୈନିକ" ଙ୍କ ସମାଧି ତିଆରି ହୁଏ ଏବଂ ସେଇଠି ସମଗ୍ର ଜାତି ଶ୍ରଦ୍ଧାଞ୍ଜଳି ଜଣାଏ, ମସ୍ତକ ଅବନତ କରି ଠିଆ ହୁଏ କାରଣ ସେଇମାନେ ଆପଣାକୁ ବଳିଦାନ ଦେଇ ନଥିଲେ ତ ଦେଶ ସମୃଦ୍ଧ ହୋଇନଥାନ୍ତା ।

ନବଘନ ସେଇ ସୈନିକଙ୍କ ମଧ୍ୟରୁ ଅନ୍ୟତମ । ସେ ଦିନ ଥିଲା ୧୨ଟା ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ । ସ୍ୱାଧୀନ ଭାରତର ପତାକା ଉତ୍ତୋଳିତ ହେଉଛି । ନବଘନ ପ୍ରଶ୍ନ କରିଥିଲେ ରେଭେନ୍ସା କଲେଜର ପୋର୍ଟିକୋ ପାଖରେ ଠିଆ ହୋଇ । "ଏଇ କଣ ଆମର ସ୍ୱାଧୀନତା ? ଯେଉଁଥିପାଇଁ ସହିଦମାନେ ବଳିଦାନ ଦେଲେ ତାହା ପୂରଣ ହେବ ତ ?" ।

ନବଘନ, ସେ କାମତ ପୂରା ହୋଇ ନାହିଁ । ସେ ସ୍ୱାଧୀନତା କଣ ଆସିଲାଣି ? ଆହୁରି ତ ଅନେକ କାମ ବାକି ଅଛି । ତା'ହେଲେ ତମେ ଗଲ କୁଆଡ଼େ ଏବଂ ଗଲ କାହିଁକି ?



# ନରମାନଙ୍କ ମଧ୍ୟରେ ସିଂହ

ହଠାତ୍ ସମ୍ବାଦପତ୍ରର ପୃଷ୍ଠାରେ ସେଇ ସମ୍ବାଦ । ନରସିଂହ ମହାପାତ୍ର ଆଉ ନାହାନ୍ତି । ଜନ୍ମିଲେ ମରଣ ସତ୍ୟ । ବୟସ ୯୫ ବର୍ଷ ହୋଇଥିଲା । ଅନେକ ଝଡ଼ଝଞ୍ଜା ତାଙ୍କୁ ବୋଧହୁଏ ପଥର କରିଦେଇଥିଲା । ସେଇଯୋଗୁଁ ସେ ରହିଯାଇଥିଲେ ଏ ପର୍ଯ୍ୟନ୍ତ । ଶେଷ ଦେଖା ହୋଇଥିଲା ପୁତ୍ର ପଦ୍ମାରବିନ୍ଦ ମହାପାତ୍ରଙ୍କର ଶୁଦ୍ଧିକ୍ରିୟା ଦିନ । ପଚାରିଥିଲେ । ତୋ' ବାପା ଦାଦା କେତେ ସୁଖରେ ଚାଲିଗଲେ । ମୁଁ ରହିଯାଇଛି ସବୁ ଦୁଃଖ ଦେଖିବା ପାଇଁ । ସେ ଆମର ପଡ଼ୋଶୀ ଥିଲେ ବହୁ ସ୍ଥାନରେ । ସମ୍ବଲପୁରରୁ ଅନୁଗୋଳ । ସ୍ପଷ୍ଟ ପଖାଳି ହୋଇଯାଏ । କଥା କହନ୍ତି ବଡ଼ ପାଟିରେ । ହସନ୍ତି ଆକାଶଭଙ୍ଗା ହସ । ବେଶ୍ ନବରଙ୍ଗିଆ କଥା ମଧ୍ୟ କହନ୍ତି । ଯିଏ ଥାନ୍ତୁ, ସେଥିପାଇଁ ତାଙ୍କର ଖାତିର ନଥାଏ । ମନେପଡ଼ୁଛି । ଥରେ ମୋ ବାପା ପଚାରିଲେ, "କ'ଣ ନରସିଂହ ବାବୁ ! ଆପଣଙ୍କ ସ୍ତ୍ରୀ ନାହାନ୍ତି ନା କ'ଣ ଆଜି ?" ଯାହା ଉତ୍ତର ସେ ଦେଲେ ମୋ ବାପାଙ୍କୁ ଛାଡ଼ ଆମେ ବାକି ଯେତେ ଲୋକ ଥିଲୁ ସମସ୍ତେ ପାରି ସେ ଜାଗା ଛାଡ଼ । ଜେଲଖାନା, ପଳାତକ ଜୀବନ କାଟି ଅନେକ ଦିନ ପରେ ଫେରିଥାଏ । ଦେଖାହେଲା । ପ୍ରଥମ ସାକ୍ଷାତରେ ଖାଇବାକୁ ନିମନ୍ତ୍ରଣ । କହେ, ଏତେ କଷ୍ଟ ସହି ଆସିଲୁ । ତୋତେ ଗୋଟାଏ ସମ୍ବର୍ଦ୍ଧନା ଦେବା ଉଚିତ । ଅନ୍ତରୀଣ ବନ୍ଦୀ ଥିଲାବେଳେ ବହୁ ବର୍ଷ ପଢ଼ା ଛାଡ଼ିବା ପରେ ଆଇ. ଏ. ପରୀକ୍ଷା ଦେଇ ପାଶ୍ କରିଯାଇଥାଏ । କେଉଁ ଗୋଟାଏ ବଡ଼ ଖବର ଯେ ! ତେଣୁ କାହାକୁ କହିନଥାଏ କିନ୍ତୁ ତାଙ୍କର ଶୈନ୍ୟ ଆଖିରୁ ଖବରକାଗଜରେ ପ୍ରକାଶିତ ସେଇ ନାମଟା ମଧ୍ୟ ଖସି ଯାଇନଥାଏ । ଦାଣ୍ଡରେ ପାଟି ଶୁଭିଲା । ବିରାଟ ପାଟି । ବାପା ଗଲେ ଭେଟିବା ପାଇଁ । ଆମେ ତୁମକୁ ଭେଟିବାକୁ ଆଜି ଆସିନାହୁଁ । ପୁଅକୁ ଭେଟିବା ପାଳି ଆଜି । ବାପା ନିଜେ ସେ ଖବର ପାଇନାହାନ୍ତି । ତେଣୁ ଏକ ବିରାଟ ହସର ତାନ ଭିତରେ ନରସିଂହବାବୁ ବାପାଙ୍କୁ ଯାହା କହିଲେ ମୁଁ ଲେଖିପାରିବି ନାହିଁ । ହସର ରୋଳ ଛୁଟିଲା ଦୁହିଁଙ୍କ ମୁହଁରୁ । ମୋର ଭଗ୍ନୀପତି ଭଗବାନ ପଟ୍ଟନାୟକ ତାଙ୍କର ସହକର୍ମୀ । ପ୍ରତି ସନ୍ଧ୍ୟାରେ ସେ କହନ୍ତି ନରସିଂହବାବୁଙ୍କର ମଜା ଗପ । ମୋର ଏ ପର୍ଯ୍ୟନ୍ତ ମନେଅଛି "ନାସ୍ତି ଓ ପି. ଡବ୍ଲ୍ୟୁ. ଡି. ପୋଷ୍ଟର", "ଭଗବାନଙ୍କ ନିଦ୍ରାଭଙ୍ଗ", "ମନ୍ତ୍ରୀ ଏବଂ ଘୋଡ଼ା" ଗଳ୍ପ । ଅନେକ କଥା ହାବୁକା ମାରେ । ଆଖି ଭରିଯାଏ ଲୁହରେ । ମୋର ଡାକ ନାଁରେ ଡାକିବା ଲୋକ ସବୁ ହଜିଗଲେଣି । ସେଇ ସଂକ୍ଷିପ୍ତ

ସଖ୍ୟାରୁ ଆଜି ଆଉ ଜଣେ ହଜିଗଲେ । ସମସ୍ତେ ତ ଦିନେ ଯିବେ । ବିସ୍ମୟ ହୋଇଗଲା । ସେ ବିସ୍ମୟସବୁ ତ ଆମ ପୀଢ଼ିର ଲୋକେ ଛୁଇଁ ପାରିବେ ନାହିଁ । ସ୍ମୃତି ବିଭ୍ରମ କିଛି କିଛି ଘଟିଥିଲା । ସେଦିନ ସେଇ କଥା ମୁଁ ଅନୁଭବ କରୁଥିଲି । ନାଁ ମନେ ପକାଇପାରୁ ନଥିଲେ । ତେଣୁ ବିରକ୍ତ ହେଉଥିଲେ । ସୁନ୍ଦର ମୁହଁ । କିନ୍ତୁ ବିଶେଷ ବିଚଳିତ ନଥିଲା ପରି ମନେ ହେଉଥିଲା । ଦୀପ ଲିଭି ଲିଭି ଆସୁଥିଲା । ତେଣୁ ସେ ନିର୍ଲିପ୍ତ ହୋଇ ଯାଉଥିଲେ । ସେ ଆଜି ନାହାନ୍ତି । ସମୟର ବେଗବାନ୍ଧରେ ସବୁ ସ୍ମୃତି ହଜିଯିବ । କିନ୍ତୁ ଯେଉଁମାନେ ତାଙ୍କର ସମ୍ପର୍କରେ ଆସିଛନ୍ତି, ସେମାନଙ୍କ ପାଖରେ ସେ ସ୍ମୃତି ହୋଇ ରହିବେ ଚିରକାଳ । ସମୟର ବାଲିରେ ସେ ଜକବେ ଦୂରୁ ଦୂରୁ ହୋଇ ବହୁକାଳ ।



# ନଳିନୀ ଦେବୀଙ୍କୁ

ନଳିନୀ ଦେବୀଙ୍କୁ ମୁଁ ଜାଣିଥିଲି ବହୁଦିନରୁ । ସେ ବି ମୋତେ ଜାଣିଥିଲେ । ଯେତେବେଳେ ଦେଖା ହୋଇଛି ସେତେବେଳେ ପଦେ ଦି'ପଦ କଥାବାର୍ତ୍ତା ଯେ ନ ହୋଇଛି ତା' ନୁହେଁ । ଗୋଲାପ ଫୁଲ ଏବଂ କାଜି ନଜରୁଲ ଇସଲାମ୍ ଏ ଦୁଇଟି ହେଉଛି ତାଙ୍କ ସହିତ ଆତ୍ମୀୟତାର ସେତୁ । ତେବେ ପରିଚୟ ଥିଲା ସତ୍ୟ କିନ୍ତୁ ଆତ୍ମୀୟତା ନଥିଲା । ନୀଳମଣି ବାବୁ ସବୁବେଳେ ଆମର ଜେଲର୍ ଆଉ ଆମେ ତାଙ୍କର ପ୍ରିଜନର୍ । ତେଣୁ ଓଡ଼ିଶାର ଘରୋଇ ମନ୍ତ୍ରୀଙ୍କର ଘରର ନିକଟତର ହେବାର ଅବସର ଥିଲା ଖୁବ୍ କମ୍ । ଯଦିଓ ନଳିନୀ ଦେବୀ ଏଇ ଆଲୋକରେ ଉଦ୍ଭାସିତ ହୋଇନାହାନ୍ତି ବା ଉଦ୍ଭାସିତ ହେବାକୁ କୁଣ୍ଠିତ ହୋଇଛନ୍ତି ।

ତାଙ୍କ ସହିତ ପରିଚୟ ହେଲା ବେଳକୁ ତାଙ୍କର ଛୁଟି ନେଉଥିବା ବେଳ ହୋଇଗଲାଣି । ଜୀବନର ଅପରାହ୍ଣ ଲମ୍ବା ଲମ୍ବା କଳା ପାଦ ପକାଇ ମାଡ଼ିଆସିଲାଣି ସେ ପଟରୁ । ସେଇ ସମୟରେ ସେ ମୋତେ ଏକ ପ୍ରବନ୍ଧ ଲେଖିବାକୁ କହିଲେ 'ମରୁତୀର୍ଥ' ପାଇଁ । ମୋର ଦୃଷ୍ଟିଭଙ୍ଗୀ ସମ୍ପର୍କରେ ସେ ସଚେତନ ଥିଲେ । ତା' ସତ୍ତ୍ୱେ ଏଇ ଅନୁରୋଧ ଆସିଥିଲା । ଏକ ନିର୍ଦ୍ଦିଷ୍ଟ ରାଜନୈତିକ ସମସ୍ୟା ସମ୍ପର୍କରେ ଲେଖାଟିଏ ଲେଖି ଜଣେ ବିପ୍ଳବୀ ବନ୍ଧୁଙ୍କ ହାତରେ ତାଙ୍କ ପାଖକୁ ପଠାଇଲି । ଲେଖାଟିକୁ ବିପ୍ଳବୀ ବନ୍ଧୁଙ୍କୁ ପଢ଼ିବାକୁ କହିଥିଲି ତା' ପୂର୍ବରୁ । ସେ ପଢ଼ିସାରି ଲେଖାଟିକୁ ଫେରାଇ ଦେଇ କହିଲେ, "କାହିଁକି ମିଛଟାରେ ପରିଶ୍ରମ କରିବ ? ଏଭଳି ଦୃଷ୍ଟିଭଙ୍ଗୀ ନେଇ ଏଇ ଲେଖା କ'ଣ 'ମରୁତୀର୍ଥ'ରେ ପ୍ରକାଶ ପାଇବାର କୌଣସି ସମ୍ଭାବନା ଅଛି ?"

ଲେଖା ପ୍ରକାଶ ପାଇଥିଲା ଏବଂ ଆଶ୍ଚର୍ଯ୍ୟ କରିଥିଲା ତାଙ୍କର ଏବଂ ମୋର ବହୁ ବନ୍ଧୁଙ୍କୁ ! ଏଇଠୁ ଆରମ୍ଭ ହେଲା ପ୍ରକୃତ ପରିଚୟ ।

ନଳିନୀ ଦେବୀ ସେତେବେଳକୁ ରୋଗାକ୍ରାନ୍ତ ହେବାକୁ ଆରମ୍ଭ କଲେଣି । ଚିକିତ୍ସା-ବିଶାରଦମାନେ ମତ ଦେଉଥାନ୍ତି ଯେ ଏହା କିଛି ନୁହେଁ, ସାମାନ୍ୟ ନାଳରକ୍ତ ଝାଡ଼ା, ଜର, ପେଟଫମ୍ପା ଇତ୍ୟାଦି । ସ୍ୱାମୀଙ୍କର ତେଜରେ ଉଦ୍ଦୀପ୍ତ ନ ହେବା ପାଇଁ (ଆଜିକାଲି ଯୁଗରେ ତ ସ୍ତ୍ରୀମାନଙ୍କର ତେଜରେ ଉଦ୍ଦୀପ୍ତ ହୋଇ ସ୍ୱାମୀମାନେ କୁଆଡ଼େ ନା କୁଆଡ଼େ ମାଡ଼ି ଯାଉଛନ୍ତି) ଅଣ୍ଟାରେ ଲୁଗା ଖୋସିଥିବା ନଳିନୀ ଦେବୀ ସମସ୍ତ ସମୟରେ ଯନ୍ତ୍ରଣାରେ ବିବର୍ଣ୍ଣ ହୋଇଯାଇଛନ୍ତି । କିନ୍ତୁ ରୋଗ ବା ତା'ର ଦାହ

ଭିତରେ ବି ତାଙ୍କର ଦରଦ ଅକୁଣ୍ଠ ରହିଛି ଜୀବନ ପ୍ରତି—ଜୀବନର ସୌନ୍ଦର୍ଯ୍ୟମୟ ବିଭବ ଆଉ ତା'ର ପ୍ରତୀକ ମଣିଷ ପାଇଁ ।

ସେ ମହାପୁରୁଷ ଆଦୌ ନଥିଲେ । ମହାପୁରୁଷ ହେବାପାଇଁ ଯେଉଁ ନିର୍ଲିପ୍ତତା, ଯେଉଁ ଉଚ୍ଚାଟତ୍ୱ ମନୋଭାବ ରହିବାର କଥା, ତାହା ତାଙ୍କର ନଥିଲା । ଜୀବନ ପ୍ରତି ସେ ଜଡ଼ାଇ ହୋଇ ରହିଥିଲେ । ସେଇଯୋଗୁଁ ଜଣେ ମଣିଷ ଥିଲେ ସେ, ମାତ୍ର ମଣିଷ ଭିତରେ ମଣିଷଟିଏ ଥିଲେ ।

ନଳିନୀ ଦେବୀଙ୍କର ଯିବା ବେଳ ହୋଇଯାଇଥିଲା । ଜୀବନମରଣର ସନ୍ଧିକ୍ଷଣରେ ସେ ପହଞ୍ଚି ଯାଇଛନ୍ତି । କ୍ୟାନସର ରୋଗୀର ଶେଷାବସ୍ଥାର ଯନ୍ତ୍ରଣା ! ପ୍ରାୟ ସବୁଦିନେ ଦେଖା ହୋଇଛି ସେଦିନ ସପ୍ତାଚଉଦ ପର୍ଯ୍ୟନ୍ତ । ନଳିନୀ ଦେବୀ କବିତାକୁ ଭଲ ପାଆନ୍ତି ଖୁବ୍ । ସେଇଯୋଗୁଁ ଡାକ୍ତରଖାନାକୁ ଗଲେ ଜାଣିଶୁଣି କବିତା ଆବୃତ୍ତି କରଚ ଖୁବ, ତାଙ୍କର ରୋଗର ଯନ୍ତ୍ରଣା ବା ସେ ସନ୍ଦାନ୍ତରେ ତାଙ୍କର କରୁଣ କାହାଣୀ ପ୍ରତି ଦୃଷ୍ଟି ନ ଦେଇ ଜାଣିଶୁଣି ।

ଆଉ ତା'ପରେ ଦେଖିଛି ସେଇ ରୋଗାକ୍ରାନ୍ତ ବେଦନାକ୍ଲିଷ୍ଟ ମୁହଁ ଉପରେ ଏକ ପ୍ରଶାନ୍ତ ନଇଁ ଆସୁଚ । ନଳିନୀ ଦେବୀଙ୍କର ମୁହଁ ଉପର ବିବର୍ଣ୍ଣତାକୁ ଯେମିତି ପୋଛି ନେଉଚ କବିତା ତା'ର ଧାଡ଼ିର କାକରେ ।

"ଆମି ବିଦ୍ରୋହୀ ଭୃଗୁ
ଭଗବାନ ବୁକେ ଏଙ୍କେ ଦେଇ ପଦ ଚିହ୍ନ
ଆମି ଖିଅଲି ବିଧିର ଶାସନ କରିବ ଭିନ୍ନ
ଆମି ବିଦ୍ରୋହୀ ରଣକ୍ଲାନ୍ତ,
ଆମି ସେଇଦିନ ହବୋ ଶାନ୍ତ ।"

ନଳିନୀ ଦେବୀ ଶୋଇଥିଲେ । ଉଠି ବସିଲେଣି । କବିତା ତାଙ୍କର ଜୀବନ୍ୟାସ ! ସେଇଯୋଗୁ ସେଦିନର ସନ୍ଧ୍ୟାରେ ତାଙ୍କର ମୃତ୍ୟୁ-ଶୀତଳ ଦେହ ପାଖରେ ବସି ଅଶ୍ରୁ ଧାରା ଢାଳିଲା ବେଳେ ମନେହୋଇଛି କ୍ଷଣିକ ପାଇଁ – ଆଜି ବି ଆବୃତ୍ତି କଲେ ତମେ ନଳିନୀ ଦେବୀ ଉଠିବ କି ?

ନଳିନୀ ଦେବୀଙ୍କୁ ସମସ୍ତେ ମାମା ବୋଲି ଡାକନ୍ତି । ମୁଁ କିନ୍ତୁ ତାଙ୍କୁ ସବୁବେଳେ ଡାକଚ 'ନଳିନୀ ଦେବୀ' ବୋଲି ।

"ଆପଣଙ୍କର ସାର୍ଟଟା କାହିଁକି ମଇଳା ହୋଇଚ ? କ'ଣ କମଳ (ସେ କମଳ ବୋଲି ଡାକନ୍ତି ନାହିଁ) ସାର୍ଟଟା ଧୋଇ ଦେଇନ ?

"ସାର୍ଟ ଆଉ ନଥିବ । ସେଇଯୋଗୁଁ ହୁଏତ ଧୂଆଁହୋଇ ନଥିବ ଅର୍ଦ୍ଧ-ସତ୍ୟ, ଅର୍ଦ୍ଧ-ପରିହାସ ।

"ତୁମକୁ ଚିଠି ଦେଇନ ?" କଥାର ମୋଡ଼ ବୁଲାଇଲେ ନଳିନୀ ଦେବୀ ।

ମୁହଁରେ ତାଙ୍କର ଦଆହୋଇଛି ଲୁଗା । ପରିଦର୍ଶକମାନଙ୍କର ବି । ତଥାପି ତା'ର ଉପରେ କୁଞ୍ଚିତ ହୋଇଯାଇଛି କପାଳ ।

ନଳିନୀ ଦେବୀଙ୍କର ହମୌନ ଟ୍ରିଟମେଣ୍ଟ ଚାଲିଛି । ବାହାରକୁ ଆସିବା ବି ମନା ।

ତା' ପରଦିନ ଘରେ ଦେଖିଲି ଏକ ପୁଡ଼ିଆରେ ରଖାଯାଇଚି ସାର୍ଟ ଆଉ ପ୍ୟାଣ୍ଟ କନା । ଚାକରକୁ ମନାକରି ଦିଆଯାଇଛି କହିଁବା ପାଇଁ । ଗତରେ ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ନଳିନୀ ଦେବୀ ମୁରୁକି ମୁରୁକି ହସୁଛନ୍ତି ଆଉ କିଛି ନଜାଣିଲା ପରି କହିବାକୁ ଆରମ୍ଭ କରିଛନ୍ତି "ନବବାବୁ (ପ୍ରକାଶକ ବନ୍ଧୁ ଶ୍ରୀ ନବକିଶୋର ମହାପାତ୍ର) ରାଜି ହୋଇଛନ୍ତି 'ଥ୍ରୀ ସିଷ୍ଟର୍' ବହିଟିର ଓଡ଼ିଆ ଅନୁବାଦ 'ତିନି ଭଉଣୀଙ୍କୁ' ଛାପିବା ପାଇଁ । ଆପଣ ସେଇଟା ଟିକିଏ ଦେଖି ଦିଅନ୍ତେ ନାହିଁ ?"

ଛୋଟିଆ ଛୋଟିଆ ଘଟଣା । ସେ ସବୁ ଆଜି ଆସି ହାତୁଡ଼ିକା ମାରେ । କଲମ ମୁନକୁ ରୁନ୍ଧିଦିଏ ।

ମରୁତୀର୍ଥର ପ୍ରତ୍ୟେକ ପୃଷ୍ଠା ହେଉଛନ୍ତି ନଳିନୀ ଦେବୀ ନିଜେ । ମୋ ଭଳି ବହୁ ବ୍ୟକ୍ତି ତା'ର କଳେବରକୁ ପୁଷ୍ଟ କରିଥାଇ ପାରନ୍ତି, ସମ୍ପାଦନାରେ ସାହାଯ୍ୟ କରିଥାଇ ପାରନ୍ତି; କିନ୍ତୁ ସେ ସମସ୍ତେ ଏକମତ ହେବେ ଯେ ନଳିନୀ ଦେବୀଙ୍କର ହାତର ପରଶ ପ୍ରତ୍ୟେକ ପୃଷ୍ଠା ନିଶ୍ଚିତ ଭାବରେ ବହନ କରିଛି । ସେଇ ଟିକକକୁ କାଢ଼ି ନିଅ, ଦେଖିବ 'ମରୁତୀର୍ଥ" ଖାଲି 'ମରୁ'ରେ ପରିଣତ ହୋଇଛି !

ସେଦିନ ସନ୍ଧ୍ୟାରେ ସେ ବାହାରିଗଲା ପରେ ବହୁ ଅନୁରୋଧ, ବହୁ ପ୍ରଶ୍ନ ଶୁଣିବାକୁ ପଡ଼ିଛି – "ମରୁତୀର୍ଥ" ବାହାରିବକି ? "ମରୁତୀର୍ଥ"କୁ ବଞ୍ଚାଇ ରଖିବା ହେବ ତାଙ୍କର ତିଳତର୍ପଣ, ଏଭଳି ବହୁ ଉକ୍ତି ଶୁଣିଛି ମୁଁ । କିନ୍ତୁ ଯେ ଗଲା ସେ ଗଲା – ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପରେ ଭାଷାକୋଷ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରେ ଶାରଳା ଦାସଙ୍କ ମହାଭାରତ ବା ପ୍ରାଚୀ ଗ୍ରନ୍ଥମାଳା, ଏ ସବୁତ ଆମ ଆଖି ଆଗର କଥା । ବନ୍ଧୁମାନେ ଆହୁରି ବହୁ ବେଦନାତୁର କଥା କହିବେ । ପୁଅମାନେ ଅଛନ୍ତି ବୋଲି ସତୀଚଉରାର କେତେକ ସମାଧିରେ ରଙ୍ଗ ଲାଗୁଛି, ଆଉ ପୁରୁଷଙ୍କୁ ତାହା ବି ରହିବ ନାହିଁ !

ଆମ ଦେଶରେ ଲୋକେ ହଜିଲା ମଣିଷକୁ ଖୋଜନ୍ତି, ବାପା ଦାଦାଙ୍କୁ ମନେପକାନ୍ତି ନିର୍ବାଚନ ଭେଳା କରିବା ପାଇଁ, ଝୋଟ ବୈତରଣୀ ପାର ହେବାପାଇଁ ।

ବାପା ଦାଦାଙ୍କର ଅସ୍ଥି ଖୋଜୁଁ ଆମେ ଗଙ୍ଗାରେ ଶ୍ରାଦ୍ଧ ଦେଇ ଦାୟିତ୍ୱରୁ ମୁକ୍ତ ପାଇବା ପାଇଁ ନ ହେଲେ ସମ୍ପତ୍ତିର ଭାଗ ପାଇବା ପାଇଁ । ନଳିନୀ ଦେବୀ ତ ଥିଲେ ମାତ୍ର ଜଣେ ଲେଖକ ଆଉ ସେ ପୁଣି ବିବେକ-ସମ୍ପନ୍ନା ଲେଖକ – ଏ ଦେଶର ବଡ଼ ବିପଦ ଭିତରୁ ଗୋଟିଏ । ସେଇଯୋଗୁଁ ସେ କେବଳ ବଞ୍ଚି ରହିବେ, ମଣିଷର ସେଇ ସ୍ମୃତିରେ ଯାହାକୁ ମହାକାଳ ସହଜରେ ଧୋଇ ପାରିବ ନାହିଁ । ତାଙ୍କର ଚିତାରେ ସେଦିନ ପ୍ରତୀକ ଭାବରେ କିଏ ଜଣେ 'ମରୁତୀର୍ଥ' ଖଣ୍ଡିଏ ରଖିଦାକୁ କହିଥିଲେ ବୋଲି ମନେପଡ଼ୁଛି ।

ଶ୍ରୀମତୀ ନଳିନୀ ଦେବୀ ରାଜନୀତିଗ୍ରସ୍ତ କିନ୍ତୁ ବଞ୍ଚି ରହିବେ ଏତେ କାଳ ଧରି ଯେ ତାହା କଳନା କରିବା କଠିନ ହେବ । ଏଇ ଦୃଷ୍ଟିରୁ ସେ ଖାଲି ରାଜନୈତିକ ନେତା ବା ମନ୍ତ୍ରୀଙ୍କର ସହଧର୍ମିଣୀ ବା ସେଇ କୋଠାର ମାଲିକାଣୀ ବା ଅମୁକ କମ୍ପାନୀର ସେୟାର ହୋଲ୍ଡର ହୋଇନାହାନ୍ତି ବୋଲି ଯେଉଁମାନେ ପାପଙ୍କରେ ତାଙ୍କୁ ପକାଉଥିଲେ, ସେମାନଙ୍କର ହିସାବକୁ ଭୁଲ୍ ବୋଲି ପ୍ରମାଣିତ କରି ନଳିନୀ ଦେବୀ ଚାଲି ଯାଇଛନ୍ତି ।

ଆଜିଠାରୁ ବହୁ ବହୁ ବର୍ଷ ପରେ ଯେତେବେଳେ ଆମର ଉତ୍ତରାଧିକାରୀମାନେ ସେମାନଙ୍କର ପୂର୍ବପୁରୁଷଙ୍କୁ ମନେପକେଇବେ, ସେତେବେଳେ ଓଡ଼ିଶା ରାଜ୍ୟର ମନ୍ତ୍ରୀ କିଏ ଥିଲା, ଇଞ୍ଜିନିଅର କିଏ ଥିଲା, କାହାର କୋଠା ତୋଳା ହେଲାବେଳେ ମାଲିକଙ୍କ ଅପେକ୍ଷା ମାଲିକାଣୀଙ୍କର ଉତ୍ପାତରେ କଣ୍ଟ୍ରାକ୍ଟରମାନେ ଥରହର ହେଉଥିଲେ ସେ କଥା ପୋଛି ହୋଇଯିବଣି ବହୁକାଳରୁ । ଯେମିତି ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ଆଜିଠାରୁ ଶହେ ବର୍ଷ ପରେ ବଞ୍ଚି ରହିବେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥିଲେ ବୋଲି ନୁହେଁ, 'କାଳୀଜାଈର' ଲେଖକ ବୋଲି. ଠିକ୍ ସେମିତି ଆଜିଠାରୁ ଶହେ ବର୍ଷ ପରେ ନଳିନୀ ଦେବୀ ବଞ୍ଚି ରହିବେ 'ମରୁତୀର୍ଥ' ପାଇଁ, "ନଜରୁଲ ସଞ୍ଚୟନ" ପାଇଁ, ଆପଣାର କାବ୍ୟିକ କୃତି ପାଇଁ । ଆଉ ଠିକ୍ ସେତିକବେଳକୁ ବହୁ ରାଜନୈତିକ ଜ୍ୟୋତିଷ୍କଙ୍କୁ ଇତିହାସ ଆଡ଼େଇ ଦେବଣି ବିସ୍ମୃତିର ଗର୍ଭକୁ ।

ନଳିନୀ ଦେବୀଙ୍କୁ ଯେଉଁମାନେ ଜାଣନ୍ତି, ସେମାନଙ୍କ ମଧ୍ୟରୁ ଯେଉଁମାନେ ଜାଣନ୍ତି ଲେଖିକା, ସମ୍ପାଦିକା, ଅନୁବାଦିକା ନଳିନୀ ଦେବୀଙ୍କୁ ସେଇମାନଙ୍କର ହୃଦୟରେ ନଳିନୀ ଦେବୀ ହିଁ ବଞ୍ଚି ରହିବେ । ଆଉ ସେଇଥି ପାଇଁ ସେଦିନ ତାଙ୍କର ଶୀତଳ ଦେହର ସ୍ୱର୍ଗପଟରେ ଯେଉଁମାନେ ଠୁଳ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଆସିଥିଲେ ନଳିନୀ ଦେବୀଙ୍କ ପାଇଁ । ଶୋକ ତାଙ୍କର ଥିଲା ସ୍ୱତଃସ୍ଫୂର୍ତ୍ତ । କୁଟନୈତିକ ଶୋକ, ରାଜନୈତିକ ଲୂତାଜାଲରେ ଆବଦ୍ଧ ବିବୃତି ପାଦ ଗଣି ଗଣି ଓହ୍ଲାଇ ଯାଉଥିଲା ତଳକୁ । ମଣିଷରୁ ପଶୁତ୍ୱକୁ !

ନଳିନୀ ଦେବୀ ମଣିଷ ଥିଲେ । ମାନବିକ ଦୋଷଦୁର୍ବଳତା ଭୁଲ୍ ଭ୍ରାନ୍ତି ତାଙ୍କର ବି ଥିଲା । କିନ୍ତୁ ସେଇ ଭିତରେ ତାଙ୍କର ସେଇ ଦିଗଟି 'ଅଦ୍ୱା' ଥିଲା ସହଯୋଗୀ ମଣିଷର ପାଇଁ, ସେଇ ସମ୍ବେଦନଶୀଳ ମନ ଥିଲା ଅନ୍ୟକୁ ବୁଝିବା ପାଇଁ ଯାହା ତାଙ୍କର ସ୍ମୃତିକୁ ଜୀବନ୍ତ କରି ରଖିବ । ତାଙ୍କ ପାଇଁ ସମାଧି ତୋଳା ହେବ କି ନାହିଁ, ଶ୍ରଦ୍ଧାଞ୍ଜଳି ଦିଆହେଲା କି ନାହିଁ—ସେ ସବୁର ବହୁ ଦୂରରେ ସେ ଆଜି । ଜୀବନ ଭିତରେ ଯେ ସେ ସବୁକୁ ଲୋଡ଼ି ନାହିଁ, ସ୍ୱୀକାରର ପଟୁଆର, ପାରିଷଦମାନଙ୍କ ହରିବୋଲକୁ ଯେ ଦେଖିଛୁ ସେଇ ଦୂରରେ ଆଉ ସେଇ ହେତୁରୁ, ଧ୍ୟାନଧାରାର ପୋର୍ଟିକୋ ଉପରୁ ସେ ଯେମିତି ଅନାନ୍ତି ସଂଜଗତ୍ତାକୁ ଉଦାର ଆଉ ନିର୍ଲିପ୍ତ ଭାବରେ, ସେ ଆଜି ମରଣରେ ତାକୁ ଲୋଡ଼ିବ କାହିଁକି ?

ଅସୁମାର ଛୋଟ ଛୋଟ କୁନି କୁନି କଥା ମନେ ପଡ଼େ ସେଇ ସଂକ୍ଷିପ୍ତ ଆତ୍ମୀୟତାର । ମଣିଷକୁ ତାର ଭୁଲ୍ ଭ୍ରାନ୍ତି ଆଉ ତା'ର ସାଫଲ୍ୟ ଭିତରେ କଳନା କରିବାର ଏକ ସମ୍ବେଦନଶୀଳ ମନ ତାଙ୍କର ଥିଲା । ଦିନ ତାଙ୍କର କ୍ରମଶଃ ସଂକ୍ଷିପ୍ତ ହୋଇ ଆସୁଥିଲା । ବ୍ୟାଧି ତା'ର କୃଷ୍ଣ ଛାୟା ବିସ୍ତାର କରିବାକୁ ଆରମ୍ଭ କରିଥିଲା । ବେଦନା, ଚିକିତ୍ସା, ଡାକ୍ତର, ଆସନ୍ନ ମୃତ୍ୟୁ—ଆଉ ମରୁଛାୟା, କବିତା, ଅନୁବାଦ, ଜୀବନର ଉନ୍ମାଦ ଚାଲିଥିଲା ସମାନ ଭାବରେ ।

ଭାରି ଜିଦ୍‌ଖୋର ଥିଲେ ସେ । କିନ୍ତୁ ବୁଝନ୍ତିବି ସେ ଠିକ୍ । ଦିନେ ଡାକ୍ତରଖାନାରେ ସେ ମୋତେ ଏକ ଆଲମାରି ଖୋଲି ମଝି ଥାକରୁ କିଛି ଗୋଟାଏ ଜିନିଷ ଆଣିଦେବା ପାଇଁ କହିଦେଲେ । ଆଣିଲାବେଳେ ମୋତେ ସାବଧାନ କରିଦିଆଗଲା ଉପର ଥାକକୁ ନଛୁଇଁବା ପାଇଁ କାରଣ ସେଇଠି ସତ୍ୟସାଇ ବାବାଙ୍କର ବିଭୂତି ଏବଂ ଶ୍ରୀମାଙ୍କର ଆଶୀର୍ବାଦ ଫୁଲ ରହିଛି । ତା'ପରେ ମୁଁ ତାଙ୍କୁ ବାଁ ହାତରେ ଆଣି ଦେଇଦେଲି ସେଇ ବିଭୂତି ଏବଂ ଫୁଲର ପ୍ୟାକେଟକୁ । ଅସ୍ଥିର ନଳିନୀ ଦେବୀ ପାଟି କରି ଉଠିଲେ—"ଆରେ, ଆପଣ ସେଇ ପ୍ୟାକେଟକୁ କାହିଁକି ଆଣିଲେ ! ପୁଣି ବାଁ ହାତରେ । ଗାଧୋଇଛନ୍ତି ନାଁ ?"

ଗାଧୋଇଥିଲି । କିନ୍ତୁ ନାହିଁ କଲି । ନଳିନୀଦେବୀ ଆହୁରି ଅସ୍ଥିର ହୋଇ ଉଠିଲେଣି !

"ନଳିନୀ ଦେବୀ, ଆପଣ ବିଶ୍ୱାସ କରନ୍ତି ଯେ ଏଇ ଆଶୀର୍ବାଦ ବିଭୂତି ମହାକାଳ ବିଜୟୀ ଏବଂ ଓମନିପୋଟେଣ୍ଟ ବୋଲି ? ଏହି ଭୂମା ଯେ ବିଶ୍ୱର ପ୍ରତ୍ୟେକ ରେଣୁ ଭେଦ କରିରହିଛି, ଏ ବିଶ୍ୱାସ ଆପଣଙ୍କର ରହିଛି ? ବୋଧହୁଏ ନୁହେଁ" ।

ନଳିନୀ ଦେବୀ ଚିତ୍କାର କରିଉଠିଲେ "ନିଶ୍ଚୟ ରହିଛି । ଆପଣଙ୍କ ଭଳି ମୁଁ ନାସ୍ତିକ ନୁହେଁ" ।

"ତାହାହିଁ ଯଦି ସତ୍ୟ, ତା ହେଲେ ଏଇ ପ୍ରସାଦ ବାଁ ହାତ ଡାହାଣ ହାତ, ଗାଧୋଇବା ନଗାଧୋଇବା, ଛୁଇଁବା ନଛୁଇଁବାର କେତେ ଊର୍ଦ୍ଧ୍ୱରେ ?"

ନଳିନୀ ଦେବୀ ଚୁପ୍ ହୋଇରହିଛନ୍ତି । ଆଖିରୁ ଲୋତକ ଝରୁଛି ! ହାତଯୋଡ଼ି ପ୍ରଣାମ କରୁଛନ୍ତି ସେ ।

ସେଇ ମଣିଷ, ସେଇ ନାରୀ ନଳିନୀ ଦେବୀ ଆଉ ନାହାନ୍ତି । କେହିତ ରହିବେ ନାହିଁ । ସମୟର ବାଲି ଉପରେ ଯାହାର ପାଦଚିହ୍ନ ଯେତିକ ଉଜ୍ଜ୍ୱଳ ଦିଶେ ତାହାର ଜୀବନଟି ସେତିକ ସାର୍ଥକ ।

ସେଇଥି ପାଇଁ ତାଙ୍କର ମହାଯାତ୍ରାରେ ଯେଉଁ ଅଶ୍ରୁ ଝରୁଥିଲା ତାହା ଥିଲା ମିଶା ମିଶି ସମସ୍ତିଙ୍କର, ଆଉ ସେ ଅଶ୍ରୁ ପାଇଁ ବରାଦ କେହି ଦେଇନଥିଲେ । ସେ ଅର୍ଘ୍ୟ ନଥିଲା ପ୍ରତିଷ୍ଠିତ ନେତା, କୁଶଳୀ ରାଜନୀତିଜ୍ଞ, ଉପମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ସହଧର୍ମିଣୀଙ୍କ ପାଇଁ, ଏହା ଝରୁଥିଲା ସେଇ ମଣିଷଟି ପାଇଁ ଯେ ଥିଲା ଲାଇସେନ୍‌ସ, କୋଟା, ପରମିଟର ହିସାବ ଫର୍ଦ୍ଦର ଆର ପଟରେ । ଯିଏ ପରମିଟ୍ କାଗଜକୁ ଓଲଟାଇ ଆର ପଟରେ ଲେଖୁଥିଲା କବିତା, ସେଇ ନଳିନୀ ଦେବୀଙ୍କ ପାଇଁ ।

ସେ ଗଲେ । ଆମକୁ ବି ଯିବାପାଇଁ ଚିଠି ହୁଏତ ଆସିଗଲାଣି । ତାଙ୍କର ମୃତ୍ୟୁକୁ ପଖାଳିଲା ବେଳେ ମନେହେଉଛି ଏହି ନଳିନୀ ଦେବୀ ବସି ରହିଛନ୍ତି ପୋର୍ଟିକୋ ଉପରେ । ଆଖି ପଡ଼ିଲେ ରକ୍ଷା ନାହିଁ । ଯିବାକୁ ହେବ ।

ଆଖି ଉଠାଇ ପୋର୍ଟିକୋ ଉପରକୁ ଅନାଇଲା ବେଳକୁ କିଛି ନାହିଁ । ଗୋଲାପ ଡାଳ ଶୁଖିଗଲାଣି । କ୍ୟାକ୍‌ଟସ୍ ଗଛଗୁଡ଼ାକ ବଙ୍କାଇ ଗଲାଣି । କ୍ରୋଟନ ଗଛର ପତରେ ମଇଳା ଜମିଯାଇଛି । ଘୂର୍ଣ୍ଣି ବଳେଇଟା ରାସ୍ତା ଉପରେ ଦୌଡ଼ୁଛି । ଧୂ ଧୂ ମରୁଭୂମି !

ନଳିନୀ ଦେବୀ ଆଉ ନାହାନ୍ତି । ଯିଏ ଏହି ଲେଖାକୁ ପଢ଼ିଥାନ୍ତେ ସେ' ନାହାନ୍ତି ।



# ଏକ ମାନବବାଦୀ ରେସନାଲିଷ୍ଟର ପରଲୋକରେ

ହଠାତ୍ ତାଙ୍କର ମୃତ୍ୟୁ ସମ୍ବାଦ, ଖବରକାଗଜରେ, ରେଡ଼ିଓରେ ଏବଂ ଦୂରଦର୍ଶନରେ । ସମାଜବାଦୀ ଆନ୍ଦୋଳନର ନାୟକ, ଲେଖକ, ଶ୍ରମିକ ନାନାସାହେବ ଗୋରେ ଆଉ ନାହାନ୍ତି । ବୟସ ହୋଇଥିଲା ୮୭ ବର୍ଷ । ସହଯୋଦ୍ଧା ଅଚ୍ୟୁତ ପଟ୍ଟବର୍ଦ୍ଧନ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ରାମମନୋହର ଲୋହିଆ, ଜୟପ୍ରକାଶ ନାରାୟଣ । ସମସ୍ତେ ବାହୁଡ଼ି ସାରିଲେଣି । କେବଳ ସେ ହିଁ ରହି ଯାଇଥିଲେ । ଜୀବନ ଗଢ଼ା ହୋଇଥିଲା ଅନ୍ୟ ଉପାଦାନରେ । ମହାରାଷ୍ଟ୍ରର ବ୍ରାହ୍ମଣ ପରିବାର । ଏକ ରକ୍ଷଣଶୀଳ ପରିବାରରେ ଜନ୍ମ ଲାଭ କରିଥିଲେ । କିନ୍ତୁ କଠୋର ସଂଗ୍ରାମ ଭିତରେ ସେ ପାଲଟିଥିଲେ ନାସ୍ତିକ । ମଣିଷକୁ ଭଲ ପାଇବା ତାଙ୍କର ଯେତିକି ନିବିଡ଼ ହୋଇ ଉଠିଥିଲା, ସେତିକି ରେସନାଲିଷ୍ଟ ଏବଂ ନାସ୍ତିକ ହୋଇ ଉଠିଥିଲେ ସେ । ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ସେଇ ବିଶ୍ବାସ ଅତୁଟ ରହିଥିଲା । ଜୀବନର କୌଣସି ସଙ୍କଟ ବା ବିପଦ ସମୟରେ ମଧ୍ୟ ଭଗବାନଙ୍କର ଆଶ୍ରା ସେ ଲୋଡ଼ି ନଥିଲେ । ଯୁକ୍ତି, କାରଣ ହିଁ ତାଙ୍କର ଥିଲା ଏକମାତ୍ର ପଥ ପ୍ରଦର୍ଶକ । ବୋଧହୁଏ ଭଗବାନଙ୍କ ଉପରେ ଭରସା ନରଖିବା ପାଇଁ ହିଁ ମୁଁ ବୋଧହୁଏ ଅଭିପ୍ରେତ, ରହସ୍ୟରେ ସେ କହୁଥିଲେ ସବୁବେଳେ । ସ୍କୁଲରେ ପଢ଼ିବା ସମୟରେ ହିଁ ସେ ପଢ଼ିଥିଲେ ସେକ୍ସପିଅର, ତୁଳସୀ ଦାସଙ୍କ ରାମାୟଣ, ମହାଭାରତ ଆଦି ଗ୍ରନ୍ଥ । କିନ୍ତୁ ୧୯୧୫ ମସିହାରେ ପୁଣେ ଫର୍ଗୁସନ କଲେଜରେ ହିଁ ତାଙ୍କର ସମ୍ପୂର୍ଣ୍ଣ ରୂପାନ୍ତର ଘଟିଥିଲା । ପ୍ରସିଦ୍ଧ ସମାଜ ସଂସ୍କାରକ ଗୋପାଳ ଗଣେଶ ଆଗରକରଙ୍କର ଲେଖା ତାଙ୍କୁ ଅନୁପ୍ରାଣିତ କରିଥିଲା । ପ୍ରଜ୍ଞା ଶାଣିତ, ସ୍ଫୁରିତ ହୋଇଥିଲା । ଲାଇବ୍ରେରୀର ଅସୁମାରି ବହିରୁ, କଲେଜର ଲେକଚରରୁ ନୁହେଁ ।

ଆରମ୍ଭ ହେଲା ଲୁଣ ମରା ଆନ୍ଦୋଳନ । ବହୁ ବିଚକ୍ଷଣ ଛାତ୍ର ଆପଣାର କଲେଜ ସ୍କୁଲ ପାଠରେ ଡୋରି ବାନ୍ଧିଥିଲେ । ଜୀବନର ରାଜପଥରେ, କାରାଗାର ଭିତରେ ପାଠ ଆରମ୍ଭ ହେଲା । କାରାଗାର ଭିତରେ ଗୋରେ ପଢ଼ିଲେ କାର୍ଲମାର୍କସ୍ଙ୍କ ଐତିହାସିକ ପୁସ୍ତକ "କମ୍ୟୁନିଷ୍ଟ ମାନିଫେଷ୍ଟୋ" । ଡୋରି ହରାଇବାର କିଛି ନାହିଁ, ଅଛି ଖାଲି ଶୃଙ୍ଖଳ । ତେ। ପାଇଁ ପଡ଼ି ରହିଛି ବିରାଟ ଦୁନିଆ ଜିତିବା ପାଇଁ ।

"ମୋର ପରିଭାକୁ ବିସର୍ଜନ ଦେଲି । କାରାଗାର ଭିତରୁ ମୁଁ ବାହାରିଲି ମାର୍କିଷ୍ଟ ନ ହେଲେ ବି ଏକ ମାନବବାଦୀ, ରେସନାଲିଷ୍ଟ ହୋଇ ଏଥିରେ କୌଣସି ସନ୍ଦେହ ନାହିଁ ।"

ସମାଜବାଦ, ସୋଭିଏଟ ଶାସନ ବ୍ୟବସ୍ଥା ଏବଂ ମାର୍କସବାଦ ତାଙ୍କର ଲକ୍ଷ୍ୟ ରହିଲା କିଛି କାଳ । କଠୋର ସଂଗ୍ରାମ ଭାରତୀୟ ପରିସ୍ଥିତିର ସ୍ୱାତନ୍ତ୍ର୍ୟ ସମ୍ପର୍କରେ ତାଙ୍କୁ ଯେପରି ଶିକ୍ଷା ଦେଲା ମୋହମୁକ୍ତିର । ସେ ଖୋଜିଲେ ମାର୍କସ୍‌ବାଦ, ବୌଦ୍ଧ ଦର୍ଶନ ଏବଂ ଗାନ୍ଧୀବାଦର ସମନ୍ୱୟ । ସେହି ସମନ୍ୱୟ, ପରିକଳ୍ପନା ତାଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ଆଶାବାଦୀ କରି ରଖିଥିଲା । ଦେଶବ୍ୟାପୀ ଦେଖା ଦେଇଥିବା ବିଶୃଙ୍ଖଳା, ବିସ୍ଫୋରଣ ଏବଂ ବ୍ୟାପ୍ତ ସତ୍ତ୍ୱେ ସେ ସବୁବେଳେ ଥିଲେ ଆଶାବାଦୀ । ସାମ୍ପ୍ରଦାୟିକତା ବାଦ ବିରୁଦ୍ଧରେ ଏକ ଲେଖା ସେ ଲେଖି ଯାଇଥିଲେ ମୃତ୍ୟୁର ଅବ୍ୟବହିତ ପୂର୍ବରୁ । ଅଯୋଧ୍ୟା ଘଟଣାବଳୀର ସମ୍ଭାବ୍ୟ ଜାତୀୟ ଏବଂ ଆନ୍ତର୍ଜାତୀୟ ପ୍ରତିକ୍ରିୟାକୁ ସେ ନିର୍ଭୀକ ଭାବରେ ପ୍ରକାଶ କରି ଯାଇଛନ୍ତି ସେଥିରେ । ବମ୍ବେ ବିସ୍ଫୋରଣରେ ସେ ଯେତିକ ମର୍ମାହତ, ଏହି ଘଟଣା ପ୍ରତି ବମ୍ବେ ଜନସାଧାରଣଙ୍କର ଅସାଧାରଣ, ଅଭୂତପୂର୍ବ ପ୍ରତିକ୍ରିୟା ତାଙ୍କୁ ସେତିକି ଆଶାବାଦୀ କରିଥିଲା ।

ମୃତ୍ୟୁ ଆସନ୍ନ । ସଂଧ୍ୟା ହେବା ପାଇଁ ଡେରି ନାହିଁ । କିନ୍ତୁ ସଂଗ୍ରାମୀ ଜୋରେ ସ୍ୱପ୍ନ ଦେଖୁଥିଲେ ଏକ ଦ୍ୱିତୀୟ ଉଷାର । ମୃତ୍ୟୁ ପରେ ଆପଣାର ଶରୀରକୁ ନଷ୍ଟ ନକରି ମଣିଷ ଜାତିର କଲ୍ୟାଣ ପାଇଁ ସେ ଦାନ କରି ଯାଇଥିଲେ । 'ଶରୀର ଦାନ' ଗୋଷ୍ଠୀର ସେ ସଭ୍ୟ ଥିଲେ । ମୃତ୍ୟୁ ପରେ ତାଙ୍କର ପରିବାରର ଇଚ୍ଛାନୁଯାୟୀ ତାଙ୍କର ମର ଦେହକୁ ବୈଦ୍ୟୁତିକ ଚୁଲିରେ ସଂସ୍କାର କରାଯାଇଥିଲା । କାରଣ ବୟସାଧିକ ହେତୁ ଶରୀରର ଉପଯୋଗ ହୋଇ ପାରିବ ନାହିଁ କିନ୍ତୁ ଚକ୍ଷୁ ଦୁଇଟିକୁ ନିଆଯାଇଥିଲା ଚକ୍ଷୁଦାନ ପାଇଁ ।

କେହି ରହିବେ ନାହିଁ । କିନ୍ତୁ ମଣିଷ ଜାତିର କଲ୍ୟାଣ ପାଇଁ ସମ୍ପୂର୍ଣ୍ଣ ବିଜ୍ଞଯୋଗ ଏବଂ ମଣିଷର ଊର୍ଦ୍ଧ୍ୱରେ କାହାକୁ ସମ୍ମାନ ନ କରିବାର ଏକନିଷ୍ଠ ସାଧନାର ପ୍ରତୀକ ନାନା ସାହେବ ଗୋରେ କାଳର କପାଳରେ ପ୍ରତିଷ୍ଠିତ ରହିବେ ଚିରକାଳ । ସମସ୍ତଙ୍କ ଉପରେ ମନୁଷ୍ୟ ସତ୍ୟ, ଏଇ ମହାସତ୍ୟ ତାଙ୍କୁ ଚିରଞ୍ଜିବୀ କରି ରଖିବ ଅନନ୍ତ କାଳ ପର୍ଯ୍ୟନ୍ତ ।

# ଇତିହାସର ଗୋଟିଏ ପୃଷ୍ଠା

ଇତିହାସର ଗୋଟିଏ ପୃଷ୍ଠା ଓଲଟି ପଡ଼ିଛି । ପ୍ରଖ୍ୟାତ ଐତିହାସିକ ଏବଂ କୃତୀଶିକ୍ଷକ ଅଧ୍ୟାପକ ନୁରୁଲ ହାସାନଙ୍କର ତିରୋଧାନ ଘଟିଛି । ଜିନ୍ନାଙ୍କର ଦୁଇ ଜାତି, ଦୁଇ ଦେଶ ତତ୍ତ୍ୱ ଭାରତର ଅନେକ ବୁଦ୍ଧିଜୀବୀ ମୁସଲମାନ ନେତାଙ୍କୁ ଆଦୌ ସ୍ପର୍ଶ କରିନଥିଲା, ବରଂ ଏଇ ବିଚକ୍ଷଣ ମୁସଲିମ ବୁଦ୍ଧିଜୀବୀମାନେ ଜିନ୍ନାଙ୍କର ପ୍ରବଳ ବିରୋଧୀ ଥିଲେ । ଆଲିଗଡ଼ ମୁସଲିମ ବିଶ୍ୱବିଦ୍ୟାଳୟ ଏକ ଦିଗରେ ରକ୍ଷଣଶୀଳ ନେତାଙ୍କୁ ଯେପରି ଜନ୍ମ ଦେଇଥିଲା, ଠିକ୍ ସେହିପରି ଜନ୍ମ ଦେଇଥିଲା ବହୁ ପ୍ରଗତିଶୀଳ ମୁସଲିମ ବୁଦ୍ଧିଜୀବୀମାନଙ୍କୁ ଯେଉଁମାନେ ଜିନ୍ନା, ମୁସଲିମ ଲିଗ ଏବଂ ଦୁଇ ଜାତି, ଦୁଇ ଦେଶ ତତ୍ତ୍ୱକୁ ଆଦୌ ଗ୍ରହଣ କରୁନଥିଲେ । ସେମାନଙ୍କ ମଧ୍ୟରେ ଅଧ୍ୟାପକ ନୁରୁଲ ହାସାନ ଅନ୍ୟତମ ।

ଅଧ୍ୟାପକ ନୁରୁଲ ହାସାନ କେବଳ ଧର୍ମନିରପେକ୍ଷ ନଥିଲେ, ସେ ଥିଲେ ଜଣେ ଯୁକ୍ତିବାଦୀ ମଧ୍ୟ । କୌଣସି ଧର୍ମର ବନ୍ଧନକୁ ସେ ମାନି ନାହାନ୍ତି । ପ୍ରସିଦ୍ଧ ସମାଜବାଦୀ ୭ ଏନ୍. ଜି. ଗୋରେଙ୍କ ପରି ସେ କହନ୍ତି ଯେ ଭଗବାନଙ୍କ ପାଇଁ ମୋ'ଭଳି କ୍ଷୁଦ୍ର ମଣିଷର ଆବଶ୍ୟକତା ପଡ଼ିନାହିଁ । ଯୁକ୍ତିବାଦୀ (ରେସନାଲିଷ୍ଟ) ନୁରୁଲ ହାସାନ ଥିଲେ ଗଭୀର ମାନବବାଦୀ ଏବଂ ତାହାହିଁ ତାଙ୍କୁ ଜାତୀୟ ଆନ୍ଦୋଳନ ସହିତ ପ୍ରଗତିଶୀଳ ଆନ୍ଦୋଳନକୁ ମଧ୍ୟ ଟାଣି ଆଣିଥିଲା । ମୃତ୍ୟୁ ପର୍ଯ୍ୟନ୍ତ ତାହା ଅତୁଟ ରହିଥିଲା ।

ସେ ଅଧ୍ୟାପକ ଥିଲେ । ମଧ୍ୟଯୁଗୀୟ ଇତିହାସ ତାଙ୍କର ସ୍ୱତନ୍ତ୍ର ଅଧ୍ୟୟନର ବସ୍ତୁ ଥିଲା । ତାଙ୍କୁ ମୁଁ ଥରେ ଓଡ଼ିଶାର ବୌଦ୍ଧ ଓ ଜୈନ କୀର୍ତ୍ତିରାଜିର ପ୍ରାୟ ୭୦୦ ଫଟୋ ନେଇ ଦେଖାଇଥିଲି । ୧୯୭୭ ମସିହାର କଥା । ସେ ତାକୁ ଆଗ୍ରହରେ ଦେଖିଲେ । କଥା ପ୍ରସଙ୍ଗରେ ମୁଁ ତାଙ୍କୁ ଲଳିତଗିରି ଏବଂ ଉଦୟଗିରିର ଖନନ କାର୍ଯ୍ୟ କରିବା ଉଚିତ ବୋଲି ପ୍ରସ୍ତାବ ଦେଲି । ସେ ହସି ହସି କହିଲେ, ତମେ ଜାଣ ଯେ ମହିରମାଳିନୀ ଭୁବନେଶ୍ୱରରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟରେ ସ୍ଥାପତ୍ୟ ବା ଆର୍କିଟେକ୍‌ଚର ଏବଂ ଆର୍କିଓଲୋଜି ପଢ଼ା ଯାଏନା । ମୁଁ ତାଙ୍କୁ ଉତ୍ତର ଦେଲି ଭାରତର ଶିକ୍ଷାମନ୍ତ୍ରୀଙ୍କ ସହିତ ଆଲୋଚନା କଲାବେଳେ ଏହା ତ ମୋର ଅଭିଯୋଗ ତାଙ୍କ ପାଖରେ । ସେ ମୋ ପିଠି ଥାପୁଡ଼େଇ କହିଲେ, ଠିକ୍ ଅଛି ଖନନ ହେବ କମିତି, କରିବ କିଏ ? ଉତ୍କଳ ଏବଂ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ମିଳିତ ଆନୁକୂଲ୍ୟରେ ଏହା ହୋଇପାରିବ ବୋଲି କହିବା ମାତ୍ରେ ସେ କହିଲେ, ତମେ ଯଦି ଏହା କରିପାରିବ ମୋର କୌଣସି ଆପତ୍ତି ନାହିଁ । ସାଙ୍ଗେ ସାଙ୍ଗେ ସେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ଚେୟାରମ୍ୟାନଙ୍କୁ ଫୋନ କରି ମୋତେ ପଠାଇଲେ । ବିଶ୍ୱଭାରତୀର ଅଧ୍ୟାପକ

ଡକ୍ଟର ଏସ୍. ଆର୍. ଦାସ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ଡକ୍ଟର କରୁଣା ସାଗର ବେହେରାଙ୍କ ମିଳିତ ନେତୃତ୍ୱରେ ଲଳିତଗିରିର ଖନନ ଆରମ୍ଭ ହେଲା ।

ଅଧ୍ୟାପକ ହାସାନ ଅଧ୍ୟାପନା ଏବଂ ଅଧ୍ୟାପକତ୍ୱକୁ ସେ କଦାପି ନ୍ୟୂନ ବୋଲି ବିଚାର କରିନାହାନ୍ତି । ଭାରତର ଶିକ୍ଷାମନ୍ତ୍ରୀ ପଦରୁ ଅବ୍ୟାହତି ପାଇବା ପରେ ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ ହେବାକୁ କୁଣ୍ଠିତ ହୋଇନାହାନ୍ତି ବରଂ ଆଗ୍ରହ ପ୍ରକାଶ କରିଛନ୍ତି ।

ସେ ଥିଲେ ଜଣେ କୂଟନୀତିଜ୍ଞ । ରୁଷ ଦେଶରେ ସେ ଆମର ରାଷ୍ଟ୍ରଦୂତ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ଆପଣାର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ଏକ ସଫଳ ଜୀବନଯାପନ କରିଯାଇଛନ୍ତି ।

ଉଦାର ଧର୍ମନିରପେକ୍ଷ ମନୋଭାବ ଏବଂ ପ୍ରଗତିଶୀଳ ଚିନ୍ତାଧାରା ଯୋଗୁ ଅନେକ ବ୍ୟକ୍ତି ଏବଂ ଶକ୍ତିମାନଙ୍କର ସେ ଶ୍ରଦ୍ଧଣୀୟ ଥିଲେ । ସେଇଯୋଗୁ ପଶ୍ଚିମବଙ୍ଗର ରାଜ୍ୟପାଳ ପଦବୀରେ ସେ ବହୁଦିନ ବିନା ବାଧାରେ ରହିପାରିଲେ ଯଦିଓ ପୂର୍ବର ପଶ୍ଚିମବଙ୍ଗର ରାଜ୍ୟପାଳ ପଦବୀ ବିପନ୍ନମୟ ଥିଲା ।

ଅଧ୍ୟାପକ ନୁରୁଲ ହାସାନ ଏକ ବିଚିତ୍ର ରୋଗର ଶିକାର ହେଲେଣି ବହୁଦିନରୁ । ତାଙ୍କର ସ୍ଥୂଳକାୟତା ଏଇ ରୋଗ ଯୋଗୁଁ । ତଥାପି ସେ ରୋଗ ଆଗରେ ହାର୍ ମାନି ନାହାନ୍ତି । ସେ ଜାଣିଥିଲେ ଯେ ଏ ରୋଗରୁ ତାଙ୍କର ମୁକ୍ତି ନାହିଁ । କିନ୍ତୁ ରେସନାଲିଷ୍ଟ ନୁରୁଲ ହାସାନ ବାସ୍ତବତାକୁ ଗ୍ରହଣ କରିନେଇଥିଲେ ଖେଳଓ୍ୱାଡ଼ ଭାବରେ । ଦେଶ ଭିତରେ ଦେଖା ଦେଇଥିବା ବିଚ୍ଛିନ୍ନତାବାଦ, ସାଂପ୍ରଦାୟିକତାର ବିଷ ତାଙ୍କୁ ବ୍ୟଥିତ କରିଥିଲା ଏବଂ ଜୀବନର ସାୟଂକାଳରେ ମଧ୍ୟ ସେ ଏହା ବିରୋଧରେ ଜାତୀୟ ଐକ୍ୟର ପୁନର୍ଜାଗରଣ ପାଇଁ ଉଦ୍ୟମ କରିଥିଲେ ।

ଇନ୍ଦିରା ଗାନ୍ଧିଙ୍କର ଜରୁରୀ ପରିସ୍ଥିତି କାଳରେ ସେ ଥିଲେ ତାଙ୍କର ଶିକ୍ଷାମନ୍ତ୍ରୀ; କିନ୍ତୁ ଅନ୍ତତଃ ଦୁଇଜଣ ମନ୍ତ୍ରୀ ଅଧ୍ୟାପକ ନୁରୁଲ ହାସାନ ଏବଂ ଶ୍ରୀ କେ· ଡି. ମାଲବ୍ୟ ଜରୁରୀ ପରିସ୍ଥିତିର ସବୁ ପଦକ୍ଷେପକୁ ସମର୍ଥନ କରୁନଥିଲେ । ଡକ୍ଟର ହରେକୃଷ୍ଣ ମହତାବ ବିଶେଷତଃ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଗିରଫଦାରିକୁ ସେମାନେ ପସନ୍ଦ କରିନଥିଲେ । ଅଧ୍ୟାପକ ନୁରୁଲ ହାସାନ ସେଦିନ କହିଥିଲେ—ମହତାବ ବାବୁ ଓ ନବକୃଷ୍ଣ ଚୌଧୁରୀ କ'ଣ ଆଉ ଦେଶଦ୍ରୋହ କରିବାର ବୟସରେ ଅଛନ୍ତି ?

ଅଧ୍ୟାପକ ନୁରୁଲ ହାସାନ ଆଉ ନାହାନ୍ତି । କେହି ରହିବେ ନାହିଁ । ପରିଣତ ବୟସରେ ପରଲୋକ ହୋଇଛି । ଏକ ବିରାଟ କର୍ମମୟ ଜୀବନର ସମାପ୍ତି ଘଟିଛି । ଇତିହାସର ବହୁ ଗବେଷଣା ଅଧ୍ୟାୟର ଉନ୍ମୋଚନ ସରିଚି ।

ବର୍ତ୍ତମାନ ଇତିହାସର ସେଇ ଅଧ୍ୟୟନର ଏକ ବିରାଟ ପୃଷ୍ଠା ଓଲଟି ପଡ଼ିଛି ।



# ଅଶ୍ରୁଳ, ଉଜଳା ସ୍ମୃତି

ସମସ୍ତ କାହାରିକୁ ଅପେକ୍ଷା କରେ ନାହିଁ, ଏଇ ଥିଲେ, ଏଇ ନାହାନ୍ତି । ସମସ୍ତ ବହି ଚାଲିଛି । କିନ୍ତୁ ସମସ୍ତ ତ ସ୍ମୃତିକୁ ମିଳନ କରି ପାରିନାହିଁ । ସେ ରହିଛି ସେହିପରି ଉଜଳା, ଲୁହଭରା ହୋଇ । ସେଇତ ତାଙ୍କର ଜୀବନର ସାର୍ଥକତା. ସାଫଲ୍ୟ ।

ପଦାରବିନ୍ଦବାବୁ ଥିଲେ ଅଜାତଶତ୍ରୁ । ସେ ଥିଲେ କର୍ମଯୋଗୀ । ଓଡ଼ିଶାର ବଣବୁଦା ଭୁଲିବନି ତାଙ୍କ କଥା ମନେରଖିବ । ତାଙ୍କର ପଦଚିହ୍ନ ଦେଖିବାକୁ ମିଳିବ ନନ୍ଦନ-କାନନରେ । ନିଝୁମ ଜଙ୍ଗଲ, ଘଞ୍ଚା ଅରଣ୍ୟ, ଆକାଶକୁ ଠେଲି ଉଠିଥିବା ପର୍ବତମାଳା । ମନେ ରଖିବେ ପଦାରବିନ୍ଦ ବାବୁଙ୍କୁ । ହସ ହସ ମୁହଁ, ଧୀର ଧୀର କଥା । ଶାନ୍ତ ଚରିତ୍ର । ପ୍ରାୟତଃ କାହାରି ଉପରେ ରାଗନ୍ତି ନାହିଁ । କିନ୍ତୁ ଥରେ ରାଗିଲେ ତାହା ପଞ୍ଚମକୁ ଉଠେ । ବନ୍ୟ ବିଭାଗରେ ତାଙ୍କର ଉଦାର, ଚରିତ୍ରକୁ ତାଙ୍କର ଅଗଣିତ ସହକର୍ମୀ ଆଜି ବି ମନେ ପକାନ୍ତି । କେତେ ଲୋକ ଗଲେଣି, କେତେ ନୂଆ ଲୋକ ଆସିଲେଣି ବନ୍ୟ ବିଭାଗକୁ । କିନ୍ତୁ ପଦାରବିନ୍ଦ ବଞ୍ଚିରହିଛନ୍ତି ଏ ପର୍ଯ୍ୟନ୍ତ । ସବୁଜ ସତେଜ । ସେମାନେ ଶୁଣନ୍ତି । ଶୁଣନ୍ତି ଅଶ୍ରୁଳ ଚିତ୍ତରେ । ପାହାଡ଼ର ଖୋଲ ଭିତରର ସାଇଁ ସାଇଁ ପବନ ଏବଂ ଝରଣା, ସମୁଦ୍ରର ଡାକ ଭିତରେ ଧ୍ୱନିତ ହୁଏ ପଦାରବିନ୍ଦଙ୍କର କଥା ।

ଅବସର ନେଲେ ସରକାରୀ ଚାକିରିରୁ । ଚାକିରି ଥିଲା ପେଷା, କିନ୍ତୁ ନିଶା ? ଜୀବନରେ ନିଶା ସ୍ପର୍ଶ କରି ନଥିବା ପଦାରବିନ୍ଦ ସତେ ଯେପରି 'ସମାଜ'ର ପରିଚାଳନାରେ ସେଇ ନିଶାର ସନ୍ଧାନ ପାଇଲେ । ସେବା କାର୍ଯ୍ୟ ସତେ ଯେପରି ତାଙ୍କୁ ମଉଆଳି କଲା । କେତେ ଆଡ଼ୁ କେତେ ପ୍ରସ୍ତାବ ଆସିଥିଲା । ଅବସରପ୍ରାପ୍ତ ମୁଖ୍ୟ ବନ ସଂରକ୍ଷକଙ୍କୁ 'ନିଯୁକ୍ତି' ଦେବାପାଇଁ । କେତେ ବ୍ୟବସାୟୀ ଗୋଷ୍ଠୀ ଉଦ୍ୟମ କରି ନଥିବେ ! କିନ୍ତୁ ପଦାରବିନ୍ଦ ପଛକୁ ଫେରି ଅନେଇ ନାହାନ୍ତି । 'ସମାଜ' ର ପରିଚାଳନା ଯେପରି ତାଙ୍କୁ ଘାରିଥିଲା ।

'ସମାଜ'ର ପରିଚାଳନା କଷ୍ଟକର ବ୍ୟାପାର । ସ୍ଥିତପ୍ରଜ୍ଞତା ହରାଇବା ଏକ ସ୍ୱାଭାବିକ କଥା । ଖାଣ୍ଟେଣୀ ଦନଗଡ଼ , କିନ୍ତୁ ପଦାରବିନ୍ଦବାବୁ ଅନୁତାପ କରି ନାହାନ୍ତି, ବିବ୍ରତ ହୋଇନାହାନ୍ତି । ଚାଲ, ଚାଲ, ଆଗେଇ ଚାଲ, ଚରୈବେତି । ପଦାରବିନ୍ଦ ଆରମ୍ଭ କରନ୍ତି ଆପଣାର ଯାତ୍ରା ସକାଳୁ, ଉଷାର ନିକଷ ଧୂସରପୃଷ୍ଠ ଛୁଇଁବା

ଆଗରୁ । ଆଉ ମନେହୁଏ ଯେପରି ପଦ୍ମାରବିନ୍ଦ ଏକ ବିରାଟ ଯାତ୍ରାର ପଥିକ ସାଜିଛନ୍ତି । କେତେ ସମସ୍ୟା ସାମୂହିକ, ବ୍ୟକ୍ତିଗତ । ଟିକିଟିକି କଳ୍ପ ବାଳିଛିଣ୍ଡା ସମସ୍ୟା । ଛୁଟି, ଭାଡ଼, ପ୍ରଭିଡେଣ୍ଟ ଫଣ୍ଡ, ଶ୍ରମିକ ସମସ୍ୟା, କାଗଜ ସମସ୍ୟା । 'ସମାଜ' ପରିଚାଳନା ତ ଏକ ରାଜ୍ୟ ସମ୍ଭାଳିବା ପରି ।

କିନ୍ତୁ ପଦ୍ମାରବିନ୍ଦ ଅବିଚଳିତ, ଶାନ୍ତ । ସକାଳୁ ଯେମିତି ସଂଧ୍ୟାରେ ସେମିତି । ତାଙ୍କର ପରିଚାଳନାରେ 'ସମାଜ'ର ପରିବେଶ ବଦଳିଗଲା । ଏକ ଆଧୁନିକ ସମ୍ବାଦପତ୍ର କରିବା ପାଇଁ ତାଙ୍କର ଜଣା ଦିନକୁ ଦିନ ବଳବତୀ ହେବାକୁ ଲାଗିଲା ସିନା, କମିଲା ନାହିଁ । ବୟସ, ପରିଶ୍ରମ କିଛି ତାଙ୍କୁ ସ୍ପର୍ଶ କରି ପାରିଲା ନାହିଁ ଯେପରି ।

ମନେପଡ଼େ । ଟିକିଟିକି କଥା । ସମସ୍ୟା ନପଚାରି ସେ ପ୍ରଥମେ ପଚାରିବେ ଗପ ନା କବିତା? ସମସ୍ୟା କହିବା ସହିତ ହସ ହସ ମୁହଁରେ ସମାଧାନ ଯେପରି ତାଙ୍କର ଓଠରେ ଲାଖି ରହିଛି । ଏଇ କଥା ତ....? ଆରମ୍ଭ କରିବେ ପଦ୍ମାରବିନ୍ଦବାବୁ । ସମାଧାନ ସାଙ୍ଗେସାଙ୍ଗେ । ହସ ସେମିତି ଲାଖି ରହିଥିବ । ଡ଼ିଜ୍‌ଆରମିଙ୍ଗ ହସ । ରାଧାନାଥବାବୁଙ୍କ ପାଖକୁ ଯିବାପାଇଁ ଭୟ ଲାଗେ । କେଉଁ ମୁଡ଼୍‌ରେ ଥିବେ କେଜାଣି ? କିନ୍ତୁ ପଦ୍ମାରବିନ୍ଦବାବୁ ଯେପରି ସବୁ ସମସ୍ୟାର ଆଶ୍ରୟସ୍ଥଳୀ ।

ମହାକାଳ କ୍ରୁର । କିନ୍ତୁ କାହିଁକି ମହାକାଳର ଏଇ ଆଘାତ ? କଣ କରିଥିଲେ ସେ କାହାର ? ଯାହାକୁ ଭଗବାନ ଭଲ ପାଆନ୍ତି, ତାଙ୍କୁ ଆଗରୁ ନେଇଯାଆନ୍ତି । ଏଇଥିରେ ହିଁ ତ ସାନ୍ତ୍ୱନା ମିଳେ । ନଚେତ୍ ମିଳିବ କେଉଁଠାରୁ ? କାହିଁକି ତାଙ୍କୁ ନେଇଗଲା ମହାକାଳ ?

ଏହାରିତ ଉତ୍ତର ମିଳିବ ନାହିଁ । ରାଜା ପଚାରିଲେ ପଣ୍ଡିତଙ୍କୁ— "କହି ପାରିବେ ଆପଣ, କାହିଁକି ପିତା ଆଗରେ ପୁତ୍ରର ମୃତ୍ୟୁ ହୁଏ ?" ଯୁଗ ଯୁଗାନ୍ତର ଏଇ ପ୍ରଶ୍ନ ରହିଛି ସେଇପରି । ମଣିଷ ଖୋଜି ଚାଲିଛି, କୋହଭରା ସ୍ମୃତିରେ । ଲୁହଭରା ଆଖିରେ ।

ପଦ୍ମାରବିନ୍ଦ ଆଉ ନାହାନ୍ତି । ସେ କିନ୍ତୁ ଅଛନ୍ତି ଆମ ଭିତରେ ସେଇପରି । ରହିବେ ବି ସେମିତି ।



# ତୁଳୀ ପାଇଁ ଶାନ୍ତି-ଶାନ୍ତି ପାଇଁ ତୁଳୀ

ପୃଥିବୀର ଯେଉଁ ଦେଶ ପ୍ରଥମେ ଅନ୍ୟ ଦେଶ ଉପରେ ପରମାଣୁ ବୋମା ପ୍ରୟୋଗ କରିବ, ସେହି ଦେଶ ଯୁଦ୍ଧ ଦାୟୀ ବୋଲି ବିବେଚିତ ହେବ—" ବିଶ୍ୱଶାନ୍ତି କଂଗ୍ରେସର ଏହି ଉଦାର ଘୋଷଣା ପୃଥିବୀର କୋଟି କୋଟି ଶାନ୍ତିକାମୀଙ୍କର ସ୍ୱାକ୍ଷର ବହନ କରି ଯୁଦ୍ଧ କ୍ଳାନ୍ତ ଧରିତ୍ରୀକୁ ଆଶାର ବାଣୀ ଶୁଣାଇଥିଲା ।

ଏହି ଐତିହାସିକ ଘୋଷଣାର ପୃଷ୍ଠଭୂମିରେ ଅଙ୍କିତ ଥିଲା ଏକ କପୋତର ଛବି । ଚଞ୍ଚୁରେ ତାର ଏଇ ବାଣୀ ବହନ କରି ସେ ଉଡ଼ିଯାଉଛି ଯୁଦ୍ଧ ଛିଞ୍ଚାଣମାନଙ୍କୁ ଉପେକ୍ଷା କରି । ବିଶ୍ୱବାସୀଙ୍କ ପାଖରେ ଏହି ବାଣୀକୁ ପହଞ୍ଚାଇବାର ଗୁରୁଦାୟିତ୍ୱ ତା ଉପରେ ଯତେ ଯେପରି ନ୍ୟସ୍ତ ।

ଏହି କପୋତ ଶାନ୍ତିର ପ୍ରତୀକ ଭାବରେ ସାରା ବିଶ୍ୱରେ ପରିଚିତ । ଯାହାଙ୍କର ହାତର ତୁଳୀ ଏଇ କପୋତର ସର୍ଜନା କଲା, ସେହି ବିଶ୍ୱବନ୍ଦନୀୟ ଶିଳ୍ପୀ ପାବଲୋ-ପିକାସୋ – କଳାର ସମଗ୍ର ଇତିହାସକୁ ବଦଳାଇ ଦେବାପାଇଁ ଜନ୍ମଗ୍ରହଣ କରିଥିଲେ ସ୍ପେନ୍ ଦେଶରେ । ତାଙ୍କର କଳାର ସାଧନାସ୍ଥଳୀ, ବିକାଶ ଏବଂ ସାଫଲ୍ୟ ଘଟିଛି ମନୋରମ ପ୍ୟାରିସ୍ ନଗରୀରେ, କିନ୍ତୁ ପିକାସୋ ସ୍ପେନ୍‌କୁ ଭୁଲି ନାହାନ୍ତି । ସେ ମୃତ୍ୟୁ ପର୍ଯ୍ୟନ୍ତ ସ୍ପେନ୍‌ର ନାଗରିକ । ପ୍ରସିଦ୍ଧ ସ୍ପେନୀୟ ଅନ୍ତର୍ଯୁଦ୍ଧ (Spanish civil war)ର ଏହି ଅନ୍ୟତମ ମହାରଥୀ କେବଳ ଯୁଦ୍ଧରେ ଅଂଶଗ୍ରହଣ କରିଥିଲେ କୁହେଁ, ସ୍ପେନୀୟ ସହରମାନଙ୍କ ଉପରେ ଜର୍ମାନ ବୋମାବର୍ଷୀ ଉଡ଼ାଜାହାଜମାନଙ୍କର ନୃଶଂସ ବୋମାବର୍ଷଣ ଓ ତଜ୍ଜନିତ ଧ୍ୱଂସର ଲୀଳାକୁ ରୂପ ଦେଇଥିଲେ ତାଙ୍କର ପ୍ରସିଦ୍ଧ ମୁରାଲ ଚିତ୍ର "ଗୁଏର୍ଣିକାରେ" ।

୧୮୮୧ ମସିହା ୨୫ ତାରିଖ ମଧ୍ୟରାତ୍ରି । ସେ ରାତ୍ରିର ଅନ୍ଧକାର ମେଣ୍ଟିଆ ପିକାସୋ ଲୋପେଜଙ୍କର ଗର୍ଭରୁ ଯେଉଁ ପ୍ରଥମ ସନ୍ତାନ ଜନ୍ମ ନେଲା, ଭବିଷ୍ୟତରେ ସେହି ଶିଶୁ ପିକାସୋ ନାମରେ ପରିଚିତ ହେଲା ବିଶ୍ୱରେ । ଶିଶୁଟିର ଦାଦା ଏକ ଡାକ୍ତର ତୁରନ୍ତ ଡାକ ନଆସିଥିଲେ ପୃଥିବୀ ଦରିଦ୍ର ହୋଇଥାନ୍ତା । କାରଣ ଧାତ୍ରୀ ଶିଶୁଟିର ମୃତ୍ୟୁ ହୋଇଯାଇଛି ଭାବି ଅନ୍ତୁଡ଼ିଶାଳରେ ଶିଶୁଟିକୁ ପରିତ୍ୟାଗ କରି ଆସିଥିଲେ ।

ଅସ୍ୱାଭାବିକ ଥିଲା ଏହି ଶିଶୁର ଜୀବନ । ଦ୍ୱିତୀୟ ମହାଯୁଦ୍ଧର ସମୟ । ବିଜେତା ନାଜୀ ଝଟିକା ବାହିନୀର ନୃଶଂସ ଆକ୍ରମଣରେ ପ୍ୟାରିସ୍ ସହର ଜର୍ଜ୍ଜରିତ ।

ସାମ୍ୟ, ମୈତ୍ରୀ ଓ ମୁକ୍ତିର ଦେଶ ଫ୍ରାନ୍ସ ଶତ୍ରୁ ଆକ୍ରମଣରେ ବିଧ୍ୱସ୍ତ । ବହୁ କଳାକାର, ସାହିତ୍ୟିକ, ଲେଖକ, ବୈଜ୍ଞାନିକ ଫ୍ରାନ୍ସ ଛାଡ଼ି ଦେଶତ୍ୟାଗୀ, କିନ୍ତୁ ପିକାଶୋ ? ଗୁଏରନିକା ଚିତ୍ର ପାଇଁ ସେ ନାଜୀ ଦରବାରରେ ଶତ୍ରୁ । ତା' ସେ ଜାଣନ୍ତି, କିନ୍ତୁ ମୃତ୍ୟୁ ଭୟରେ ଦେଶତ୍ୟାଗୀ ? ପିକାଶୋ ପ୍ୟାରିସରେ ହିଁ ରହିଲେ । କିନ୍ତୁ ଏହି କଳାକାରଙ୍କର ଆନ୍ତର୍ଜାତିକ ଖ୍ୟାତି ଯୋଗୁଁ ଜର୍ମାନୀ ସୈନ୍ୟବାହିନୀ ତାଙ୍କ ଦେହରେ ହାତ ଦେଇ ନଥିଲେ ।

ଶିଶୁ ପିକାଶୋଙ୍କର ମୁହଁ ଖୋଲିବା ପୂର୍ବରୁ ହାତ ଖୋଲି ଯାଇଥିଲା । ଶିଶୁର ଦରୋଟି ବଚନ ପିତାମାତା ଶୁଣିବା ପୂର୍ବରୁ ପିକାଶୋଙ୍କର ପେନ୍‌ସିଲ ଆଙ୍କି ଯାଉଥିଲା ଚିତ୍ର ପରେ ଚିତ୍ର । ଚଉଦବର୍ଷ ବେଳକୁ ପିକାଶୋ କ୍ଲାସିକାଲ ଡ୍ରଇଂରେ ନୈପୁଣ୍ୟ ହାସଲ କରିଥିଲେ ।

୧୯୩୭ ମସିହା । ବିଶ୍ୱ ପ୍ରଦର୍ଶନୀରେ ପିକାଶୋ ଯେଉଁ ଗୁଏରନିକା ଚିତ୍ର ପ୍ରଦର୍ଶନ କରିଥିଲେ, ସେହି ଚିତ୍ରର ସ୍ପେନୀୟ ପୃଷ୍ଠଭୂମି ପିକାଶୋଙ୍କର କଳାକୁ ପ୍ରଭାବିତ କରି ଆସିଛି । ସ୍ପେନ୍ ଦେଶ ହେଉଛି ଷଣ୍ଢ ଲଢ଼େଇର ଦେଶ । ଷଣ୍ଢ ଲଢ଼େଇ ସେଠାରେ ସବୁଠାରୁ ଜନପ୍ରିୟ କ୍ରୀଡ଼ା । ଷଣ୍ଢ ଲଢ଼େଇ କରେ ମଣିଷ ସାଙ୍ଗରେ । ସେମାନଙ୍କୁ ମାଟାଡ଼ୋର (Matador) କୁହାଯାଏ । ଷଣ୍ଢ ହେଉଛି ପାପ, ମିଥ୍ୟା, ଅନ୍ଧକାର, ଅଲକ୍ଷ୍ମୀର ପ୍ରତିଭୂ । ଘୋଡ଼ା ଏବଂ ମଣିଷ ହେଉଛି ସତ୍ୟ, ପୁଣ୍ୟ, ଆଲୋକର ପ୍ରତିନିଧି । ଏହି ଦୁଇ ଶକ୍ତି ମଧ୍ୟରେ ଯୁଦ୍ଧ ଚିରନ୍ତନ । ସ୍ପେନୀୟ ଅନ୍ତର୍ଯୁଦ୍ଧରେ ବିଜୟୀ ହୋଇଛି ଅନ୍ଧାରର । ଆଲୋକର ସତ୍ତା ଲିଭିଯାଇଛି । 'ଗୁଏରନିକାରେ' ତାହାହିଁ ରୂପାୟିତ ହୋଇଛି ।

ସ୍ପେନୀୟ ଅନ୍ତର୍ଯୁଦ୍ଧ ଏକ ସାଧାରଣ ସଂଗ୍ରାମ ନଥିଲା । ପୃଥିବୀର ସର୍ବପ୍ରଥମ ମହିଳା ଏକଦା ହୋଟେଲରେ ବାସନ ସଫା କରୁଥିବା ଆଜିର ମସ୍କୋପୁରୀ ନାଞ୍ଚି ଡୋଲରସ୍ ଏବାରୁରି (ପାଲିସୋନୋରିଆ ନାମରେ ସେ ବିଶ୍ୱବନ୍ଦିତା)ଙ୍କର ନେତୃତ୍ୱରେ ଗଠିତ ସାଧାରଣତନ୍ତ୍ରକୁ ଧ୍ୱଂସ କରିବା ପାଇଁ ମାଡ୍ରିଡ୍ ସହରର ଚାରିପଟରୁ ଚାରୋଟି ବାହିନୀ(Column) ଆକ୍ରମଣ କରିଥିଲେ । ମାଡ୍ରିଡ୍ ସହର କେବଳ ଅବରୁଦ୍ଧ ନଥିଲା, ସେଦିନ ପୃଥିବୀର ସଭ୍ୟତା, ଗଣତନ୍ତ୍ର, ବିକାଶ ସବୁ ଅବରୁଦ୍ଧ ହୋଇପଡ଼ିଥିଲା । କାରଣ ଜନସାଧାରଣଙ୍କର ଏକ ସରକାରକୁ ଧ୍ୱଂସ କରିଦେବା ପାଇଁ ଆନ୍ତର୍ଜାତିକ ଫାସିବାଦ କଣ୍ଟିତ ଭାବରେ ଆଗେଇ ଯାଉଥିଲେ । ତାର ପୁରୋଭାଗରେ ଥିଲେ ଜର୍ମାନୀରେ ମୁଣ୍ଡ ଟେକି ଉଠିଥିବା ଫାସୀବାଦୀମାନେ ଏବଂ ତାକୁ ରକ୍ଷା କରିବାର ଦାୟିତ୍ୱ ଆନ୍ତର୍ଜାତିକ ରୂପ ଧାରଣ କରିଥିଲା । ସେଥିଯୋଗୁ ଐତିହାସିକ ହେମିଂଓ୍ୱେ, ଗାୟକ ପଲରୋବସନ, ଲେଖକ ଖ୍ରୀଷ୍ଟୋଫର କଡ଼୍‌ଓ୍ୱେଲଙ୍କଠାରୁ ଆରମ୍ଭ କରି ଜବାହାରଲାଲ

ନେହରୁଙ୍କ ପର୍ଯ୍ୟନ୍ତ ଯେଉଁମାନେ ଗୃହୁଁଥିଲେ ମଣିଷ ସଭ୍ୟତା ବଞ୍ଚି ରହୁ, ବଞ୍ଚି ରହୁ କାବ୍ୟକଳା ସାହିତ୍ୟ ସୃଷ୍ଟି ସେମାନେ ସମସ୍ତେ ଏହି ଯୁଦ୍ଧରେ ଅଂଶଗ୍ରହଣ କରିଥିଲେ ବା ସାହାଯ୍ୟ ପଠାଇଥିଲେ । ଆଉ ପିକାଶୋ ଚୁପ୍ ହୋଇ ରହନ୍ତେ କପରି ?

ପିକାଶୋଙ୍କର ପିତା ଡନ୍ ଜୋସେ ରୁଇଜ୍ ବ୍ଲାସ୍କୋ (Don Jose Ruis Blasco) ଲଳିତ କଳାର ଅଧ୍ୟାପକ ଥିଲେ ଏବଂ ସେ ୧୮୯୪ ମସିହା ଅକ୍ଟୋବର ମାସରେ କାଟାଲୋନିଆ ପ୍ରଦେଶରେ ବାର୍ସିଲୋନା ଲଳିତ କଳା ମହାବିଦ୍ୟାଳୟରେ ଯୋଗଦେବା ପରେ ପିକାଶୋ ଚିତ୍ର ଆଙ୍କିବାରେ ନିଜକୁ ସମ୍ପୂର୍ଣ୍ଣ ନିୟୋଗ କରିବାପାଇଁ ସୁଯୋଗ ପାଇଥିଲେ । ଭାଉମିଅର, ଭାନ୍‌ଗଗ୍ ପ୍ରଭୃତି କଳାକାରମାନେ ଏହି ସମୟରେ ପିକାଶୋଙ୍କର ପ୍ରେରଣାର ଉତ୍ସ ହୋଇଥିଲେ ।

୧୯୦୪ ରେ ପିକାଶୋ ସ୍ପେନ୍ ଛାଡ଼ି ପ୍ୟାରିସ ସହରକୁ ଆସନ୍ତି ଏବଂ ଏହି ସମୟରୁ ହିଁ ଆରମ୍ଭ ହୁଏ ତାଙ୍କର କଳା ଜୀବନର ସାଫଲ୍ୟ । ଫ୍ରାନ୍‌ସର ମାଦକଭରା ଜୀବନରେ ସେ ବୁଡ଼ାଇ ରଖିଲେ ନିଜକୁ । ବହୁବାର ସ୍ପେନ୍‌କୁ ଫେରିଛନ୍ତି । କିନ୍ତୁ ପୁଣି ଥରେ ସେ ଟାଣିହୋଇ ଯାଇଛନ୍ତି କଳାର ଗନ୍ତାଘର ପ୍ୟାରିସ୍ ସହରକୁ । ପ୍ୟାରିସ୍ ହୋଇଯାଇଛି ତାଙ୍କର କଳାର ଉତ୍ସ; କିନ୍ତୁ ନିଜ ଭିତରେ ସେ ରହିଯାଇଛନ୍ତି ସେହି ଗର୍ବିତ ଅନମନୀୟ ସ୍ପେନୀଆର୍ଡ଼ ।

ଶହେ ବର୍ଷ ପାଖାପାଖି ବୟସରେ ତାଙ୍କର ପରଲୋକ ହୋଇଛି । ୧୯୧୨ ମସିହାରେ ତାଙ୍କର ଯେଉଁ କ୍ୟୁବିଷ୍ଟ ଚିତ୍ର (cubist drawing) ୪୦ ଟଙ୍କାରୁ ୪୨୦ ଟଙ୍କା ଭିତରେ ବିକ୍ରି ହେଉଥିଲା, ତାହା ଆଜି ୧୫ ଲକ୍ଷରୁ ୧୭ ଲକ୍ଷ ଟଙ୍କାରେ ବିକ୍ରି ହେଉଛି । ଏତେ ସଂଖ୍ୟକ ଚିତ୍ର ସେ ଛାଡ଼ି ଯାଇଛନ୍ତି ଯେ ତାହାର ମୂଲ୍ୟ କଳନା କରିବା ସମ୍ଭବ ନୁହେଁ । ପୃଥିବୀର ଶ୍ରେଷ୍ଠ ପ୍ରସିଦ୍ଧ ଆର୍ଟ ଗାଲେରୀ ଲଣ୍ଡନ ମ୍ୟୁଜିୟମ, ଲୁଭ୍ରେ ମ୍ୟୁଜିୟମ ପ୍ୟାରିସ୍, ଡ୍ରେସଡେନ ଆର୍ଟ ଗାଲେରୀ, ଜର୍ମାନୀର ଟ୍ରିଟିଆକର୍ ଆର୍ଟ ଗାଲେରୀ, ମସ୍କୋ ପରେ ପିକାଶୋଙ୍କର ଚିତ୍ରାବଳୀର ମୂଲ୍ୟାଙ୍କନ ହୋଇପାରିବ ନାହିଁ ।

ଏହି କ୍ଷୁଦ୍ର ସ୍ପେନୀଆର୍ଡ଼ଙ୍କର ପ୍ରତିଭା ବହୁମୁଖୀ । ୧୯୧୨ ମସିହାରେ ସେ ଲଣ୍ଡନ ଆର୍ଟ ଗ୍ୟାଲେରୀରେ କ୍ୟୁବିଷ୍ଟ ଡ୍ରଇଂ ପ୍ରଚଳନ କରନ୍ତି । ପ୍ରଥମ ମହାଯୁଦ୍ଧ ସମୟରେ ଡିଆଘିଲେଫଙ୍କ ରୁଷୀୟ ବ୍ୟାଲେ ପରିଚ୍ଛଦର ଡିଜାଇନ କରନ୍ତି । ଏହାଛଡ଼ା ମୃଣ୍ମୟ ଶିଳ୍ପଠାରୁ ଆରମ୍ଭ କରି ଚିତ୍ର ପର୍ଯ୍ୟନ୍ତ ସବୁ ଆଙ୍କନ୍ତି । ଅଦ୍ଭୁତ ଏହି କଳାକାରର ବହୁମୁଖୀ ନୈପୁଣ୍ୟ ।

ଲିଓନାର୍ଡ଼ଙ୍କ ପରେ କୌଣସି କଳାକାରଙ୍କ ପାଖରେ ଏଭଳି ନୈପୁଣ୍ୟ ଦେଖାଯାଇ ନାହିଁ । ବିଂଶ ଶତାବ୍ଦୀରେ କଳା କହିଲେ ଯାହା ବୁଝାଏ, ସେ ସବୁର

ପିକାଶୋ ହେଉଛନ୍ତି ଆଧାର ଏବଂ କେନ୍ଦ୍ର । ଦୃଶ୍ୟକଳାର କୌଣସି ବିଭାବକୁ ସେ ବାଦ୍ ଦେଇନାହାନ୍ତି । କ୍ୟୁବିଜିମ୍ ଏକ୍ସପ୍ରେସନିଜିମ୍, ସୁରିଏଲିଜିମ୍‌ଠାରୁ ପୁସ୍ତକ ଚିତ୍ର, ସେରାମିକ, ନୃତ୍ୟ ପରିଚ୍ଛଦ ଡିଜାଇନ୍ ପର୍ଯ୍ୟନ୍ତ କଳାର ସବୁ ବିଭାବକୁ ସେ ପରିବ୍ୟାପ୍ତ । ପ୍ରତ୍ୟେକ ବିଭାବକୁ ସେ କେବଳ ଛୁଇଁ ନାହାନ୍ତି, ଶୀର୍ଷସ୍ଥାନ ଅଧିକାର କରିଛନ୍ତି ମଧ୍ୟ । ବିଂଶ ଶତାବ୍ଦୀର ସେ ହେଉଛନ୍ତି ବିପ୍ଲବୀ କଳାକାର ।

କଳାକ୍ଷେତ୍ରରେ ତାଙ୍କର ଅବଦାନ, କଳାକ୍ଷେତ୍ରରେ ତାଙ୍କଦ୍ୱାରା ଆହୃତ ପରିବର୍ତ୍ତନ ବିସ୍ମୟକର ଏବଂ ଅଭୂତପୂର୍ବ । ଇଟାଲୀୟ ପୁନର୍ଭ୍ୟୁତ୍ଥାନର ନେତୃବୃନ୍ଦଙ୍କ ସହିତ ହିଁ କେବଳ ତାହା ତୁଳନୀୟ ।

ଲିଓନାର୍ଦ୍ଦୋ ଡା ଭିନ୍‌ସି,ରାଫେଲ ଥିଲେ କଳାକ୍ଷେତ୍ରରେ ଥ୍ରୀ ଡାଇମେନ୍‌ସନାଲ ବାସ୍ତବତାର ପ୍ରବର୍ତ୍ତକ । ପିକାଶୋଙ୍କର ଅଭ୍ୟୁଦୟ ପର୍ଯ୍ୟନ୍ତ ତାହାହିଁ ଥିଲା ୟୁରୋପୀୟ କଳାର ଭିତ୍ତି ।

ପରମ୍ପରା ବା କନ୍‌ଭେନସନ ବି ପୁରୁଣା ହୁଏ, ପ୍ରାଣହୀନ ହୋଇଯାଏ ! ଏଭଳି ଏକ ମୁହୂର୍ତ୍ତ ଆସେ ଯେତେବେଳେ ଅଗ୍ରଗତି ପାଇଁ ନୂତନ ରକ୍ତ, ନୂତନ ପ୍ରାଣର ସଞ୍ଚାର ଆବଶ୍ୟକ ହୁଏ । ଅଗ୍ରଗତି ନଚେତ ମୃତ୍ୟୁ ଏହି ସନ୍ଧିକ୍ଷଣରେ ଉପନୀତ ହୁଏ । ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ୟୁରୋପୀୟ କଳାର ଏହି ସନ୍ଧିକ୍ଷଣ ଆସି ପହଞ୍ଚିଲା । ବାସ୍ତବ କଳା (Realist Art)ର ପତନ ଘଟିଥିଲା । ପ୍ରକୃତରେ ବାହ୍ୟ ରୂପକୁ ଆଙ୍କିବାରେ ହିଁ କଳା ପର୍ଯ୍ୟବେଶିତ ହୋଇଥିଲା । କ୍ୟାମେରାତ ତାହା ଅପେକ୍ଷା ଭଲ ଚିତ୍ର ଉଠାଇ ପାରିବ ପ୍ରକୃତରେ ।

କଳାର ଏଇ ସନ୍ଧିକ୍ଷଣରେ ଆବିର୍ଭାବ ହୁଏ କଳାକାର ପିକାଶୋଙ୍କର । ୨୬ ବର୍ଷ ବୟସରେ ୧୯୦୭ ମସିହାରେ ସେ ଏକ ଚିତ୍ର ଆଙ୍କନ୍ତି । ଯାହା କେବଳ ତାଙ୍କର ଜୀବନର ନୁହେଁ ସାରା ଆଧୁନିକ କଳାର ମୋଡ଼ ଫେରାଇ ଦିଏ । କଳାର ଦିଗ୍‌ବଳୟରେ କ୍ୟୁବିଜିମ୍‌ର ଅଭ୍ୟୁଦୟର ସ୍ପଷ୍ଟ ସୂଚନା ଏହା ବହନ କରି ଆଣେ । ଏବଂ ଏହି କ୍ୟୁବିଜିମ୍ ଆଧୁନିକ ପୋଷ୍ଟର ଡିଜାଇନଠାରୁ ଆରମ୍ଭ କରି ଟେଲିଭିଜନ ସେଟର ଡିଜାଇନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ପ୍ରଭାବ ବିସ୍ତାର କରେ ।

ସମୁଦ୍ର କୂଳରେ ହିଁ ପିକାଶୋଙ୍କର ଜୀବନର ଅଧିକାଂଶ ସମୟ ବିତିଛି । ସମୁଦ୍ର ହିଁ ଦେଇଛି ତାଙ୍କର ବହୁ କୃତିର ଜୀବନ୍ୟାସ । ୯୦ ବର୍ଷ ବୟସରେବି ଏହି ବରିଷ୍ଠ ପ୍ରତିଭାକୁ ସମୁଦ୍ର କୂଳରେ କେବଳ ଘଣ୍ଟାଟିଏ ପିନ୍ଧି ବୁଲିବାର ଦେଖାଯାଏ । ପ୍ରତିଭା ସେହିଭଳି ଉଜ୍ଜ୍ୱଳ,ଦୀପ୍ତିମନ୍ତ । ବୟସର ପରାଜୟ ଘଟିଛି, ତୁଳୀର ବିଶ୍ରାମ ନାହିଁ । ଦକ୍ଷିଣ ଫ୍ରାନସରେ ମୃତ୍ୟୁ ପର୍ଯ୍ୟନ୍ତ ଏହି କଳାକାର ନିପୁଣ କଳା ଆଙ୍କିବାରେ ବ୍ୟସ୍ତ ଥିଲେ ।

୧୯୫୪ ମସିହାରେ ଜାକୁଲାଇନ ରୋକ ନାମକ ଯେଉଁ ସୁନ୍ଦରୀ ରମଣୀକୁ ମଡେଲ ଆକାରରେ ପାଇଥିଲେ ଏବଂ ଯାହାର ଚିତ୍ରପଟ୍ଟ ପିକାଶୋଙ୍କ ଉପରେ ଏକ ନୂତନ ପ୍ରଭାବର ଉନ୍ମେଷ କରିଥିଲା ଏବଂ ସେହି ନୂତନ ପ୍ରଭାବରୁ ଉଦ୍‌ଭବ ଚିତ୍ରପଟ୍ଟ (Portrait) ଲାଭକଲା ବିଶ୍ୱପ୍ରସିଦ୍ଧି । ମଧ୍ୟାହ୍ନର ସୂର୍ଯ୍ୟଭଳି ପ୍ରଜ୍ୱଳିତ । ଅସ୍ତ ହୋଇଗଲେ ୮୪ ବର୍ଷରେ ।

"ମୃତ୍ୟୁ ବିରୁଦ୍ଧରେ ଜୀବନ ପାଇଁ, ଯୁଦ୍ଧ ବିରୁଦ୍ଧରେ ଶାନ୍ତି ପାଇଁ ମୁଁ ଦଣ୍ଡାୟମାନ"—ଏହା ହିଁ ଥିଲା ପିକାଶୋଙ୍କର ବାଣୀ ।



# ଲୁହଭେଜା ସ୍ମୃତି

ହଠାତ୍ ଖବର ପାଇଲି ବନ୍ଧୁ ପ୍ରତାପ ଚନ୍ଦ୍ର ମହାନ୍ତି ଆଉ ନାହାନ୍ତି । କିନ୍ତୁ ଖବର ପାଇବାରେ ଡେରି ହୋଇଯାଇଥିଲା । ତାଙ୍କର ମରଦେହ ସ୍ବର୍ଗଦ୍ୱାର ବାଟରେ ପହଞ୍ଚି ଯାଇଥିଲା । ଶେଷ ଦେଖା ହୋଇପାରିଲା ନାହିଁ । କିଏ କହେ, ମରଣ କୁଆଡ଼େ ସୁନ୍ଦର । ଏହା ଘର ବାହୁଡ଼ା ଭଳି । ତା' ହେଲେ ଦେଖାହେବ ନିଶ୍ଚୟ ।

ପ୍ରତାପ ବାବୁଙ୍କର 'ଘର ବାହୁଡ଼ା' ସମୟ ଆସି ଯାଇଛି ବୋଲି ସମସ୍ତେ ଜାଣିଥିଲେ । ଅପେକ୍ଷା କରୁଥିଲେ ସମସ୍ତେ ସେଇ କରାଳ ମୁହୂର୍ତ୍ତକୁ । ସେ ପକ୍ଷାଘାତ ରୋଗରେ ପୀଡ଼ିତ ଥିଲେ । କ୍ୟାନ୍‌ସର ରୋଗ ତାଙ୍କୁ ଗ୍ରାସ କରିବାକୁ ଆରମ୍ଭ କରିଥିଲା ଏବଂ ସେ ଦିଲ୍ଲୀରୁ ଫେରିଥିଲେ କଟକ ବଡ଼ ଡାକ୍ତରଖାନାକୁ । ସେ ଆଉ ସୁସ୍ଥ ହୋଇ ଫେରିବେ ନାହିଁ, ସମସ୍ତେ ଜାଣିଥିଲେ ।

ପ୍ରତାପବାବୁଙ୍କ ସାଙ୍ଗରେ ଏଇ ଡାକ୍ତରଖାନାରେ ଦୁଇ ପର୍ଯ୍ୟାୟରେ ଦେଖା ହୋଇଛି ବହୁତ ଥର । ପ୍ରଥମ ଥର ଯେତେବେଳେ ସେ ଆସିଥିଲେ ବନ୍ଦୀ ଅବସ୍ଥାରେ କଟକ ବଡ଼ ଡାକ୍ତରଖାନାକୁ ଅସୁସ୍ଥ ହୋଇ । ତାଙ୍କୁ ଆଣିବା ପାଇଁ ବେଶ୍ କିଛି ପରିଶ୍ରମ କରିବାକୁ ପଡ଼ିଥିଲା । ଦେଶରେ ଜରୁରୀକାଳୀନ ପରିସ୍ଥିତି । କ୍ଷମତାରେ ଥିଲେ ବନ୍ଧୁ ଜୁଟ୍ନେତ୍ର । ସେମାନଙ୍କ ଭିତରେ ମଣିଷର ମତିଭ୍ରମ ହୋଇଯାଏ । କ୍ଷମତାରୁ ଗଲା ପରେ କେହି ପଚାରନ୍ତି ନାହିଁ । କାହିଁକି ପଚାରିବେ, କିଣ ଲାଭ ? ଦର୍ଶନ, ତତ୍ତ୍ୱ, ପରମ୍ପରା ଉପରେ ବହୁତ ବିତର୍କ, ବହୁ ଗାଲଦପର୍ମ ଭାଷଣ । କିନ୍ତୁ ସତ୍ୟ ହେଉଛି ସାଙ୍ଘାତିକ । ପୁଣି ଜରୁରୀକାଳୀନ ପରିସ୍ଥିତି ଏବଂ ବନ୍ଦୀ ପ୍ରତାପ ଚନ୍ଦ୍ର ମହାନ୍ତି । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, କଟକ ସହରର ଦାଦା ବୀରେନ ମିତ୍ରଙ୍କୁ ଡାକ୍ତରଖାନାରେ ଭର୍ତ୍ତିକରିବା ପାଇଁ ସ୍ୱାଧୀନତା ସଂଗ୍ରାମୀ ନରସିଂହ ତ୍ରିପାଠୀଙ୍କୁ ଦିନ ଦିନ ଧରି ଦୌଡ଼ିବା ଦେଖିଛି । କୁର୍ଣ୍ଣିସ୍ କରୁଥିବା ବ୍ୟକ୍ତିମାନଙ୍କୁ ମୁହଁ ଦେଖାଇଥିବା ମଧ୍ୟ ଦେଖିଛି । ସେଇଯୋଗୁଁ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ସାଙ୍ଗେ ପ୍ରତି ଦିନେ ଦୁଇ ଦିନରେ ଦେଖାହେବା ଅବଶ୍ୟମ୍ଭାବୀ ହୋଇ ଉଠିଥିଲା । ବନ୍ଧୁତା ଜମିଲା । ଗଳ୍ପ ବି ଜମିଥିଲା ।

ପରିଚୟ ଅନେକ ଦିନର । କିନ୍ତୁ ନିବିଡ଼ତା ଜମି ନଥିଲା । ସେ ବିଧାନସଭାର ସଭ୍ୟ ହେଲେ ତର୍ତ୍ତୋଲରୁ । ମନ୍ତ୍ରୀ ହେଲେ । ରାଜନୀତି ଏବଂ କ୍ଷମତାର ଗହନ ଅରଣ୍ୟ

ଭିତରେ ତାଙ୍କୁ ପାଇବା ସମ୍ଭବ ହେଉନାହିଁ । କିନ୍ତୁ ଦେଖା ହେଲେ ବେଶ୍ ସମସ୍ତ କଟେ ଏବଂ ରାଜନୀତି କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ତାଙ୍କର ସ୍ୱାତନ୍ତ୍ର୍ୟ କିଛି ଥିଲା । ଦେଖାହେଲେ ପଗ୍ଭରିବେ ଆଲୋଚନା କରିବେ ଦେଶ କଥା, ସମସ୍ୟା କଥା ବିଭିନ୍ନ ଦଳର ଆଭିମୁଖ୍ୟ କଥା , ଖାଲି ଲୁହା, କାଠ, ପରମିଟ୍ , କୋଟା କଥା ନୁହେଁ । ଏବଂ ସେ ଆଲୋଚନା ମଧ୍ୟ ଦରଦଭରା । ସେ ଚିନ୍ତିତ ବ୍ୟସ୍ତ ସେଥିପାଇଁ ।

ବନ୍ଦୀ ଅବସ୍ଥାରେ ଆସିଲେ ଡାକ୍ତରଖାନାକୁ । ସମସ୍ତ ପ୍ରଚୁର । ଏକାଙ୍କି । ତେଣୁ ଆଲୋଚନା ଜମିଲା । ଜରୁରୀ ପରିସ୍ଥିତି,ବିଭିନ୍ନ ବ୍ୟକ୍ତି, ଗୋଷ୍ଠୀ, ଦଳର ଭୂମିକା, ଏଇ ସମସ୍ତ ପରେ କଣ ହେବ, କଣ ହେବା ଦରକାର ଇତ୍ୟାଦି । ରୋଗ କଥା କିଛି କହନ୍ତି ନାହିଁ, ନ ପଗ୍ଭରିଲେ । କେବଳ କୌଣସି ବିଶେଷଜ୍ଞ ପାଖରେ କିଛି କାମ ଥିଲେ ବୁଝନ୍ତି ।

ସେଦିନ ଦେଖାହେଉଥିଲା । ଏବେବି ଦେଖାହୁଏ ସେଇ ଡାକ୍ତରଖାନାରେ । କିନ୍ତୁ ସମସ୍ତ କେତେ ବଦଳି ଗଲାଣି ? ସ୍ମୃତି ପଖାଳି ପ୍ରତାପବାବୁ ପଗ୍ଭରନ୍ତି । ବଦଳିବ ନାହିଁ । ସେଦିନ ଆପଣ କେବଳ ବନ୍ଦୀ । ଆଜି ଆପଣ ଶାସକ ଦଳର ଅସ୍ପଷ୍ଟ ନାୟକ ? ନାହିଁ ମ, ମୁଁ କଣ ସେ କଥା କହୁଥିଲି । କଥାଟାର ମୋଡ଼ ବୁଲାଇ ଦିଅନ୍ତି ପ୍ରତାପବାବୁ । ସମାଜ କେତେ ବଦଳି ଯାଉଛି ?

ସମାଜ, ରାଜନୀତି, ମୂଲ୍ୟବୋଧ ସବୁ ବଦଳି ଯାଉଛି । ପ୍ରତାପବାବୁ ସେ ବିଷୟରେ ସଚେତନ । ରାଜନୈତିକ ତରଙ୍ଗରେ ବହୁ ନୂତନ ବ୍ୟକ୍ତି ଏବଂ ଶକ୍ତିର ଆବିର୍ଭାବ ହେଉଛି । ତତ୍ତ୍ୱ, ଦର୍ଶନ, ଆଇଡ଼ିଓଲୋଜି ଏ ସବୁ କ୍ରମଶଃ ହଜି ଯାଉଛି । ତା ସ୍ଥାନରେ ଯାହା ସବୁ ସ୍ଥାନ ପାଉଛି, ସେ ସମ୍ପର୍କରେ ମଧ୍ୟ ସେ ସଚେତନ ହୋଇ ଉଠୁଥିଲେ ବୋଲି ମନେ ହେଉଥିଲା । ସ୍ନୁନଭର୍ଗ ପରିବାରର ସେ ସଭ୍ୟ ଥିଲେ । ଆସନ୍ତି ସଭା ସମିତିକୁ । କିନ୍ତୁ ଦେଖାଯାଉଥିଲା ଯେ ସମସାମୟିକ ସମସ୍ୟା ଅପେକ୍ଷା ସେ ଧାର୍ମିକ ଏବଂ ଦର୍ଶନ ସଂକ୍ରାନ୍ତୀୟ ସଭା ପ୍ରତି ବେଶୀ ଆକୃଷ୍ଟ ହୋଇ ଉଠୁଥିଲେ । କଣ ହେଲା ଏଇ ରାଜନୀତିଜ୍ଞଙ୍କର ? ଦିନେ ପଗ୍ଭରିଲି । ମ୍ଳାନ ଏକ ହସର ରେଖା ମୁହଁରେ ଝଲକି ଉଠିଗଲା ଏବଂ ସେ ଗମ୍ଭୀର ହୋଇ ଉଠିଲେ । ବେଶୀ ଦୂରକୁ ଅନେଇବାକୁ କେହି ପ୍ରସ୍ତୁତ ନୁହନ୍ତି, ସମସ୍ତେ ଚାହାନ୍ତି ଏଇ ବର୍ତ୍ତମାନକୁ ହିଁ । ତେଣୁ....

ପ୍ରତାପବାବୁ ଦେଶରେ ଜାରି ଜରୁରୀ ପରିସ୍ଥିତି ବିରୋଧ କରି ରହିଥିଲେ ଗିରଫ ନହୋଇ ପଳାତକ ହେବେ ଏବଂ କାର୍ଯ୍ୟ କରିବେ । ହଠାତ୍, ଜମଚଉଡ଼ା ଛକର ଏକ ଗଳିରେ ତାଙ୍କ ସହିତ ଦେଖା । ଆପଣ ଏଠି ? ଟିକଏ ପାଖକୁ ଲାଗି ଆସି କହିଲେ, ମୁଁ ପଳାତକ । ଲିଫଲେଟ ଛାପୁଛି ଜରୁରୀ ପରିସ୍ଥିତି ବିରୁଦ୍ଧରେ । ଦେଖାହେବ ପୁଣି । ସେ ମିଳାଇଗଲେ ଅନ୍ଧାରରେ । ପଳାତକ ଜୀବନ ସହିତ ମୋର ପରିଚୟ ଦୀର୍ଘ ।

ବନ୍ଦୀ ସଂଗଠନରେ ପଲାତକ ଜୀବନ କେତେ ଦିନ ? ପ୍ରତାପବାବୁଙ୍କ ସହିତ ଦେଖାହେବା ପୂର୍ବରୁ ପ୍ରତାପବାବୁ ଗିରଫ ହେଲେ । ତା'ପରେ ଦେଖା ଡାକ୍ତରଖାନାରେ ।

ସେ ଖଲାସ ହୁଅନ୍ତି । ପୁଣି ବିଧାନସଭାକୁ ନିର୍ବାଚିତ ହୁଅନ୍ତି । ମନ୍ତ୍ରୀ ହୁଅନ୍ତି । ଘରେ ଅଫିସରେ ପୁଣି ଭିଡ଼ ଜମେ । ତାଙ୍କୁ ଠେଲି ପଶିବାର ସାହସ, ଶକ୍ତି ଆବଶ୍ୟକତା ମୋର ନଥାଏ । ପୁଣି ଦେଖାହୁଏ କାଳଚକ୍ରର ଆବର୍ତ୍ତନରେ । ମୁଁ କାହିଁ ୟୁନିଭର୍ସର ମାସିକ କାର୍ଯ୍ୟକ୍ରମ କାର୍ଡ ପାଉନି ! ପାଇବେ ଏଣିକି । ଆଗ୍ରହ ଦେଖିଲେ କାର୍ଡ ପଠିାଇବ । ଦେଖାହୁଏ । କହନ୍ତି ନାନା କଥା । ରାଜ୍ୟ ସଭାଠାରୁ ମିଳିତ ସାମୁଖ୍ୟ ପର୍ଯ୍ୟନ୍ତ । କିନ୍ତୁ ଉଦ୍ଦାମତା ନଥାଏ ଆଉ କଥାରେ । କମିତି ଶୋକାକୁଳ ଲାଗନ୍ତି । ତା'ପରେ ଅସୁସ୍ଥତା, ତା'ପରେ ଦିଲ୍ଲୀ, ଦିଲ୍ଲୀରୁ କଟକ ଏବଂ କଟକରୁ ସ୍ୱର୍ଗଦ୍ୱାର ।

ଏବଂ ତା'ପରେ ? ତା'ପରେ ତ ସେ ଗଲେ ସେଇଠିକି ଯେଉଁଠୁ କେହି ଫେରି ନାହାନ୍ତି । ଫୁଲମାଳ, ଶୋକସଭା, ବିବୃତି, ଶ୍ରଦ୍ଧାଞ୍ଜଳି । ମଡ଼ ଦେହ ପୋଡ଼ି ପାଉଁଶ । ଏବଂ ତାପରେ ପାଲଟିଗଲେ ଇତିହାସ । ଆଜି ମଲେ କାଲିକି ଦି'ଦିନ । ପ୍ରତାପବାବୁଙ୍କ କାର୍ଯ୍ୟପାଇଁ ଶ୍ରଦ୍ଧାଞ୍ଜଳି ଦେଇଛନ୍ତି ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦୀ ଶ୍ରୀ ବସନ୍ତ କୁମାର ବିଶ୍ୱାଲ ଅନ୍ୟମାନଙ୍କ ମଧ୍ୟରେ । ଆଶ୍ୱସ୍ତ ଲାଗିଲା । ଭାରତର, ମଣିଷ ଜାତିର ପରମ୍ପରା, ଐତିହ୍ୟ ମରିଯାଇନାହିଁ ସମ୍ପୂର୍ଣ୍ଣ ଭାବରେ ।

ପ୍ରତାପବାବୁ ନାହାନ୍ତି । କେହି ରହିବେ ନାହିଁ । ଇତିହାସ ତାଙ୍କୁ କେତେ ମନେ ରଖିବ କହିପାରିବ ନାହିଁ । ରାଜନୈତିକ ପ୍ରତାପ ମହାନ୍ତି କେବଳ ନୁହନ୍ତି, ଜଣେ ଦରଦୀ ମଣିଷ, ଜଣେ ଚିନ୍ତାଶୀଳ ବ୍ୟକ୍ତି, ଜଣେ ଦୂରକୁ ଦେଖିବା ପାଇଁ ଚେଷ୍ଟା କରୁଥିବା ସେନାପତି ଭାବରେ ସେ ବଞ୍ଚି ରହିବେ ବହୁକାଳ ।



# ଲୁହ ଧୁଆ ସ୍ମୃତି

ବଡ଼ ପାଟିରେ କଥା କହେ । ହସେ, ଯେମିତି ଛୁଟେ ଫୁଲଝୁଡ଼ି ପଟକ । ପ୍ରାଣ ଖୋଲା, ସେକ ଠୋକ କଥା । ଛନ୍ଦ କପଟ କିଛି ନାହିଁ, ଯାହାକୁ ବାଜିବ ବାଜୁ । ଯାହାକୁ ଭଲ ଲାଗିବ ଲାଗୁ । ସେଥିରେ ପ୍ରମୋଦର ଯାଏ ଆସେ କେତେ ?

ପ୍ରମୋଦ ଜନ୍ମ ହୋଇଥିଲା କେଉଁଠି ମୁଁ କହିପାରିବି ନାହିଁ । ଘର କିନ୍ତୁ ଢେଙ୍କାନାଳ । ଆମେ ସବୁ ସମସାମୟିକ । ବୟସରେ ସାନ ଏବଂ କଲେଜରେ କିଛି ବର୍ଷ ତଳେ ପଢୁଥିଲେ ହେଁ ଘନିଷ୍ଠତା ଜମି ଉଠିଥିଲା ପିଲାଦିନରୁ । କାରଣ ସେଇ ପିଲାଦିନରୁ ହିଁ ସେ ନେତା ପାଲଟି ଯାଇଥିଲା । ପିଲାଦିନରୁ ମଣିଷର ଉପକାର କରିବା, ସେବା କରିବା, ନିଜ କଥା ଖାଲି ନବୁଝି ଅନ୍ୟ ମଣିଷର କଥା ବୁଝିବା, ବିଭିନ୍ନ ସାମାଜିକ କାର୍ଯ୍ୟରେ ଯୋଗ ଦେବା, ସଙ୍ଗଠିତ କରିବା ଥିଲା ତାର ସହଜ, ନିଶା ।

ଏଇ ନିଶା ତାକୁ ଆକ୍ରାନ୍ତ କରି ରଖିଲା, ଘାରି ରଖିଲା ମୃତ୍ୟୁ ପର୍ଯ୍ୟନ୍ତ । ଜୀବନକୁ ସଂକ୍ଷିପ୍ତ କରିଦେଲା ଏଇ ନିଶା ।

ମନେ ହେଉଛି କିଛି କାଳ ପାଇଁ କରି ଗୋଟାଏ ସରକାରୀ ଚାକିରି ବି କରିଥିଲା । ରାଜନୀତି ତାକୁ ଯେମିତି ପୋଷାଇଲା ନାହିଁ, ସେମିତି ଚାକିରୀ ମଧ୍ୟ ଆରେଇଲା ନାହିଁ । ସବୁ ଛାଡ଼ିଛୁଡ଼ି ଦେଇ ଦିନେ ହଠାତ୍ ଚାଲିଲା ଆମେରିକା ।

ଗଲା ସିନା, କିନ୍ତୁ ଭିଟାମାଟିକୁ, ଜନ୍ମମାଟିକୁ ଭୁଲିପାରିଲା ନାହିଁ । ବିଦେଶରେ ଅନେକ ଓଡ଼ିଆ ଭାଇ ଭଉଣୀ ଅଛନ୍ତି । ସେମାନଙ୍କ ଭିତରୁ ଅନେକ ପ୍ରସିଦ୍ଧ, ପ୍ରତିଷ୍ଠିତ । ସେମାନେ ଆମର, ଆମ ମାଟିର ଗର୍ବ । କିନ୍ତୁ କେତେଜଣ ସେମାନଙ୍କ ଜନ୍ମମାଟି, ମାଟିର ମଣିଷ, ସେ ମାଟିର ସଂସ୍କୃତି ଏବଂ ଐତିହ୍ୟକୁ ମନେ ରଖିଛନ୍ତି ? ବା ସେଥିପ୍ରତି କିଛି କର୍ତ୍ତବ୍ୟ ଅଛି ବୋଲି ଭାବୁଛନ୍ତି ?

ମୋ ଟେବୁଲ ଉପରେ ଡିସେମ୍ବରର ଚିଠି । ତାର ପାଖରେ ଓଡ଼ିଆ ଭାଇ ଭଉଣୀ ମାନଙ୍କର ନାମ ଓ ଠିକଣାର ତାଲିକା । ଶୁଣିଲି ଏଇ ତାଲିକା କୁଆଡେ ସମ୍ପୂର୍ଣ୍ଣ ନୁହେଁ । ଅନେକ ଭାଇଭଉଣୀ ଏଇ ତାଲିକାଭୁକ୍ତ ହେବାପାଇଁ ସୁଖ ମଣି ନାହାନ୍ତି । କାହାର ଦୋଷ ମୁଁ ଦେଉନାହିଁ । କିନ୍ତୁ ଏଇ ମାଟିର ସବୁ ଭାଇଭଉଣୀ

ଯେ ଗୋଟିଏ ଗୃହକୁଆ ତଳେ ରହିପାରି ନାହାନ୍ତି ବିଦେଶରେ ମଧ୍ୟ, ଏହା ବାଧେ, ବାଧେ ମନକୁ । ପ୍ରମୋଦର ମୃତ୍ୟୁ ସେଇ ସତ୍ୟ ସମ୍ପର୍କରେ ସଚେତନ କରାଇଦିଏ ।

କିନ୍ତୁ ପ୍ରମୋଦ ଥିଲା ଏକ ଭିନ୍ନ ସ୍ତରର ମଣିଷ । ସବୁ ଓଡ଼ିଆ ଏବଂ ସବୁ ଭାରତୀୟ ଭାଇଭଉଣୀ ଏକଥା ହେଜନ୍ତି । ପ୍ରମୋଦ ଆସେ ଓଡ଼ିଶାକୁ । ସବୁ ଚିହ୍ନା ପରିଚିତ ଭାଇଭଉଣୀଙ୍କ ଖବର କହେ, ପ୍ରଶଂସା କରେ । କେବେ କାହାର ବିରୁଦ୍ଧରେ କିଛି କହିବାର ମୁଁ ଶୁଣିନାହିଁ । ସେ ଓଡ଼ିଆ, ସେ ଭାରତୀୟ, ସେ ଆନ୍ତର୍ଜାତିକ । ଏକ ଅନ୍ୟର ପରିପୂରକ ।

ପ୍ରମୋଦ ଭୁଲି ନଥିଲା ମାଟିକୁ, ମାଟିର ମଣିଷକୁ । ତେଣୁ ତାର ସାହାଯ୍ୟ ହାତ ସମ୍ପ୍ରସାରିତ ହୋଇଥିଲା ଚିହ୍ନା, ଅଚିହ୍ନା ସମସ୍ତଙ୍କ ପାଖକୁ । ସମସ୍ତଙ୍କୁ ଦିନେ ଯିବାକୁ ହେବ ଏବଂ ଯିବାକୁ ହେବ ଏକାକୀ । ସବୁ ରହିଯିବ ପଛରେ । କିନ୍ତୁ ରହିଯିବ ମଣିଷ ଗୁଣର କଥା, ଆହା....

ପ୍ରମୋଦ ଆଉ ନାହିଁ । ସେଦିନ ଆସିଥିଲା । କହିଥିଲା ଷ୍ଟକ ଏକସ୍‌ଚେଞ୍ଜ କଥା । କହିଥିଲା ପୁଣି ଆସିବ । କିନ୍ତୁ ସେ ଆଉ ଆସିବ ନାହିଁ । କହିବ ନାହିଁ ତାର ଓଜସ୍ୱିନୀ କଣ୍ଠରେ । ଧ୍ୱନି ଆଉ ଶୁଭିବ ନାହିଁ । ପ୍ରତିଧ୍ୱନି କିନ୍ତୁ ଶୁଭିବ ବହୁକାଳ ଧରି ।

ଓଡ଼ିଶାର ଭାଇଭଉଣୀମାନେ ଆସନ୍ତି ଓଡ଼ିଶା । କେତେ ଜଣ ଖବର ଦିଅନ୍ତି, ସେମାନଙ୍କର ଆସିବା କଥା ? ଯେଉଁମାନେ ଦିଅନ୍ତି, ସେଇ କତିପୟ ମଣିଷଙ୍କ ଭିତରେ ପ୍ରମୋଦ ଜଣେ । ସେ ହଜିଗଲା । ତାହାର ସ୍ମୃତି ପାଖରେ ଆମେ ଓଡ଼ିଆ ଭାଇଭଉଣୀମାନଙ୍କୁ ନିବେଦନ କରୁଛୁ, ସେମାନେ ଆସିବା ପୂର୍ବରୁ ଖଣ୍ଡିଏ ଚିଠି ଦେବେ, ଆମ ପାଇଁ ଏକ ସଂଧ୍ୟାରେ ଘଣ୍ଟାଏ ସମୟ ନେବେ, କହିବେ ଆମକୁ ସେମାନଙ୍କର କଥା । ଆମ ପିଲାଏ ଖୁସି ହେବେ ସେମାନଙ୍କ କଥା ଶୁଣି । ଆମ ଗୃହ ଭରିଯିବ ମୋଟ ହେବ । ଆମ ଭାଇଭଉଣୀଟି । ପ୍ରମୋଦ ଲେଖିଥିଲା । ମୁଁ ଆସୁଚି । ମୁଁ କହିବି । ମୁଁ ଭେଟିବି । ତା'ର ପାଦ ଶବ୍ଦ ଶୁଭିବ ବହୁକାଳ ଧରି କାଳର ବକ୍ଷରେ ।

ପ୍ରମୋଦ କହୁଥିଲା ଗଲାଥର । ଓଡ଼ିଶାରେ ଏକ ସଂସ୍କୃତି ଭବନ ତିଆରି ହେବ । ସେଇଠି ରହିବ ଗେଷ୍ଟ ହାଉସ । ସଭାଘର । ବିଦେଶରୁ କିଏ ଆସିଲେ ସେଇଠି ରହିବେ । ସେ ଅର୍ଥ ଆଦାୟ କରିବ, ଦାନ ସଂଗ୍ରହ କରିବ । ପ୍ରାୟ ଦୁଇହଜାର ଓଡ଼ିଆ ଅଛନ୍ତି । ପାଞ୍ଚଶହ ଡଲାର ଲେଖାଏଁ ଦେଲେ ହୋଇଯିବନି, ଗିରିଜାଭାଇ ! ହିସାବ କଲିଚି !

ଜୀବନରେ କିଛି ହିସାବ କରି ପାରିନାହିଁ । ହସିଥିଲି । କହିଥିଲି, ଆମେ କିଛି ବାଟ ଆଗଉଁ । ତା'ପରେ ତମକୁ ଲେଖିବୁ । ତମେ ନିବେଦନ କରିବ ସବୁ

ଓଡ଼ିଆ ଭାଇଭଉଣୀଙ୍କୁ । କିଛୁ ଗୋଟାଏ ଆରମ୍ଭ ନକଲେ ସେମାନେ ଭାବିବେନ, କାଳେ ଠକ ଦେବେନତ ଆମକୁ ? ଉଚ୍ଚ ସ୍ୱରରେ ହସିଥିଲା ପ୍ରମୋଦ । ଠିକ୍ ଚିହ୍ନିଛ ଆମକୁ , ତମେ ଗିରିଜା ଭାଇ । ହଉ ଆରମ୍ଭ କର । ଦେଖ ପାଞ୍ଚ ମହଲା କରିବ । ଲିଫ୍ଟର ବନ୍ଦୋବସ୍ତ କରିବ । ନଚେତ୍ ମୁଁ ଆଉ ମୋଭଳି ମଣିଷ ଉପରକୁ ଉଠିପାରିବୁ ନାହିଁ ପାହାଚରେ ।

ପ୍ରଥମ ମହଲାର ଛାତ ପକାଇ ମୋତେ ଲେଖିବ । ସବୁ ଓଡ଼ିଆ ଭାଇଭଉଣୀ ଗୁଡ଼ାକ ଭଲ ମଣିଷମ, ସେମାନେ ନିଶ୍ଚୟ ସାହାଯ୍ୟ କରିବେ । ନିଶ୍ଚୟ, ନିଶ୍ଚୟ ।

ସ୍ମୃତି ଭବନର ଶୁଭ ଦିଆଗଲା । ‘ସମାଜ’ ସମ୍ପାଦକ ବୟୋଜ୍ୟେଷ୍ଠ ସାମ୍ବାଦିକ, ଜନନାୟକ ଶ୍ରୀ ରାଧାନାଥ ରଥ ଶୁଭ ଦେଲେ । ଛାତ ପଡ଼ିଲା । କିନ୍ତୁ ପ୍ରମୋଦ ଆଉ ନାହିଁ । ଲେଖିବୁ କାହାକୁ ? ଆମର ମାଧ୍ୟମ ହଠାତ୍ ହଜିଗଲା । ତେଣୁ ବର୍ତ୍ତମାନ "ପ୍ରମୋଦ ଭବନ" ବା ପ୍ରମୋଦର ସ୍ମୃତିରେ ଗୋଟିଏ ମହଲା ନିଶ୍ଚୟ କରିବୁ । ନିଶ୍ଚୟ ଏହାହେବ ପ୍ରବାସରେ ଥିବା ଓଡ଼ିଆ ଭାଇଭଉଣୀମାନଙ୍କ ସହିତ ଆମର ସେତୁ । ସେମାନେ ଆସିବେ । ଏଇ ପ୍ରମୋଦ ସ୍ମୃତିରେ କହିବେ ସେମାନଙ୍କ କଥା ।

ପ୍ରମୋଦ ସିନା ଗେଟ୍‌ବାଟରେ ଆଉ ଆସିବ ନାହିଁ, ସେ କଣ ଆସି ପାରିବ ନାହିଁ ମହାଶୂନ୍ୟରୁ ଉପରବାଟେ ଆଉ ଚୁପ୍‌ଚାପ୍ ଶୁଣିବ ନାହିଁ ତାର ଉତ୍ତର ପୁରୁଷଙ୍କ ସ୍ୱର । ଏଇ ମହାମିଳନ କ୍ଷେତ୍ରରେ କଣ ବାଜିବ ନାହିଁ ତାର ସ୍ମୃତିର ମହାଶଙ୍ଖ ପାଞ୍ଚଜନ୍ୟ ?

ସେଇ ହେବ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଆମ ସମସ୍ତଙ୍କର, ଆମ ସଭିଙ୍କର ।



# କେତେ କଥା କେତେ ବ୍ୟଥା

ପଦ୍ମଲ ଥିଲେ ମୋର ସମସାମୟିକ, ସହପାଠୀ । ପିଲାଦିନେ ଯେତେବେଳେ ଅନେକଙ୍କର ସ୍ୱପ୍ନ ଥିଲା, କାମନା ଥିଲା ହାକିମ ହେବାପାଇଁ, ସେତେବେଳେ ପଦ୍ମଲ ସ୍ୱପ୍ନ ଦେଖୁଥିଲେ ଦେଶସେବାର ଏକ ନୂତନ ଭାରତବର୍ଷ ଗଠନ କରିବାର । ବହୁ ଭିନ୍ନ ଯୁବକଙ୍କ ପରି ସେ ସ୍ୱପ୍ନ ଦେଖୁଥିଲେ ଯେ ତାଙ୍କର ହାତର କାଉଁରୀ ସ୍ପର୍ଶରେ ମହାନଦୀ, କାଠଯୋଡ଼ି, ବ୍ରାହ୍ମଣୀ ଆଉ କୁଆଖାଇ ଛୁଆଖାଇ ଡାହାଣୀ ହୋଇ ରହିବେ ନାହିଁ । ବିଶାଳ କ୍ୟାଗାଣ୍ଟ ଏରିଆରେ ସେମାନେ ଅମଳ ଠିଆ ହେବେ, ସ୍ୱପ୍ନ ଦେଖୁଥିଲେ ଯେ ହେ ସୁଇଚ ଟିପିଲେ ଝଲମଲ କରି ଉଠିବ ସାରା ଭାରତବର୍ଷର ଇଣ୍ଡଷ୍ଟ୍ରିଆଲ ବେଲ୍ଟ, ସ୍ୱପ୍ନ ଦେଖୁଥିଲେ ଯେ ତାଙ୍କର ଉଦାର ଆହ୍ୱାନରେ ଲକ୍ଷ ଲକ୍ଷ ଯୁବକ ବାରବାଟୀ ମଡ଼ା ପୃଥ୍ୱୀ ବିଦାରି ନୂତନ ଓଡ଼ିଶା ଗଠନ ପାଇଁ ଉଠିବେ ।

ପଦ୍ମଲ ଥିଲା ସମାଜର ସାମାଜିକ ଏବଂ ଅର୍ଥନୈତିକ ଦୃଷ୍ଟିରୁ ତଥାକଥିତ ପଛୁଆ ଶ୍ରେଣୀର କିନ୍ତୁ ମହାଭାରତର କର୍ଣ୍ଣଙ୍କ ପରି ସେ ବିଶ୍ୱାସୁଥିଲା କୁଳ ହେଉଛି ଦୈବର ଅଧୀନ,କିନ୍ତୁ ପୌରୁଷ ହେଉଛି ମୋର ଅଧୀନ । ସେ କମ୍ପ୍ଲେକ୍ସ ରହିଯାଇଥିଲା ପଛରେ । ସାମାଜିକ ଜୀବନକୁ, ରାଜନୈତିକ ଆକାଶକୁ ସେ ଛୁଇଁ ଆସିଥିଲା ।

ପଦ୍ମଲର ସେ ସ୍ୱପ୍ନ ସାର୍ଥକ ହେଲା କି ନାହିଁ ତାହା ଇତିହାସ କହିବ । କିନ୍ତୁ ସବୁ ସ୍ୱପ୍ନ କଣ ସାର୍ଥକ ହୁଏ ? ଭାରତର ସ୍ୱାଧୀନତା ସଂଗ୍ରାମର ଆଦ୍ୟ ସୈନିକ ଯଦି ଭାବିଥାନ୍ତା ଯେ ସେ ଯଦି ନିଜ ଆଖିରେ ମୁକ୍ତି ଦେଖି ଯିବ ତା'ହେଲେ ତାର ତ୍ୟାଗର ଲାଭ କଣ ? ପଦ୍ମଲ ମଧ୍ୟ ଠିକ୍ ଏଇ ପ୍ରଶ୍ନ ଛାଡ଼ି ଯାଇଛି ଆମ ସମସ୍ତଙ୍କ ପାଇଁ ।

ଏକ 'ସାଧାରଣ' ନିର୍ବାଚନ ମଣ୍ଡଳୀରେ, (ଯେଉଁଠି ସବର୍ଣ୍ଣଙ୍କ ସଂଖ୍ୟା ଅଧିକ) ଏକ ଅସବର୍ଣ୍ଣ ପ୍ରାର୍ଥୀ ଜଣେ ପ୍ରଥିତଯଶା ସବର୍ଣ୍ଣ ପ୍ରାର୍ଥୀଙ୍କୁ ହରାଇ ଦେଇପାରେ ଏଭଳି ଗୌରବ ଭାରତବର୍ଷରେ କେତେଜଣଙ୍କର ?

ଆଜିକାଲି ରାଜନୈତିକ ଜୀବନକୁ ପ୍ରଭାବିତ, ନିୟନ୍ତ୍ରିତ କରିବା ପାଇଁ ବହୁ ନୂତନ ଶିଳ୍ପପତିଙ୍କର ଅଭ୍ୟୁଦୟ ହେଲାଣି । କିନ୍ତୁ ଷଷ୍ଠ ଦଶକରେ ସେମାନଙ୍କ ଭିତରେ ଥିଲେ ବିରଳା, ଟାଟା ଇମିତ କେତେ ଜଣ । "ଆମ କମ୍ପାନୀର ପ୍ରତିନିଧିଙ୍କୁ ଆମ ଶିଳ୍ପନଗର ଛାଡ଼ି ରାଜ୍ୟର ରାଜଧାନୀକୁ ଯାଇ ମୁଖ୍ୟମନ୍ତ୍ରୀ ଓ ରାଜସ୍ୱମନ୍ତ୍ରୀଙ୍କୁ ଦେଖା କରିବାକୁ ପଡ଼ିଲା ।" ଏଇ ଥିଲା ଏକ ଶିଳ୍ପ ଗୋଷ୍ଠୀର ବାର୍ଷିକ ରିପୋର୍ଟର ବିବରଣୀ ।

ଠିକ୍ ସେତିକବେଳେ ଓ ଓଡ଼ିଶାର ଏକ ରାଷ୍ଟ୍ରମନ୍ତ୍ରୀ ବିଜୁଙ୍କ ଶବ୍ଦ ଅନାଦେଶ ଯୋଗୁଁ ଏଇଭଳି ଏକ ଶିଳ୍ପପତିଙ୍କ ବ୍ୟାଙ୍କ ଆକାଉଣ୍ଟ ଜବତ କରିବା ପାଇଁ ନିର୍ଦ୍ଦେଶ ଦେବା ସାରାଭାରତର ଶିଳ୍ପ, ରାଜନୀତି ଏବଂ ଷ୍ଟକ୍ ଏକ୍ସଚେଞ୍ଜରେ ଚାଞ୍ଚଲ୍ୟକର ଘଟଣା ।

ପଦ୍ମଲି ଏକଦା ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ଘନିଷ୍ଠ ସହଯୋଗୀ ଥିଲି । ପରେ ବିଭିନ୍ନ କାରଣରୁ ସେ ଚାଲିଗଲି ଅନ୍ୟ ଶିବିରକୁ । କିନ୍ତୁ ତାହା ତାକୁ ଖୁବ୍ ବେଶୀ ଅନୁପ୍ରାଣିତ କରି ପାରିଲି ନାହିଁ । ସେ କିମିତି ନିଜକୁ ନିଷ୍କ୍ରାନ୍ତ କରି ନେଇଗଲି ସବୁଥିରୁ ।

ପଦ୍ମଲି ମନ୍ତ୍ରୀ ଥିଲି । କରେସ୍ପ ପରିସ୍ଥିତି ସମୟରେ ବନ୍ଦୀ ବି ଥିଲି । କିନ୍ତୁ ତା' ସହିତ ବନ୍ଧୁତା ରହିଥିଲି ସେଇପରି ଭିନ୍ନ, ଅତୁଟ । ସେ ବନ୍ଧୁତାରେ ସ୍ୱଚ୍ଛତା ଥିଲି । ନଥିଲି କୌଣସି ଦେବା ନେବାର । ତେଣୁ ଜୁଆର ଭଟ୍ଟା ନଥିଲି । ଥିଲି ଏକ ପ୍ରବାହ ।

ଯଦି ଦେଖା ହୁଏ, ପଦ୍ମଲି ସେଇପରି ପରିଚିତ ଉଦାର କଣ୍ଠରେ, କରେ ? କିମିତି ଅଛୁ ? କମଳ, କିଛି ଖାଇବା ପାଇଁ ଦେବୁ ? ପଦ୍ମଲି, ତମର ସ୍ମୃତି ନା ଭୁଲି ପାରିବି, ନାଁ ଭୁଲି ପାରିବେ ତୁମର ଅସରନ୍ତି ବନ୍ଧୁ ! ତୁ ଆମ ପାଇଁ ଚିରଞ୍ଜିବୀ ।

□

# ଡକ୍ଟର ପ୍ରାଣକୃଷ୍ଣ ପରିଜା
# ଏକ ଆଲୋକପାତ

ଆମେ ସବୁ କଲେଜକୁ ଗଲାବେଳକୁ ପରିଜା ସାହେବ ରେଭେନ୍ସା କଲେଜ ଦିଗ୍‌ବଳୟରୁ ଅସ୍ତ ହୋଇଗଲେଣି । କିନ୍ତୁ ସୂର୍ଯ୍ୟ ଅସ୍ତ ହେଲାପରେ ମଧ୍ୟ ଯେପରି ତାହାର ଲୋହିତ ଆଭା ପୃଥିବୀକୁ ବହୁ ସମୟ ଧରି ଆଲୋକିତ କରି ରଖେ ଠିକ୍ ସେହିପରି ପରିଜା ସାହେବ ତଥାପି ଆଲୋକିତ କରି ରଖିଥାନ୍ତି ରେଭେନ୍ସା କଲେଜକୁ ।

ରେଭେନ୍ସା କଲେଜ ପୋର୍ଟିକୋ ପାଖରୁ କନିକା ଲାଇବ୍ରେରୀ ପର୍ଯ୍ୟନ୍ତ ପଥର ସ୍ଲାବ ବିଛାଯାଇ ରାସ୍ତା । ଦୁଇ ସ୍ଲାବ ମଝିରେ ଦୁବ ଘାସ ଉଠିଛି ବେଶ୍ ବଢ଼ିଲା । ପ୍ରିନ୍ସିପାଲ ଶଚିଦାନନ୍ଦ ରାୟଙ୍କର କଡ଼ା ନୋଟିସ । ଏପରି ଭାବରେ ଚାଲିବ ଯେପରି ସ୍ଲାବ ମଝିରେ ଘାସ ନଷ୍ଟ ନହୁଏ । ଏହା କୁଆଡ଼େ ପରିଜା ସାହେବଙ୍କର ପରମ୍ପରା । ଠିକ୍ ସେଇପରି କଲେଜ କ୍ୱାଡ୍ରାଙ୍ଗଲ । ଘାସ, ଦୁବ ଘାସର ଲନ୍ । ସେ ଲନ୍ ଉପରେ ତମେ ବସି ପାରିବ, ଅନୁମତି ନେଇ ସଭା କରିପାରିବ । କିନ୍ତୁ ସେ ଉପର ଦେଇ ଯିବା ଆସିବା କରି ପାରିବ ନାହିଁ । ସେ ଲନ୍ ଦେଖିଲେ ଆଖି ଖୋସି ହୋଇଯିବ । ପରିଜା ସାହେବଙ୍କର ପରମ୍ପରା । ରେଭେନ୍ସା କଲେଜର ବଟାନିକାଲ ଗାର୍ଡ଼େନ । ଆଜି ଯେଉଁଠି ପରିଜା ବଟାନି ପୋଷ୍ଟଗ୍ରାଜୁଏଟ ଡିପାର୍ଟମେଣ୍ଟ ହୋଇଛି ଠିକ୍ ତା ପଛ ପଟକୁ ମଧ୍ୟ ବଟାନିକାଲ ଗାର୍ଡ଼େନ ପରିବ୍ୟାପ୍ତ ଥିଲା । ବଟାନିକାଲ ଗାର୍ଡ଼େନ ଗଛରୁ ପତ୍ରଟିଏ କିଏ ଛିଣ୍ଡାଇଦେଇ ପାରିବ ? ଡକ୍ଟର ବଂଶୀଧର ସାମନ୍ତରାୟଙ୍କ ପର୍ଯ୍ୟନ୍ତ ପରିଜା ସାହେବଙ୍କର ପରମ୍ପରା ବାଘଭୟ ପରି ଲାଗୁଥିଲା ପିଲାମାନଙ୍କୁ ।

ସୂର୍ଯ୍ୟ ଅସ୍ତ ହୋଇଗଲା ପରେ ଆଲୋକର ତେଜ କମିଯାଇଥିବାରୁ ମୁଲାୟମ ଲାଗେ, ମନୋରମ ଦିଶେ । ପରିଜା ପରମ୍ପରା ସେଇଭଳି । ରୌଦ୍ରତେଜର ଜ୍ୱାଳା ନ ଥାଏ, ଆଭା ଥାଏ ।

ଶିକ୍ଷା ବିଭାଗର ଦୁଇଟି ସାହେବ— ଜଣେ ତ୍ରିପାଠୀ ସାହେବ (ସ୍ୱର୍ଗତ ଶ୍ୟାମା ଚରଣ ତ୍ରିପାଠୀ) ଏବଂ ଆଉ ଜଣେ ପରିଜା ସାହେବ (ସ୍ୱର୍ଗତ ପ୍ରାଣକୃଷ୍ଣ ପରିଜା) ସେମାନଙ୍କ ପରେ ଆଉ କେହି ସାହେବ ହୋଇ ନାହାନ୍ତି । ଏହି ଦୁଇ ସାହେବ ନଥିଲେ ଓଡ଼ିଶାର ବିଶ୍ୱବିଦ୍ୟାଳୟ ହେବାକୁ ଆହୁରି ଡେରି ହୋଇଥାଆନ୍ତା । କିନ୍ତୁ ସେମାନଙ୍କର ଏଇ ଭୂମିକାକୁ କେତେ କିଏ ମନେ ରଖିଛନ୍ତି କହିବା କଠିନ ।

ଡକ୍ଟର ପରିଜା ବୈଜ୍ଞାନିକ ଥିଲେ । ବିଜ୍ଞାନ କହିଲେ ଜିଜ୍ଞାସାକୁ ବୁଝାଏ । କୌଣସି କଥାକୁ ଅନ୍ଧ ଭାବରେ ଗ୍ରହଣ କରିନେବା ବିଜ୍ଞାନର ପ୍ରତିକୂଳ । ତାଙ୍କର ସାନ ପୁଅ ବୁଲୁ କ୍ୟାନସର ରୋଗରେ ପୀଡ଼ିତ ହୋଇ ବମ୍ବେରେ ଚିକିତ୍ସିତ ହେଉଥାନ୍ତି । ଦିନେ ଠୁରିବାବୁ (ପରିଜା ସାହେବଙ୍କ ବଡ଼ପୁଅ) ଆସି କହିଲେ ଯେ ଅନ୍ଧ୍ର ପ୍ରଦେଶର କୌଣସି ବିଖ୍ୟାତ ବାବାଙ୍କର ଆଶୀର୍ବାଦ ମିଳିଯାଇଛି ଏବଂ ଆଶ୍ଚର୍ଯ୍ୟର କଥା ତା'ପରେ ପରେ ବୁଲୁ ସଞ୍ଜ ଫେରି ପାଇଛି । ଅଧ୍ୟାପକ ଡକ୍ଟର ରାଧାନାଥ ରଥ ମନସ୍ତତ୍ତ୍ୱବିଦ୍ । ସେ ପରିଜା ସାହେବଙ୍କୁ ଭେଟି କଥାଟାର ସତ୍ୟତା ଜାଣିବାକୁ ଚାହିଁଲେ । ପରିଜା ସାହେବ କହିଲେ ଶୁଣ ଡକ୍ଟର ରଥ, ମୁଁ ବୁଲୁର ବାପା । ପୁଅ ଯେକୌଣସି ଉପାୟରେ ଭଲ ହୋଇଗଲେ ମୋଠାରୁ କିଏ ସୁଖୀ ହେବ ? କିନ୍ତୁ ମୁଁ ସଚେତନ ଯେ ବୁଲୁ କ୍ୟାନସର ରୋଗରେ ପୀଡ଼ିତ ଏବଂ ସମଗ୍ର ମାନବ ଜାତିର ପ୍ରଚେଷ୍ଟା ଚାଲିଛି ଏହି କ୍ୟାନସର ରୋଗର ନିରାକରଣ ପାଇଁ, କ୍ରମାଗତ ପ୍ରଚେଷ୍ଟା । ଯଦି କୌଣସି ବାବା ତାଙ୍କୁ ଭଲ କରି ଦେଇ ପାରିବେ ଆନନ୍ଦର କଥା, କିନ୍ତୁ ମଣିଷ ଜାତିର ସାମୂହିକ ଏବଂ କ୍ରମାଗତ ପ୍ରଚେଷ୍ଟା ତା'ହେଲେ କଣ ନିରର୍ଥକ ନାଁ ଅନାବଶ୍ୟକ ?

ଏଇ ହେଉଛନ୍ତି ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା ।

ଡକ୍ଟର ପରିଜା ଘୋର ରକ୍ଷଣଶୀଳ ବୋଲି ସମସ୍ତଙ୍କର ମତ । କିନ୍ତୁ ମୋର ଅଭିଜ୍ଞତା କଥା କହିବି । ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ କମିଶନର ଚେୟାରମ୍ୟାନ ଶ୍ରୀ ସି.ଡି. ଦେଶମୁଖ ଓଡ଼ିଶା ଆସୁଥାନ୍ତି । ମୁଁ ସେତେବେଳେ ରେଭେନ୍‌ସା କଲେଜ ୟୁନିଅନରେ ସଭାପତି । ମୋର ଇଚ୍ଛା ଯେ ତାଙ୍କୁ ରେଭେନ୍‌ସା କଲେଜକୁ ନିମନ୍ତ୍ରଣ କରିବି ଏବଂ ତାଙ୍କୁ ମୁଁ କଲେଜ ଏବଂ ବିଶେଷତଃ ହଷ୍ଟେଲ ଅବସ୍ଥା ଦେଖାଇବି । ପ୍ରିନ୍‌ସିପାଲ ନାମଞ୍ଜ ହେଲେ । ତାଙ୍କର ନାମଞ୍ଜ ହେବାର ଅନ୍ୟତମ କାରଣ ଯେ ପରିଜା ସାହେବ ରାଜି ନ ହୋଇ ପାରନ୍ତି । କାରଣ ଦେଶମୁଖ ଉତ୍କଳ ବିଶ୍ୱବିଦ୍ୟାଳୟର ଅତିଥି । ମୁଁ ପରିଜା ସାହେବଙ୍କୁ ଭେଟିଲି । ଆଶ୍ଚର୍ଯ୍ୟର କଥା ସେ ସାଙ୍ଗେ ସାଙ୍ଗେ ରାଜି ହେଲେ ଏବଂ ମୁଁ ତାଙ୍କୁ ଯେତେବେଳେ ପ୍ରସ୍ତାବ ଦେଲି ଯେ ଦେଶମୁଖ ଘଣ୍ଟାକ ପୂର୍ବରୁ ରେଭେନ୍‌ସା କଲେଜରେ ପହଞ୍ଚିଲେ ସେ କଲେଜ ବିଶେଷତଃ ହଷ୍ଟେଲ ଦେଖି ପାରନ୍ତି, ସେ ସାଙ୍ଗେ ସାଙ୍ଗେ ଉକ୍ତ ପ୍ରସ୍ତାବରେ ମଧ୍ୟ ରାଜି ହୋଇଗଲେ । ଦେଶମୁଖ ଆସିବେ ସଭାକୁ ମାନପତ୍ର ଦିଆଯିବ, ପରିଜା ସଭାପତିତ୍ୱ କରିବେ, ଏକଥା ପ୍ରିନ୍‌ସିପାଲ ଜାଣିଥିଲେ କିନ୍ତୁ ଆର ପ୍ରସ୍ତାବଟି ଜାଣି ଶୁଣି ପ୍ରିନ୍‌ସିପାଲ ଜାଣି ନଥିଲେ । ପ୍ରିନ୍‌ସିପାଲ ସଭାରେ ପହଞ୍ଚିଲା ବେଳକୁ ଦେଶମୁଖ ହଷ୍ଟେଲ ଏବଂ କଲେଜ ପରିଦର୍ଶନ କରି ସାରିଥାନ୍ତି । ପ୍ରିନ୍‌ସିପାଲ ଟିକିଏ କ୍ଷୁବ୍‌ଧ ହେଲେ, କିନ୍ତୁ ଯେତେବେଳେ ଦେଶମୁଖ ସମ୍ବର୍ଦ୍ଧନାର ଉତ୍ତର ଦେଇ ଏକ ନୂତନ ଛାତ୍ରାବାସ ପାଇଁ ଗ୍ରାଣ୍ଟ ଦେବାର ଘୋଷଣା କଲେ ସେତେବେଳେ ଅବସ୍ଥା ବଦଳିଗଲା ।

ଡକ୍ଟର ପରିଜା ଶିକ୍ଷାବିତ୍ ।

ଆଗରୁ କହିଛି ପରିଜା ସାହେବ ଭାରି ରକ୍ଷଣଶୀଳ ବୋଲି ପ୍ରବାଦ ଅଛି । ସୀମା ଆନ୍ଦୋଳନ । ପରିଜା ସାହେବ ସେତେବେଳେ ଦିଲ୍ଲୀରେ । ଓଡ଼ିଶାର ଅବସ୍ଥା ସାରା ଭାରତରେ ଆଲୋଡ଼ନ ସୃଷ୍ଟି କରିଛି । ଓଡ଼ିଆମାନେ ଯେ ସବୁବେଳେ ନିରୀହ ସୁଧାର ନୁହନ୍ତି ଏ କଥା ପ୍ରମାଣିତ ହୋଇ ଯାଇଛି । ବିଶ୍ୱବିଦ୍ୟାଳୟ ପରୀକ୍ଷା ଫେବୃଆରୀ ମାସରେ । ଜାନୁଆରୀ ମାସରେ ଆନ୍ଦୋଳନ । ବହୁ ପରୀକ୍ଷାର୍ଥୀ ଛାତ୍ର ଆନ୍ଦୋଳନ ସହିତ ସଂପୃକ୍ତ । ମୁଁ ନିଜେ ତା' ଭିତରୁ ଜଣେ । ଓ୍ୱାରେଣ୍ଟ ଉଠି ନାହିଁ । ପରୀକ୍ଷା କିଛି ଦିନ ନଘୁଞ୍ଚିଲେ ବହୁତ ଅସୁବିଧା । ଓ୍ୱାରେଣ୍ଟ ମୁଣ୍ଡ ଉପରେ । ତଥାପି ପରିଜା ସାହେବଙ୍କୁ ଯାଇ ଭେଟିଲି । ଡର ଲାଗୁଥିଲା । ପରୀକ୍ଷା ଘୁଞ୍ଚାଇବା ନାଁ ଶୁଣିଲେ ସେ ବିଗିଡ଼ିବେ କାଳେ । ପରିଜା ସାହେବ କୁଣ୍ଢାଇ ପକାଇଲେ ମୋତେ । ପଥୁରିଆ ଆଖିରୁ ଲୁହ ବୋହି ପଡ଼ିଲା । ଓଡ଼ିଆ ପିଲା ନା ରଖିଚ, ନିଶ୍ଚୟ ପରୀକ୍ଷା ଘୁଞ୍ଚିବ । ପରୀକ୍ଷା ସତକୁସତ ଘୁଞ୍ଚିଗଲା ।

ଡକ୍ଟର ପରିଜା ଓଡ଼ିଆ ଜାତୀୟତାବାଦୀ ।

ସୀମା ଆନ୍ଦୋଳନ ବେଳକୁ ମୋର ଫାଇନାଲ ବି.ଏ. ପରୀକ୍ଷା । ଟେଷ୍ଟ ପରୀକ୍ଷା ସରିଯାଇଛି । କିନ୍ତୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ଆଡ଼ମିଟ୍ କାର୍ଡ ବା ପ୍ରବେଶ ପତ୍ର ମିଳିନାହିଁ । ସରକାରଙ୍କ ତରଫରୁ ଚାପ ପଡ଼ିଲା ପ୍ରିନ୍‌ସିପାଲଙ୍କ ଉପରେ ପ୍ରବେଶ ପତ୍ର ନଦେବାପାଇଁ । କିନ୍ତୁ ପ୍ରବେଶ ପତ୍ର ଦେବ ଉତ୍କଳ ବିଶ୍ୱବିଦ୍ୟାଳୟ, ପ୍ରିନ୍‌ସିପାଲଙ୍କ ମାଧ୍ୟମରେ । ଯାଇ ପହଞ୍ଚିଲି ପରିଜା ସାହେବଙ୍କ ପାଖରେ । ପ୍ରବେଶପତ୍ର ତମ ପାଖରେ ପହଞ୍ଚିଲେ ଗଲା । ତମେ ବ୍ୟସ୍ତ ହୁଅନା । ସରକାର କିଏ ଉତ୍କଳ ବିଶ୍ୱବିଦ୍ୟାଳୟକୁ କହିବା ପାଇଁ ? ପରିଜା ସାହେବଙ୍କର ନିର୍ଭର ପ୍ରତିଶ୍ରୁତି । ସିଣ୍ଡିକେଟକୁ ଗଲା ସମସ୍ୟାଟା । ସ୍ୱର୍ଗତ ସୁରଜମଲ ସାହା ଏବଂ ଶ୍ରୀ ବିବୁଧେନ୍ଦ୍ର ମିଶ୍ର (କୁନିଭାଇନା) ସମର୍ଥନ କଲେ ପରିଜା ସାହେବଙ୍କୁ । ଆଡ଼ମିଟ୍ କାର୍ଡ଼ ମିଳିଲା ।

ଡକ୍ଟର ପରିଜା ପିତା, ଶିକ୍ଷକ, ଅଭିଭାବକ ଏବଂ ସର୍ବୋପରି ଓଡ଼ିଆ ଦେଶପ୍ରେମୀ ।

ପରିଜା ସାହେବ ଅବସର ନେଲେଣି କୁଳପତି ପଦରୁ । ଥରେ ଯାଉଥିଲେ ଅନୁଗୋଳ କୌଣସି କାର୍ଯ୍ୟରେ । ବାଟରେ ଦେଖିଲେ ଅମରି ବା ଆଇପୋମିଆ ଗଛ । ହଠାତ୍ ମନେ ହେଲା ତାଙ୍କର ଯେ ଏହା ଉପରେ ଗବେଷଣା ହେବା ଉଚିତ । ଫେରିଲା ବାଟରେ ପଶିଲେ ରେଭେନ୍‌ସା କଲେଜକୁ । ସିଧା ଉଦ୍ଭିଦ ବିଜ୍ଞାନ ବିଭାଗକୁ । କହିଲେ, ମୋର ଜଣେ ଗବେଷକ ଛାତ୍ର ଦରକାର । ଡକ୍ଟର ବଂଶୀଧର ସାମନ୍ତରାୟ ସଙ୍ଗେ ସାଙ୍ଗେ ଖୋଜ ବାହାର କଲେ ବାଞ୍ଛାନିଧି ମିଶ୍ରଙ୍କୁ । ପରିଜା ସାହେବ ପ୍ରତିଦିନ ସକାଳ ନଅଟାରେ ଆସି ତାଙ୍କୁ ନିର୍ଦ୍ଦେଶନା ଦେବେ ।

ପରିଜା ସାହେବଙ୍କର ନଅଟା ମାନେ ନଅଟା । ଆମ ବଡ଼ଲୋକଙ୍କ ଭଳି ନଅଟା ମାନେ ଦଶଟା ନୁହେଁ ।

ପରିଜା ସାହେବ ଠିକ୍ ନଅଟା ବେଳେ ପହଞ୍ଚି ଗେଟ୍ ଭିତରେ ପଶିବେ । ସେତେବେଳକୁ ସମସ୍ତେ ଆଟେନ୍‌ସନ୍‌ରେ । ଗବେଷଣା ନିର୍ଦ୍ଦିଷ୍ଟ ସମୟରେ ସରିଲା । ଏବଂ ବାଞ୍ଛାନିଧି ପିଏଚ୍‌ଡ଼ି ଉପାଧି ପାଇଲେ ।

ପରିଜା ସାହେବଙ୍କର ଏଇ ହେଉଛି ଶୃଙ୍ଖଳାଜ୍ଞାନ ଏବଂ ନିୟମିତତା ।

ମୋ ସ୍ତ୍ରୀ କମଳ କୁମାରୀ ପଟ୍ଟନାୟକ ଉଦ୍ଭିଦ ବିଜ୍ଞାନରେ ଏମ୍.ଏସ୍‌ସି. ପ୍ରଥମ ଶ୍ରେଣୀରେ ପାଶ୍ କରିଥାନ୍ତି । କିନ୍ତୁ ନାଁ ଥାଏ ବୃକର, ନାଁ ଗବେଷଣାର ସ୍କୋପ୍ । ତାଙ୍କ ମାମୁଁ ଡକ୍ଟର ଜଜ ପଟ୍ଟନାୟକ ତାଙ୍କୁ ନେଇ ପହଞ୍ଚିଲେ ଡକ୍ଟର ପରିଜାଙ୍କ ପାଖରେ । ପରିଜା ସାହେବ ଏକ ଚିଠି ଲେଖିଲେ ଆହ୍ଲାବାଦର କୁଳପତି ଉଦ୍ଭିଦବିତ୍ ଡକ୍ଟର ରଞ୍ଜନଙ୍କ ପାଖକୁ । ସପ୍ତାହକ ପରେ ଉତ୍ତର ଆସିଲା । ଆପଣଙ୍କର ଅନୁରୋଧ, ମୋ ପାଇଁ ଆଦେଶ । କମଳ କୁମାରୀ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବେ । ବିଷୟବସ୍ତୁ ଲେଖା ହୋଇଛି । ବୃତ୍ତି ପାଇବେ । ସରୋଜିନୀ ନାଇଡୁ ହଷ୍ଟେଲରେ କେଉଁ କୋଠରୀରେ ରହିବେ ତାହା ମଧ୍ୟ ଲେଖା ଯାଇଛି ।

ପରିଜା ସାହେବଙ୍କ ଜାତୀୟ ଖ୍ୟାତିର ଏହା ଏକ ନମୁନା ।

କମଳ କୁମାରୀ ପଟ୍ଟନାୟକ ଗବେଷଣା କରୁଥାନ୍ତି ଆହ୍ଲାବାଦରେ । ତେନ୍ତୁଳି ମଞ୍ଜିର ଏକ ନୂଆ ଏନଜାଇମ (Engyme) ସେ ବାହାର କରିଥାନ୍ତି । ଆହ୍ଲାବାଦକୁ ଆସିଥାନ୍ତି ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ବେନେଟ୍ କ୍ଲାର୍କ । ଶ୍ରୀ ରଞ୍ଜନ ତାଙ୍କୁ ନେଇ ଗଲେ ଉଦ୍ଭିଦ ବିଜ୍ଞାନର ଗବେଷଣାଗାରକୁ ଏବଂ ପରିଚୟ କରାଇଦେଲେ କମଳ କୁମାରୀଙ୍କୁ 'ଡକ୍ଟର ପରିଜାଙ୍କର ଲାବରେଟୋରୀରୁ ଆସିଥିବା ଛାତ୍ରୀ' ଭାବରେ । ବେନେଟ୍ କ୍ଲାର୍କ ପରିଜା ସାହେବଙ୍କର ପ୍ରଶଂସାରେ ଶତମୁଖର ଏବଂ ସାଙ୍ଗେ ସାଙ୍ଗେ ବସିଗଲେ କମଳ କୁମାରୀଙ୍କଦ୍ୱାରା ଆବିଷ୍କୃତ ଏନଜାଇମକୁ ପରୀକ୍ଷା କରିବାପାଇଁ । ଦୁଇ ଦିନ ଅଧିକା ରହିଲେ ସେଇଥି ପାଇଁ ।

ପରିଜା ସାହେବଙ୍କର ଆନ୍ତର୍ଜାତିକ ଖ୍ୟାତିର ଏହା ଏକ ଉଦାହରଣ ମାତ୍ର ।

ପରିଜା ସାହେବ ଆଉ ନାହାନ୍ତି । ସେ ଥିଲେ ଏକ କ୍ଲାସିକାଲ ମଣିଷ । କ୍ଲାସିକାଲ ଲୋକ କ୍ରମଶଃ ହଜି ଯାଉଛନ୍ତି ସମାଜରୁ । କ୍ଲାସିକାଲ ମଣିଷ ହେଉଛନ୍ତି ସମାଜର ଆଲୋକବର୍ତ୍ତିକା ।



# ବିନମ୍ର ଶ୍ରଦ୍ଧାଞ୍ଜଳି

ସେ ବର୍ଷ । ଦୁଇ ଜଣ ଜର୍ମାନ ଗବେଷକ ଆସି ପହଞ୍ଚିଲେ ଓଡ଼ିଶାରେ । ଖୋଜିବାକୁ ଆସିଛନ୍ତି ସେମାନେ ସୁଦୂର ଜର୍ମାନୀରୁ ଏକ ଦର୍ଶନକୁ ଏବଂ ସେ ଦର୍ଶନର ସାଧନା ପୀଠକୁ । ଆମେ.ସିକୁ ଦେଖିବାକୁ ।

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ"

ଖଣ୍ଡିଆ ଖଣ୍ଡିଆ ଓଡ଼ିଆରେ ସେମାନେ ମନେ ରଖିଛନ୍ତି ଏଇ ଦୁଇ ଧାଡ଼ିକୁ । ଏଇ ଧାଡ଼ିର ମହାତ୍ମ୍ୟ, ଦର୍ଶନ ସେମାନଙ୍କୁ ମୁଗ୍ଧ କରିଛି । ଜଗତ ପଛେ ଧ୍ୱଂସ ହୋଇଯାଉ , ମୋ ଜୀବନ ସୁଖରେ ରହୁ ଏଇ ଦର୍ଶନରେ ଉଦ୍‌ଭ୍ରାନ୍ତ ପୃଥିବୀ । ତାର ଭିତରେ ମଣିଷ ଖୋଜୁଛି ସେଇ ସତ୍ୟକୁ, ସେଇ ଦର୍ଶନକୁ । ଜଗତ ନଷ୍ଟ ହୋଇଗଲେ ତମର ଅସ୍ତିତ୍ୱ ରହିବ ନାହିଁ । ନିଜ ଜୀବନକୁ ତଥାକଥିତ "ପ୍ରତିଷ୍ଠିତ" କଲାବେଳକୁ ପୁଅ ଝିଅ ବାଳୁଙ୍ଗା ହୋଇ ଗଲେଣି । ନିଜ ଜୀବନକୁ "ସୁଖମୟ" କଲାବେଳକୁ ରକ୍ତଚାପ, ବହୁମୂତ୍ର ରୋଗରେ ଡାକ୍ତରଙ୍କ ପାଖରେ ପଇସା ପାଣି ପରି ଖର୍ଚ୍ଚ ହେଉଛି ବା ରାତିରେ ନିଦ ହେଉନି । ନିଦ ବଟିକା ଖାଇ ଶୋଇବାକୁ ପଡ଼ୁଛି । ଜୀବନକୁ "ଆରାମଦାୟକ" କଲାବେଳକୁ ପୁଅଝିଅମାନେ ହେରୋଇନ, ଚରସ୍‌ର ଶିକାର ହୋଇ ସାରିଲେଣି ।

ସେଇ ଜର୍ମାନ ଗବେଷକମାନେ କେବଳ ନୁହନ୍ତି, ଅନ୍ୟାନ୍ୟ ସବୁ ବୁଦ୍ଧିଜୀବୀ ସେଇଯୋଗୁଁ ଉଦ୍‌ବୁଦ୍ଧ ହୋଇଛନ୍ତି ଏଇପରି ବାଣୀରେ ।

ଏଇପରି ବାଣୀ, ମହମ୍ନ ଦର୍ଶନର ଶେଷଦ୍ରଷ୍ଟା ହୋଇଛନ୍ତି ବିଶ୍ୱନାଥ ବାବା । ବୟସ କେତେ ହୋଇଥିଲା । ସେ କେଉଁଠି ଜନ୍ମ ହୋଇଥିଲେ, କିଏ ଥିଲେ ପିତୃ ଦେବ ନାମ, କାହାର ପୁଅ, ସେ ସବୁ ଅନୁମାନ କରିବାକୁ ପଡ଼େ । କାରଣ ସଂସାର ତ୍ୟାଗ କରି ସାରିଲା ପରେ ସେ ନିଜ ସମ୍ପର୍କରେ କିଛି କହନ୍ତି ନାହିଁ । ଜିଜ୍ଞାସାର ଉତ୍ତରରେ କେବଳ ଏକ ହସରେଖା ଉକୁଟି ଉଠେ ତାଙ୍କର ମୁଖ ମଣ୍ଡଳରେ ।

ସଂସାର ତ ପାଠ ନଥିଲେ । ବୟସ ୮ ବର୍ଷ ହୋଇଥିଲା ବେଳେ ତାଙ୍କର ସଂସାର ପ୍ରତି ବୈରାଗ୍ୟ ଜନ୍ମ ହୁଏ । କି ଆଶ୍ଚର୍ଯ୍ୟ କଥା ! ଯେ ସଂସାର ଦେଖିନାହିଁ ସେ ପୁଣି କିମିତି ଜାଣିଲା ସଂସାର କଥା, ସଂସାରର ଗୂଢ଼ ରହସ୍ୟ ?

କୌଣସି ବିଦ୍ୟାଳୟରେ ପଢ଼ି ନାହାନ୍ତି । "ପାଠ" ଦୃଷ୍ଟିରୁ ସେ ତ ଶ୍ରୀଅକ୍ଷର ବିବର୍ଜିତ । କିନ୍ତୁ ନିର୍ବିକାର ଚିତ୍ତରେ ସରଳ ଭାଷାରେ ସେ କହି ଯାଆନ୍ତି ତାଙ୍କର ବିଜ୍ଞାନ, ଜୀବନ ରହସ୍ୟ ଉପରେ ତାଙ୍କର ବ୍ୟାଖ୍ୟା, ଧର୍ମ ଶାସ୍ତ୍ର ପୁରାଣମାନଙ୍କ ଉପରେ ତାଙ୍କର ଟିପ୍ପଣୀ, ଆଲୋଚନା କରନ୍ତି ଶାସ୍ତ୍ରଜ୍ଞମାନଙ୍କ ସାଙ୍ଗରେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା, ଅଧ୍ୟାପକ ଶତ୍ରୁଘ୍ନ ନାଥ । ସାହିତ୍ୟ, ବିଜ୍ଞାନ, ମନସ୍ତତ୍ତ୍ୱ କ୍ଷେତ୍ରରେ ଦିଗ୍ଗଜମାନଙ୍କ ସାଙ୍ଗରେ ।

ଲେଖିଛନ୍ତି ଅନେକ ବହି । ଅଧିକାଂଶ ଗଦ୍ୟରେ । କେତେକ ପଦ୍ୟରେ । କିନ୍ତୁ ନିଜକୁ କବି ବୋଲି ଦାବୀ କରି ନାହାନ୍ତି । ଲେଖକ ଭାବରେ ମଧ୍ୟ ନୁହେଁ । ସେ କହନ୍ତି, ବାବା କଏ, ସେ କଣ ଜାଣିଛି । ସବୁ ସେ ଡାକଛନ୍ତି ବାବା ଲେଖିଛି ମାତ୍ର । ବାବା କିଛି ନୁହେଁ । ନିମିତ୍ତ ମାତ୍ର । ମହିମା ମହାପ୍ରଭୁଙ୍କର ସବୁ ହେଉଛି ଦାନ । ବିଶ୍ୱନାଥ ବାବା ଉପରକୁ ଅନାଇ ତାଙ୍କୁ ପ୍ରଣିପାତ କରନ୍ତି ।

ବିଶ୍ୱନାଥ ବାବାଙ୍କର ପାଖରେ ଦେଖାଯାଏ ଜର୍ମାନ ଗବେଷିକା କୁମାରୀ ଏସ୍‌ମ୍ୟାନଙ୍କୁ । କୁମାରୀ ଏସ୍‌ମାନ ଆଉ ନାହାନ୍ତି । ଏଇ ଓଡ଼ିଶା ଥିଲା ତାଙ୍କର ମାତୃଭୂମି । ପିତୃଭୂମି ଥିଲା ଜର୍ମାନୀ । ମହିମା ଧର୍ମର ତତ୍ତ୍ୱ ଏବଂ ଜଗନ୍ନାଥସଂସ୍କୃତି ତାଙ୍କୁ ଆକୃଷ୍ଟ କରିଥିଲା । ଟାଣି ଆଣିଥିଲା ଜର୍ମାନୀରୁ । ବିଶ୍ୱନାଥ ବାବା ଥିଲେ ତାଙ୍କ ପାଇଁ ଏକ ଆଶ୍ଚର୍ଯ୍ୟ । ଅନେକ ଥର ସେ କହିଛନ୍ତି ଯେ ଏଇ ମଣିଷଟି କିମିତି ସରଳ ଭାଷାରେ କହି ଯାଉଛନ୍ତି ଜୀବନରହସ୍ୟ ତାହା ତାଙ୍କୁ ମୁଗ୍‌ଧ କରିଛି, ଆଶ୍ଚର୍ଯ୍ୟ କରିଛି ।

ଜାତିପ୍ରଥା ବିରୁଦ୍ଧରେ ଏବଂ ପୌତ୍ତଳିକ ବିରୁଦ୍ଧରେ ବିଦ୍ରୋହର ଗୈରିକ ପତାକା ହେଉଛି ମହିମା ଧର୍ମ । ଏକ ନିରାକାର ନିର୍ମଳ ବ୍ରହ୍ମ ହିଁ ଆରାଧ୍ୟ ଯାହାର ନାମ ଅଲେଖ ନିରଞ୍ଜନ । ଓଡ଼ିଶା ବା ଉତ୍କଳ କାହିଁକି ଏହି ବିଦ୍ରୋହର ପୀଠ ହୋଇଥିଲା ମୁଁ ଜାଣିନାହିଁ । କିନ୍ତୁ ଏଥିପାଇଁ ଆମେ ଗର୍ବିତ । ହିନ୍ଦୁ ଧର୍ମର ଜାତିପ୍ରଥା, ପିତୁଳା ପୂଜା, ପୌତ୍ତଳିକ ଏବଂ ତଦ୍‌ଜନିତ ବିବାଦ ଓ ସଦ୍ଧର୍ମର ପତାକା ଭାରତର ଅନ୍ୟତ୍ର ଉଡ଼ିବା ପୂର୍ବରୁ ଓଡ଼ିଶାରେ ଏହା ଉଡ଼ିଥିଲା । ଏଥିପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବିତ ।

ବିଶ୍ୱନାଥ ବାବା ପାଠ ପଢ଼ି ନ ଥିଲେ କିନ୍ତୁ ଜୀବନର ସ୍କୁଲ ତାଙ୍କୁ ଯେଉଁ ଶିକ୍ଷା ଦେଇଥିଲା ତାହାର ନିର୍ଯ୍ୟାସ ସେ ପାଇଥିଲେ । ଜ୍ଞାନମଣ୍ଡଳର ପ୍ରଣେତା ବିନୋଦ କାନୁନ୍‌ଗୋ କେତେ ପାଠ ପଢ଼ିଥିଲେ ? "ଅପାଠୁଆ" ବିନୋଦ କାନୁନ୍‌ଗୋ ଯେପରି

ଅନ୍ୟମାନଙ୍କୁ ପାଠ ପଢ଼ାଇ ପାରୁଥିଲେ ଠିକ୍ ସେଇପରି "ସଂସାର" କରିନଥିବା, "ପାଠ" ପଢ଼ିନଥିବା ବିଶ୍ୱନାଥବାବା ମଣିଷକୁ ଦେଇଗଲେ ସେଇ ଅମୃତମୟ ବାଣୀ ।

ଯାହା ଅଲକ୍ଷିତ, ଯାହା ଅବର୍ଣ୍ଣନୀୟ, ଯାହା ଲେଖାରୁ ଊର୍ଦ୍ଧ୍ୱରେ, ଯାହା ବର୍ଣ୍ଣନାରୁ ଊର୍ଦ୍ଧ୍ୱରେ ସେ ସମ୍ପର୍କରେ ଯେତେ ଲେଖିଲେ ଯେତେ ବର୍ଣ୍ଣନା କଲେ ମଧ୍ୟ ତାହା ସମ୍ପୂର୍ଣ୍ଣ ହେବ ନାହିଁ । ମହିମାଙ୍କ ସମ୍ପର୍କରେ ଏହା ହେଉଛି ବିଶ୍ୱନାଥ ବାବା ବା ତାଙ୍କର ଗୁରୁ କୃପାସିନ୍ଧୁ ଦାସ ବାବାଙ୍କ ମତ । ଠିକ୍ ସେଇଆ କଣ ବିଶ୍ୱନାଥ ବାବାଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ ।

ବୟସ ଶହେରୁ ବେଶୀ ହୋଇଥିଲା । କେତେ ବର୍ଷ ଅଧିକା ସେ ସମ୍ପର୍କରେ ନାନା ମତ ବୁଲୁଛି । କିନ୍ତୁ ଏଇ ବୟସରେ ମଧ୍ୟ କିଏ ଜଣେ ବିଭିନ୍ନ ଅଞ୍ଚଳ ଗସ୍ତ କରିପାରେ, ତା' ପରେ ତିନିଦିନ ସମ୍ମିଳନୀରେ ପୌରୋହିତ୍ୟ କରିପାରେ ଏହା ଭାବିବା କଠିନ । ତାଙ୍କୁ ଶେଷଥର ଦେଖିବାକୁ ଯାଇଥିଲି ଏଇ କିଛି ଦିନ ତଳେ । ସେ ଅସୁସ୍ଥ ଥିଲେ । ବିଶ୍ରାମ ନେଉଥିଲେ । କିନ୍ତୁ ତା'ର ମାତ୍ର କିଛି ଦିନ ପରେ ବିଭିନ୍ନ ଅଞ୍ଚଳକୁ ଯାତ୍ରା, ସମ୍ମିଳନୀ, ଆଉ, ତା'ପରେ ମହାଯାତ୍ରା । ପ୍ରତ୍ୟେକ ବସ୍ତୁର ଏକ ଐତିହାସିକ ଆବଶ୍ୟକତା ସରିଗଲା ପରେ ତାହାର ଅସ୍ତିତ୍ୱ ଅନାବଶ୍ୟକ ।

ବିଶ୍ୱନାଥ ବାବା କଣ ସେଇ ସତ୍ୟର ସନ୍ଧାନ ପାଇଥିଲେ ?

କାହିଁକି କହିଲେ— 'ଆମେ ପଳେଇବୁ, ତମେ ଡାକ ଅଲେଖ ମହିମାଙ୍କୁ' ?

ସମସ୍ତେ ଯିବେ । କିନ୍ତୁ ଅଭିଲେଖ ରହିଯିବ କେତେ ଜଣଙ୍କର ଉତ୍ତର ପୁରୁଷ ପାଇଁ ?

ବାବାଙ୍କୁ ଦେଖିବାକୁ ଗଲି । ଦିନ ପ୍ରାୟ ସାଢ଼େ ତିନିଟା । ବାବାଙ୍କର ଦେହାନ୍ତ ହୋଇ ଯାଇଛି ସକାଳେ । ପ୍ରାୟ ଦଶ ଘଣ୍ଟା ହୋଇ ଗଲାଣି । କିନ୍ତୁ ସେ ବସିଛନ୍ତି ସିଧା ସଳଖ ହୋଇ ପଦ୍ମାସନରେ । ସେ ସମାଧିସ୍ଥ । ମନେ ହେଉଛି ସମାଧିରୁ ଉଠିବେ, ପୁଣି କହିବେ ତାଙ୍କର ବାଣୀ, ଉପଦେଶ । ଦେହରେ ମୃତ୍ୟୁର ଚିହ୍ନ ନାହିଁ ।

ମୋର ଜେଜବାପା ବଞ୍ଚିଥିଲେ ହୋଇଥାନ୍ତେ, ଦେଢ଼ଶହ ବର୍ଷ । ସେ ତରୁଣ ବୟସରେ ଅଲେଖ ଧର୍ମ ଗ୍ରହଣ କରି ସନ୍ୟାସୀ ହୋଇଗଲେ । କୁହାଯାଏ ସେ ଖୁଆଡ଼େ ପ୍ରଥମ ବାଇଶି ମୂର୍ତ୍ତିରୁ ଜଣେ ଥିଲେ । ସେ ଖୁଆଡ଼େ ଖୁବ୍ ପ୍ରତ୍ୟକ୍ଷ ମଣିଷ ଥିଲେ । ମୋ ଜେଜେବାପାଙ୍କ ସାନ ଭାଇ ସେ । ମୁଁ ତାଙ୍କୁ ଦେଖିନାହିଁ । ତେବେ ପ୍ରାୟ ୧୨୨ ବର୍ଷରେ ୧୯୪୪ ମସିହାରେ ପରଲୋକ ଗମନ କରିଥିବା ମୋର ଜେଜେବାପା ତାଙ୍କ ସାନ ଭାଇଙ୍କ ସମ୍ପର୍କରେ ଯେଉଁ ସବୁ ଗଳ୍ପ କହୁଥିଲେ ସେଥିରୁ ଯାହା ମନେ ପଡ଼ୁଛି । ମହିମା ଧର୍ମର ପ୍ରଭାବ ମୋର ରକ୍ତରେ କିଛି ପରିମାଣରେ ପ୍ରବାହିତ ।

ବିଶ୍ୱନାଥ ବାବା ବୋଧହୁଏ ସେଇଯୋଗୁଁ ଆକୃଷ୍ଟ କରିଥିଲେ ଅନେକ ଜନ୍ତୁ. ଘୋରଦା ମଠରୁ । କଟକ ନଗରର ହଜାର ବର୍ଷ ପୂର୍ତ୍ତି ଉପଲକ୍ଷେ ଯେଉଁ ଦୁଇଖଣ୍ଡ ବିଶିଷ୍ଟ ବହି ପ୍ରକାଶିତ ହୋଇଛି ସେଥିରେ କଟକ ସହରରେ ମହିମା ଧର୍ମ ସମ୍ପର୍କରେ ଏକ ନିବନ୍ଧ ଲେଖିଛନ୍ତି ଅଧ୍ୟାପକ ଶତଘ୍ନ ନାଥ । ବିଶ୍ୱନାଥ ବାବାଙ୍କର ଏକ ଫଟୋ ସେଥିରେ ଦିଆଯାଇଛି । ବିଶ୍ୱନାଥବାବା ସେ ବହି ଦୁଇଟିକୁ ଦେଖିବାକୁ ଆଗ୍ରହ ପ୍ରକାଶ କରିଥିଲେ । ସମ୍ପ୍ରତି ଜଷ୍ଟିସ ହରିହର ମହାପାତ୍ରଙ୍କ ନିର୍ଦ୍ଦେଶାନୁସାରେ ବହି ଦୁଇଟି ବାବାଙ୍କ ପାଖରେ ସମର୍ପିତ ହେଲା । ବାବା ଆଶୀର୍ବାଦ କରନ୍ତି । ସାଧାରଣତଃ ମହିଳା ମାନଙ୍କୁ ସେ ସ୍ପର୍ଶ କରନ୍ତି ନାହିଁ । ବାବା ଭରତ ଦାସ ଉପସ୍ଥିତ । ମୋ ଝିଅ ଜିଦ୍ ଧରିଲା ସେ ବାବାଙ୍କୁ ଛୁଇଁ ପ୍ରଣାମ କରିବ । ବାବା ସମ୍ମତି ଦେଲେ । ଭକ୍ତ ଆଗରେ ବ୍ୟତିକ୍ରମ କରିବାକୁ ସାଦର ସମ୍ମତି ।

ସମାଧିର ସମସ୍ତ ଉପସ୍ଥିତ । ଖବର କେହି ପାଇ ପାରି ନାହାନ୍ତି । ତଥାପି ଯିଏ ଖବର ପାଇଛି ଛୁଟି ଆସିଛି । ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠୁନାହିଁ । ସମସ୍ତେ ସମବେତ । ବିଦ୍ରୋହର ଗୈରିକ ପତାକା ଅବନମିତ ହେଉଛି । ସମସ୍ତେ ସମ୍ମାନ ଜଣାଉଛନ୍ତି । ଆବାଳ ବୃଦ୍ଧବନିତା । ମୁଖରେ ଶୋକ ପ୍ରକାଶ କରିବା ମହିମା ଧର୍ମରେ ନାହିଁ । ଯିବାକୁ ତ ହେବ । ଯିବା ତ ନୂହେଁ । ବାହୁଡ଼ିବା । ତେଣୁ ଦୁଃଖ କାହିଁକି ?

ତଥାପି ଲୁହ ମାନୁନି । ତ୍ୟାଗପୂତ, ସାଧନାଶାଣିତ, ଦୀପ୍ତିମନ୍ତ ମହାପୁରୁଷଙ୍କର ମରଦେହ ସମାଧିସ୍ଥ ହେଉଛି । କିନ୍ତୁ ଆକାଶର ରୌଦ୍ରଦୀପ୍ତ ସ୍ୱପ୍ନର ପରି ସେ ଆଲୋକିତ କରିଯାଇଛନ୍ତି ମଣିଷ ସମାଜକୁ । ଅନୁପ୍ରାଣିତ କରିଯାଇଛନ୍ତି ଜାତିପ୍ରଥା, କୁସଂସ୍କାର, ପଣ୍ଡିତବାଦ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ । ବିଦ୍ରୋହୀ ଆଜି ରଣକ୍ଳାନ୍ତ, ଶାନ୍ତ ।



# ଯାହାଙ୍କର କଣ୍ଠରୁ ସଂଗୀତର ସୁଧା ଝରୁଥିଲା

ଉତ୍କଳୀୟ ସଙ୍ଗୀତର ଗୌରବ ବାଳକୃଷ୍ଣ ଦାସ ଆଉ ନାହାନ୍ତି । କିଛି ବର୍ଷ ଧରି ସେ ଅସୁସ୍ଥ ଥିଲେ ଏବଂ ଯେଉଁ କଣ୍ଠରୁ ଝରୁଥିବା ସଙ୍ଗୀତ ଅଗଣିତ ଶ୍ରୋତାଙ୍କୁ ମୁଗଧ ଏବଂ ସ୍ତବ୍ଧ କରି ରଖୁଥିଲା ସେଇ ଅମୃତ କଣ୍ଠରୁ ଆଉ ସଙ୍ଗୀତ ଝରୁ ନଥିଲା । ବହୁ ଶିଷ୍ୟ, ଶ୍ରୋତାଙ୍କ ପାଇଁ ତାହା ଆଣି ଦେଉଥିଲା ଆଖିରେ ଲୁହ । ସେ ସବୁ ଜାଣି ପାରୁଥିଲେ । ଜାଣି ପାରୁଥିଲେ ଯେ ତାଙ୍କର ସମସ୍ତ ଅତିକ୍ରାନ୍ତ ହୋଇଯାଉଛି ଦ୍ରୁତ ଗତିରେ । କିନ୍ତୁ ମୁହଁରେ ତାଙ୍କର ଲାଗି ରହୁଥିଲା ମନଭୁଲାଣିଆ ହସ । ଆପଣାର ପ୍ରିୟ ସଙ୍ଗୀତ ଶିଷ୍ୟ ଶିଷ୍ୟାମାନଙ୍କ କଣ୍ଠରୁ ସଙ୍ଗୀତ ଶୁଣି ତାଙ୍କର ମୁଖମଣ୍ଡଳ ଉଦ୍‌ଭାସିତ, ଉତ୍‌ଫୁଲ୍ଲିତ ହୋଇ ଉଠୁଥିଲା ଆନନ୍ଦର ଶିହରଣରେ । ସ୍ରଷ୍ଟା ଆପଣାର ସୃଷ୍ଟିର ସାଫଲ୍ୟରେ ଅଭିଭୂତ ହୋଇ ଉଠୁଥିଲେ । ସେଦିନ କଳାବିକାଶ କେନ୍ଦ୍ରରେ ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥିଲା । ସେଇ ଥିଲା ବୋଧହୁଏ ତାଙ୍କର ଅନ୍ତିମ ସମ୍ବର୍ଦ୍ଧନା । ଆପଣାର ପ୍ରିୟ ଶିଷ୍ୟା ଶ୍ୟାମାମଣିଙ୍କର ସୁଲଳିତ କଣ୍ଠରେ ନିନାଦିତ ହେଉଥିଲା ପ୍ରେକ୍ଷାଳୟ । ବାଳକୃଷ୍ଣ ଦାସଙ୍କର ମୁଖମଣ୍ଡଳର ଭଙ୍ଗୀ ବଦଳି ଯାଉଥିଲା ମୁହୂର୍ତ୍ତିକୁ ମୁହୂର୍ତ୍ତି । ସେ ଯେପରି ଆନନ୍ଦରେ କ'ଣ ସବୁ କହିଯିବାକୁ ଚାହୁଁଥିଲେ । କିନ୍ତୁ, ସେ କହିପାରୁ ନଥିଲେ । ସେଇ ହସର ରେଖା ଉକୁଟି ଯାଉଥିଲା ମୁହଁ ଉପରେ । ମୃତ୍ୟୁ ପୂର୍ବରୁ ସେ ବାଳକୃଷ୍ଣ ଦାସ ଫାଉଣ୍ଡେସନ ଗଢ଼ା ହେବା ଦେଖି ଯାଇଥିଲେ । ଶିଷ୍ୟ ସୁରେଶ ଚନ୍ଦ୍ର ଦେଙ୍କର ଅକ୍ଳାନ୍ତ ଉଦ୍ୟମର ଫଳ । କିନ୍ତୁ ସେ ସୁରେଶଙ୍କଦ୍ୱାରା ସଙ୍କଳିତ ଓ ଲିଖିତ ତାଙ୍କର ଜୀବନୀ ଦେଖିବାକୁ ରହିପାରିଲେ ନାହିଁ । ମରଣର ଶୀତଳ ହାତ ତାଙ୍କୁ ଛଡ଼ାଇ ନେଲା ପୃଥିବୀ ପୃଷ୍ଠରୁ । ହଠାତ୍ ପୃଥିବୀ ଦରିଦ୍ର ହୋଇଗଲା । ସଙ୍ଗୀତର ସୁର ହଠାତ୍ ବେସୁରା ହୋଇଗଲା । ଅଗଣିତ ଗୁଣୀ ଗୁଣୀ ଲୁହଭରା କଣ୍ଠରେ ଗାଇଲେ ବାଳକୃଷ୍ଣଙ୍କ ଉଦାର କଣ୍ଠର ସଙ୍ଗୀତ "କଦାଚିତ୍ କାଳିନ୍ଦୀ ତଟ ବିପିନ ସଙ୍ଗୀତ କରବୋ" ବା "ସର୍ବେଷାଂ ନୋ ଜନନୀ ଭାରତ ଧରଣୀ...." ।

୧୯୯୩ ମସିହା ସେପ୍‌ଟେମ୍ବର ମାସ ତିରିଶ ତାରିଖ ଥିଲା କୁମାର ପୂର୍ଣ୍ଣିମା । ସେଇ ସନ୍ଧ୍ୟାରେ ବାଳକୃଷ୍ଣ ଦାସ ଫାଉଣ୍ଡେସନ ଆନୁକୂଲ୍ୟରେ ଆୟୋଜିତ ହୋଇଛି ଅପୂର୍ବ ସାଂସ୍କୃତିକ କାର୍ଯ୍ୟକ୍ରମ । କିନ୍ତୁ କୁମାର ପୂର୍ଣ୍ଣିମାର ଚନ୍ଦ୍ର ଦେଖିବା ପାଇଁ ବାଳକୃଷ୍ଣ ଦାସଙ୍କ ଭାଗ୍ୟରେ ନଥିଲା । ପନ୍ଦରଦିନକାଳ ଜୀବନ ଓ ମୃତ୍ୟୁ ମଧ୍ୟରେ

କଠୋର ସଂଗ୍ରାମ । ବାଳକୃଷ୍ଣ ଦାସ ଅଜ୍ଞାନ । ଆଉ ତା'ପରେ ? ତା'ପରେ ମୃତ୍ୟୁର ଜୟଧ୍ୱଜ ଜୀବନ ଉପରେ । ବାଳକୃଷ୍ଣ ଦାସ ଇତିହାସ ବର୍ତ୍ତମାନ ।

ଭୁବନେଶ୍ୱର ପାଖରେ ସୁନ୍ଦରଗ୍ରାମ । ବ୍ରାହ୍ମଣ ଶାସନରେ ୧୯୨୭ ମସିହା ସାବିତ୍ରୀ ଅମାବାସ୍ୟାରେ ଜନ୍ମଲାଭ କରିଥିଲେ ବାଳକୃଷ୍ଣ ମଧ୍ୟରାତ୍ରିର ସଂଧିକ୍ଷଣରେ । ବାପାଙ୍କର ଯଜମାନୀ ସହିତ ବେହେଲା ଯନ୍ତ୍ର ବଜାଇବାରେ ପ୍ରବୀଣତା ଥିଲା ଏବଂ ବାଳକୃଷ୍ଣ ସଙ୍ଗୀତକୁ ଆଣିଲେ ଆପଣାର ଜିନ୍ (gene)ରେ । ଗୋଟିପୁଅ ନାଚରୁ ଆରମ୍ଭ ହେଲା ବାଳକୃଷ୍ଣର ଆଦ୍ୟ ସଙ୍ଗୀତ ଶିକ୍ଷା ଏବଂ ବିକାଶ । ଭୁବନେଶ୍ୱର ବି.ଏମ୍. ସ୍କୁଲରେ ପାଠପଢ଼ା ସହିତ ଗୋଟିପୁଅ ଗୀତ ଓ ନାଚ ଶିକ୍ଷା ଚାଲିଲା । ଅନେକ ସମୟରେ ପାଟ୍ରନାଇଜେସନ ଅଭାବରୁ କଳା ମରିଯାଏ, ବଣ ମଲ୍ଲୀ ପରି । କିନ୍ତୁ ପାଟ୍ରନାଇଜେସନ ମିଳିଲେ ? ବାଳକୃଷ୍ଣଙ୍କ ପାଇଁ ସତ୍ୟପ୍ରିୟ ମହାନ୍ତି (ପରେ ମନ୍ତ୍ରୀ) ମିଳିଗଲେ ଏବଂ ବାଳକୃଷ୍ଣଙ୍କ ଶିକ୍ଷା, ସଙ୍ଗୀତ ଶିକ୍ଷା ଆରମ୍ଭ ହେଲା ବିଖ୍ୟାତ ସଙ୍ଗୀତଜ୍ଞ ଗୋକୁଳ ଶ୍ରୀଚନ୍ଦନଙ୍କ ପାଖରେ । ସେ ହେଉଛନ୍ତି ବାଳକୃଷ୍ଣଙ୍କର ଆଦ୍ୟଗୁରୁ । ସେ ହିଁ ବାଳକୃଷ୍ଣଙ୍କୁ ନେଇଗଲେ କଲିକତା ଶ୍ରୀ ରାସ୍ୟଚନ୍ଦ୍ର ବାଡାଲଙ୍କ ପାଖକୁ । ଆଉ ବାଳକୃଷ୍ଣ ଫେରି ଚାହିଁ ନାହାନ୍ତି । କଲିକତାରେ ତାଙ୍କର ବିକାଶ ଏବଂ ବିବାହ ଉଭୟ । ବହୁ ସର୍ବଭାରତୀୟ ଖ୍ୟାତିସମ୍ପନ୍ନ କଳାକାରମାନଙ୍କର ସାହଚର୍ଯ୍ୟ, ସାନ୍ନିଧ୍ୟ ଏବଂ ଶିକ୍ଷା ପାଇବାର ସୁଯୋଗ ମିଳିଲା ବାଳକୃଷ୍ଣଙ୍କୁ । ଓଡ଼ିଶୀ ସହିତ ବଙ୍ଗଳା ଏବଂ ହିନ୍ଦୁସ୍ଥାନୀ ସଙ୍ଗୀତ ବାଳକୃଷ୍ଣଙ୍କ ଆୟତ୍ତକୁ ଆସିଲା ।

କଲିକତାରୁ କଟକ । ୧୯୪୮ ମସିହା । କଟକରେ ରେଡ଼ିଓ ଷ୍ଟେସନ ପ୍ରତିଷ୍ଠା ହୁଏ । ମୁସ୍ତଫା ଅଲ୍ଲି, କଟକ ରେଡ଼ିଓ ଷ୍ଟେସନରେ ଡାଇରେକ୍ଟର । ସୁରେନ ମହାନ୍ତି ପ୍ରୋଗ୍ରାମ ଏକ୍‌ଜିକ୍ୟୁଟିଭ । ଦୁହେଁ କେବଳ କଳା-ପ୍ରବଣ ନୁହନ୍ତି, କଳା-ସଂଗଠକ ମଧ୍ୟ । ବାଳକୃଷ୍ଣ ଦାସ ସେମାନଙ୍କ ଆଖିରୁ ଏଡ଼ାଇଯାଇ ନଥିଲେ । ବାଳକୃଷ୍ଣ ଆସିଲେ କଟକ ରେଡ଼ିଓ ଷ୍ଟେସନକୁ ପ୍ରୋଗ୍ରାମ ଏକ୍‌ଜିକ୍ୟୁଟିଭ ହୋଇ । ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ନ୍ୟାସ୍‌ନାଲ ମ୍ୟୁଜିକ୍ ଆସୋସିଏସନ, କଳାବିକାଶ କେନ୍ଦ୍ର, ଉତ୍କଳ ସଙ୍ଗୀତ ସମାଜ ସବୁ ଅନୁଷ୍ଠାନ ବାଳକୃଷ୍ଣଙ୍କର ଆଲେଖ୍ୟ ବହନ କରିଛି, ରେଡ଼ିଓ ଷ୍ଟେସନ ସହିତ । ବାଳକୃଷ୍ଣଙ୍କର ଖ୍ୟାତି ବଢ଼ିଛି, ଗୁଣଗ୍ରାହୀ ବଢ଼ିଛନ୍ତି, ସଙ୍ଗୀତ ବୋଲ ମାନିଛି । ବହୁ ସ୍ୱୀକୃତି ଓ ସମ୍ମାନ ଲାଭ କରିଛନ୍ତି । ଠିକ୍ ସେଇପରି ଅଭିଯୋଗ, ଈର୍ଷା, ପରଶ୍ରୀକାତରତାର ମଧ୍ୟ ଶିକାର ହୋଇଛନ୍ତି । ରେଡ଼ିଓ ଷ୍ଟେସନରୁ ବିଦାୟ ନେଇଛନ୍ତି । ସଙ୍ଗୀତର ଆକାଶ ତାଙ୍କ ପାଇଁ ଉନ୍ମୁକ୍ତ ହୋଇଛି । ଆଉ କୌଣସି ବନ୍ଧନ ନାହିଁ ।

ଦ୍ୱିତୀୟ ସ୍ତ୍ରୀଙ୍କର ହଠାତ୍ ପରଲୋକ ପରେ ପ୍ରଥମ ସ୍ତ୍ରୀ ପ୍ରଭାବତୀ ଦେବୀଙ୍କ ସହିତ ପୁନର୍ମିଳନ ଘଟିଛି । ସମସ୍ୟା ବାଳକୃଷ୍ଣଙ୍କୁ ଛାଡ଼ି ନାହିଁ । ୧୯୮୭ ମସିହାରେ

ପତ୍ନୀ ପ୍ରଭାବତୀ ଦେବୀ ଗ୍ରହଣ କରିପାରୁନାହାନ୍ତି ତାଙ୍କୁ । ବାଳକୃଷ୍ଣ ଦାସ ମଦ୍ୟପାନରେ ନିଜକୁ ବୁଡ଼ାଇ ରଖନ୍ତି ଦୁଃଖ, ସମସ୍ୟା ଭୁଲିବା ପାଇଁ । ପରିଶେଷରେ ପକ୍ଷାଘାତ ରୋଗ ତାଙ୍କୁ ଆକ୍ରମଣ କରେ ଏବଂ ସଙ୍ଗୀତ ସୁଧାକରଙ୍କର ସୁଧା ହଜି ହଜି ଯାଏ ବିପର୍ଯ୍ୟସ୍ତ ଭିତରେ ।

ତା'ପରେ । ସମ୍ମାନ ଆସେ ବିଭିନ୍ନ ଦେଶରୁ, ବିଭିନ୍ନ ଅନୁଷ୍ଠାନରୁ । ଓଡ଼ିଶୀ ନୃତ୍ୟ (ଯାହାର ଅବିଚ୍ଛେଦ୍ୟ ଅଙ୍ଗ ହେଉଛି ଓଡ଼ିଶୀ ସଙ୍ଗୀତ) କ୍ଲାସିକାଲ ନୃତ୍ୟ ଭାବରେ ସ୍ୱୀକୃତ ହୁଏ । ବାଳକୃଷ୍ଣ ଦାସଙ୍କର ମନ ଆନନ୍ଦରେ ଭରିଯାଏ । ଦେହ କିନ୍ତୁ ଅବଶ ହୋଇ ଆସେ ଧୀରେ ଧୀରେ ।

ସବୁ ରହିଯାଏ ପଛରେ । ସୁର ଓ ସାଧନା । ପ୍ରତିଷ୍ଠା ଓ ସମ୍ମାନ । ମଣିଷ ସବୁକୁ କାଟି ଛୁଟିଯାଏ । କୁଆଡ଼େ କେହି କହିପାରିବେ ନାହିଁ । କିନ୍ତୁ ଆଜିଠାରୁ ବହୁ ବର୍ଷ ପରେ ମଧ୍ୟ ବାଳକୃଷ୍ଣଙ୍କର ଗୀତର ପ୍ରତିଧ୍ୱନି ଓଡ଼ିଶାର ପୁରପଲ୍ଲୀରେ ଧ୍ୱନିତ ହେବ । ଜର୍ମାନୀରେ ରାଜେନ୍ଦ୍ର, ଆମେରିକାରେ ଜ୍ୟୋତ୍ସ୍ନା, ସୁଇଡ଼େନରେ ମହାନନ୍ଦିଆ, ଅଷ୍ଟ୍ରେଲିଆରେ ସିଦ୍ଧାର୍ଥ, ଜାପାନରେ ଜଗନ୍ନାଥ ଦାସଙ୍କର କନ୍ୟା ଏହି ସଙ୍ଗୀତର ରେକର୍ଡ଼ ବା ଟେପ୍ ଶୁଣିବେ । ବାଳକୃଷ୍ଣ ବଞ୍ଚି ରହିବେ ଅଗଣିତ ଜନମାନସରେ ।



# ବଂଧୁ ବସନ୍ତ

ମରଣ ଏମିତି ବି ଆସେ । ଯାହା ବେକ ପାଇଁ ଯାଉଥିବା ଫୁଲମାଳକୁ ନିଜ ବେକରେ ଗଳାଇ ସେମାନେ ଫେରନ୍ତି । କିନ୍ତୁ ସେ ଫେରିବାଟି ଦୁର୍ବିସହ, ଦୁରବୋଧ । ମୃତ୍ୟୁ ଆସେ ଅଚାନକ । ଆସେ ପୁଅ ପାଇଁ ବୃଦ୍ଧ ପିତାମାତାଙ୍କ ଆଗରେ, ଆସେ ବିଧବା ମା ଆଗରେ; ଆସେ ସଂସାରକୁ ଜାଣି ନଥିବା ପୁଅ କନ୍ୟାମାନଙ୍କ ଆଗରେ । ଦୁର୍ବିସହ, ଦୁର୍ବିସହ ସେ ଯାତନା, ସେ ବେଦନା ସାନ୍ତ୍ୱନାର ବାହାରେ । କିଏ ଦେବ ସାନ୍ତ୍ୱନା ? ସମସ୍ତଙ୍କ ଆଖିରେ ତ ଲୁହ ଢ଼େଉ ଖାଉଛି, ସମସ୍ତେ ତ ନିସ୍ତବ୍ଧ ନିର୍ବାକ ! ସବୁ ଅସମ୍ପୂର୍ଣ୍ଣ ରହିଛି । ସବୁ ରହିଛି ଅଧାରେ । ଆଗରେ ବିରାଟ ଜୀବନ ପଡ଼ି ରହିଛି ଭୁବନେଶ୍ୱରକୁ ଯାଉଥିବା ରାଜରାସ୍ତା ପରି । କାମ ଅନେକ । ଶିଳ୍ପ ଥିଲା ପେଶା । କିନ୍ତୁ ନିଶା ଥିଲା ବହୁତ । କଳା, ସଂସ୍କୃତି, ଶିକ୍ଷା, ସାହିତ୍ୟ । ଜୀବନର ବହୁ ବିଭବକୁ ଛୁଇଁ ଯାଉଥିଲା ସେହି ଦୁଇଟି ହାତ । କିନ୍ତୁ ହଠାତ୍ ସେହି ରାଜରାସ୍ତା ଉପରେ ସବୁର ପୂର୍ଣ୍ଣଚ୍ଛେଦ । ସବୁ ପାଲଟିଗଲା ଇତିହାସ । କାହିଁକି ? ସେ ଦିନ ରାଜା ପ୍ରଶ୍ନ ପଚାରିଥିଲେ ପଣ୍ଡିତଙ୍କୁ । ଆପଣ କହିପାରିବେ, କାହିଁକି ପିତାମାତା ଆଗରେ ପୁଅର ମୃତ୍ୟୁ ହୁଏ ? କହିପାରିବେ କାହିଁକି ମୃତ୍ୟୁ ହୁଏ ସ୍ତ୍ରୀ ଆଗରେ ସ୍ୱାମୀର ? ସେ ପ୍ରଶ୍ନ ସେହିପରି ରହିଯାଇଛି । ଅନନ୍ତ ସେହି ପ୍ରଶ୍ନ ।

ସମସ୍ତେ ନିସ୍ତବ୍ଧ । ବିଜୟ ମିଶ୍ର ଥିଲେ ଅଜାତ ଶତ୍ରୁ । ପାଠ ପଢ଼ି ଥିଲେ, ଅର୍ଥ ଉପାର୍ଜନ କରିଥିଲେ , ପ୍ରତିଷ୍ଠା ପାଇଥିଲେ । ସବୁଥିଲା । କିନ୍ତୁ ନଥିଲା ଅହମିକା, ନଥିଲା ଗର୍ବ । ବିନୟର ଯେପରି ଏକ ଚଳନ୍ତି ପ୍ରତିମା । ବାପା ମାଙ୍କର ଦିଅ ନାମ ସାର୍ଥକ କରିଥିଲେ । ସକାଳେ ଦେଖା ହୋଇଥିଲା । କହିଥିଲେ ସନ୍ଧ୍ୟାକୁ ଆସିବେ । ଆସିଲେ ତ ନାହିଁ, ଆଉ ବି ଆସିବେ ନାହିଁ । କିନ୍ତୁ ଗେଟ୍ ଆଗରେ ଆମ୍ବାସାଡର ଗାଡ଼ିଟିଏ ରହିଲେ ମନେ ହେବ ସେ ଆସିଲେ । ୟୁନିଭର୍ସରେ ସେମିନାରଟିଏ ହେଲେ, କୌଣସି କାର୍ଯ୍ୟକ୍ରମ ହେଲେ ମନେ ହେବ ସେ ଆସିବେ । ଆମେ ତାଙ୍କୁ ଅପେକ୍ଷା କରିବୁ ଥିବା ପର୍ଯ୍ୟନ୍ତ । ଅଜସ୍ର ଥିଲା ସହପାଠୀ । କଥାବାର୍ତ୍ତା ତେଣୁ ବାଟଘାଟ ମାନୁ ନଥିଲା । ଦେଖା ହେଲେ ସେହିଭଳି କଥା । ସେଇ ହସ ହସ ମୁହଁ । କଲେଜରେ ଯେମିତି ଥିଲା ଏବେ ବି ସେମିତି । ବୁଢ଼ା ଆଦୌ ବୁଢ଼ା ହୋଇନଥିଲା । ବାର୍ଦ୍ଧକ୍ୟ ତାକୁ ଛୁଇଁବାକୁ ଡରୁଥିଲା । ପଢ଼ିଥିଲା ଇତିହାସ, ହୋଇଥିଲା ପାଇଲଟ, ଶିଳ୍ପପତି । ଉତ୍କଳ ବିଶ୍ୱବିଦ୍ୟାଳୟରେ ସିନେଟ, ସିଣ୍ଡିକେଟର ସଭ୍ୟ । ସବୁ ବିଭବକୁ ଛୁଇଁବାକୁ ତାର ପ୍ରବଳ ଆଗ୍ରହ ।

କେବଳ ମରଣଟା ବାକି ଥିଲା । ସେଇଟାକୁ ସମ୍ପୂର୍ଣ୍ଣ କରିଦେଲା ସେ । ଦୁହେଁ ଥିଲେ ବ୍ୟକ୍ତିଗତ ବନ୍ଧୁ । ଯୁଦ୍ଧବର୍ଗ ପରିବାରର ଲୋକ । ବହୁ ଦୁଃଖସୁଖର ବନ୍ଧୁ । ବନ୍ଧ ଥିଲା ଆମ ପରିବାରର ଜଣେ । ସ୍କୁଲଠାରୁ ବନ୍ଧୁ । ବୟସରେ ବହୁତ ସାନ । ଅଜସ୍ର ଥିଲା ସହପାଠୀ । ସେମାନେ ନାହାନ୍ତି । ତାଙ୍କର ସ୍ମୃତିରେ ଲେଖିବାର ଗୌରବ—କଲମ ରୁନ୍ଧି ହୋଇଯାଏ, ଆଖି, ମନ ସବୁ ଅଚଳ ହୋଇଯାଏ । ମନେ ହୁଏ, ନା ସେମାନେ ମରି ନ ପାରନ୍ତି । କାହିଁକି ମରିଯିବେ ସେମାନେ ? କଣ ପାପ କରିଥିଲେ କି ସେମାନେ ? ଅନ୍ୟମାନେ କ'ଣ ପୁଣ୍ୟ କରିଛନ୍ତି ଯେ ବଞ୍ଚି ରହିବେ । ନା, ନା ସେମାନେ ଫେରିବେ । ନ୍ୟାୟ ଯଦି ଥାଏ, ସେମାନେ ଫେରିବେ । କିନ୍ତୁ ଏ ସବୁ ତ ବିଳାପ, ପ୍ରଳାପ । ସେମାନେ ଫେରିବେ ନାହିଁ ସତ୍ୟ, କିନ୍ତୁ ସେମାନେ ବଞ୍ଚି ରହିବେ ଆମ ଭିତରେ । ଆମେ ସବୁ ଥିବା ପର୍ଯ୍ୟନ୍ତ ।



# ହେଜିଲା ଭଳି
# ହଜିଯାଇଥିବା ମଣିଷଟିଏ

ଜଷ୍ଟିସ ବୀରେନ୍ଦ୍ର ଚନ୍ଦ୍ର ଦାସ ବୋଧହୁଏ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ତେଣୁ ସେ ଚାଲିଯିବା ସମ୍ବାଦ ଅନେକଙ୍କୁ ବିସ୍ମିତ କରିନଥିବ । ସେ କଣ ଏ ପର୍ଯ୍ୟନ୍ତ ଥିଲେ ? ଅନେକଙ୍କର ମୁହଁରେ ଏଇ ପ୍ରଶ୍ନ ତାଙ୍କର ବିୟୋଗ ସମ୍ବାଦ ଶୁଣି । କିନ୍ତୁ କିଛି ଦିନ ତଳେ ବି. ସି. ଦାସଙ୍କ ନିର୍ଭୀକତା, ନିରପେକ୍ଷତା ଏବଂ ସଚ୍ଚୋଟତାର ପ୍ରତୀକ ଭାବରେ ଗଣନା କରି ଯାଉଥିଲା । ୧୯୧୦ ମସିହା ଜାନୁୟାରୀ ୧୭ ରେ ଜନ୍ମ ଗ୍ରହଣ କରି ବୀରେନବାବୁ ପାଟନାରୁ ପ୍ରଥମେ ଏବଂ ପରେ ଲଣ୍ଡନରୁ ବି. ଏ. ପାସ କରନ୍ତି । ୧୯୩୫ ମସିହାରେ ଲଣ୍ଡନର ମିଡ଼ିଲ ଟେମ୍ପଲରୁ ବାରିଷ୍ଟରୀ ପାସ କରନ୍ତି । ପାଟନା ହାଇକୋର୍ଟରେ ସେ ଆଇନ ବ୍ୟବସାୟ କରନ୍ତି । ବୋଧହୁଏ ସେ ଜୀବନ ତାଙ୍କୁ ଭୁଲାଇଲା ନାହିଁ । ସେ ୧୯୪୮ ମସିହାରେ ଜିଲ୍ଲାଜଜ୍ ହୁଅନ୍ତି ଓଡ଼ିଶାରେ ଏବଂ ପରେ ବହୁକାଳ ଧରି ଓଡ଼ିଶା ସରକାରଙ୍କର ଆଇନ ସେକ୍ରେଟେରୀ ହୁଅନ୍ତି । ୧୯୬୪ ମସିହାରେ ଏକ ଚମକ ସୃଷ୍ଟି ହୁଏ ଓଡ଼ିଶାର ରାଜନୈତିକ ଏବଂ ଶାସନ କ୍ଷେତ୍ରରେ ବି. ସି. ଦାସ ଆସନ୍ତି ଭିଜିଲାନ୍ସ କମିଶନର । ସେ କାହାରିକୁ ଧରି ଛୁଆଁ ଦିଅନ୍ତି ନାହିଁ । ଇମିତି ବେଶ ଭଦ୍ର, ବିନୟୀ, ମେଳାପୀ, ବନ୍ଧୁବତ୍ସଳ କିନ୍ତୁ ନିଜର କର୍ମ କ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ଶାଣିତ ଖଡ୍ଗ । ଅନେକ ପ୍ରତିଷ୍ଠିତ ବ୍ୟକ୍ତି ସେଇଯୋଗୁଁ ତାଙ୍କ ଉପରେ କ୍ଷୁବ୍ଧ ହେବାର କଥା । ଲୋକଟା କିଛି ଶୁଣିବାକୁ ନାରାଜ । କାହାରି କଥା ମଧ୍ୟ ନୁହେଁ । ଇମିତି ଅଫିସର ବା କମିଶନର ଥାଇ ଆମର ଲାଭ କଣ ? ଓଡ଼ିଶା ବିଧାନ ସଭାର ଅଧିବେଶନ ବସିଛି । ଜଣେ ପ୍ରତିଷ୍ଠିତ ସଭ୍ୟ ଅଭିଯୋଗ କଲେ ଯେ ଭିଜିଲାନ୍ସ କମିଶନର କିଛି କାମର ନୁହନ୍ତି । ତାଙ୍କୁ ପୋଷିବା ଏକ ଧଳା ହାତୀ ପୋଷିଲା ଭଳି । ବିଧାନ ସଭାରେ କହିବାର ସ୍ୱାଧୀନତା ସବୁ ସଭ୍ୟଙ୍କର । ଯାହା ବିରୁଦ୍ଧରେ ଅଭିଯୋଗ ହେବ ତା'ର ରକ୍ଷାକର୍ତ୍ତା କିଏ ? ବି.ସି. ଦାସ ଗୋଟିଏ ଦିନ ବି ଅପେକ୍ଷା କରିନାହାନ୍ତି । ତା'ପର ଦିନ ଯେତେବେଳେ ସରକାରଙ୍କ ତରଫରୁ ତାଙ୍କୁ ଡିଫେନ୍ସ ମିଳିଲା ନାହିଁ, ସେ ତାଙ୍କ ହାତରେ ଥିବା ଶେଷ ଅସ୍ତ୍ର ପ୍ରୟୋଗ କଲେ । ସରକାରଙ୍କ ହାତରେ ତାଙ୍କର ଇସ୍ତଫାପତ୍ର । ସମସ୍ତେ ସ୍ତବ୍ଧ । କିନ୍ତୁ ବି. ସି. ଦାସ ନଇଁବାର କି ଫେରିବାର ଲୋକ ନୁହନ୍ତି । ଶାସନ କଳରେ ଏ ଭଳି ଦୃଷ୍ଟାନ୍ତ ବିରଳ

ଏବଂ ଆଜିକାଲି ତାଙ୍କୁ ବିଶ୍ୱାସ କରିବା କଠିନ । କିଣ ହେଲେ ବା କିଣ କଲେ ଚାକିରି ଛୁଟିବ ନାଏ ? ନିକଟ ଅତୀତର ଦୃଷ୍ଟାନ୍ତ ତାର ପ୍ରମାଣ ।

ବି. ସି. ଦାସ ଚାକିରିରୁ ଅବସର ନେଲାପରେ ତିନି ବର୍ଷ ପାଇଁ (୧୯୭୦ରୁ ୧୯୭୩) ହାଇକୋର୍ଟର ବିଚାରପତି ହୋଇଛନ୍ତି । ତୃତୀୟ ଏବଂ ଚତୁର୍ଥ ଦରମା କମିଶନର ଚେୟାରମ୍ୟାନ, ଦରମା ସମୀକରଣ କମିଶନର ଚେୟାରମ୍ୟାନ, ବାଧ୍ୟତାମୂଳକ ଅବସର ଗ୍ରହଣ ଯୋଜନା ସମୀକ୍ଷା କମିଟିର ଚେୟାରମ୍ୟାନ ହୋଇଛନ୍ତି ଏବଂ ସବୁଥିରେ ତାଙ୍କର ନିରପେକ୍ଷତା ଏବଂ ନିର୍ଭୀକତାର ଆଲେଖ୍ୟ ରହିଯାଇଛନ୍ତି । ୧୯୮୮ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ତଦନ୍ତ କମିଶନର ଚେୟାରମ୍ୟାନ ଥିଲେ । ପାରିଶ୍ରମିକ ମିଳିଥିଲା ଏବଂ ବିନୀତ ସହକାରେ ଚେକ୍‌ଟି ଫେରାଇ ଦେଇଥିଲେ ସେ । ଚାନସେଲରଙ୍କୁ ମନେ ପକାଇ ଦେଇଥିଲେ ଯେ ସେ ବିନା ପାରିଶ୍ରମିକରେ ହିଁ ଏହି ଦାୟିତ୍ୱ ନେବାକୁ ସମ୍ମତି ଦେଇଥିଲେ ।

କୁଆଡ଼େ ଯାଆନ୍ତି ନାହିଁ । ଏପରିକି ରାଜ୍ୟପାଳଙ୍କ ପାଖକୁ । ମୁଁ ଦେଖିଛି ଓଡ଼ିଶାର ରାଜ୍ୟପାଳ ଆକବର ଅଲି ଖାଙ୍କୁ ତାଙ୍କ ଘରେ ଅନେକବାର । ବନ୍ଧୁତା ଏବଂ ସମ୍ମାନ ସରକାରୀ ପ୍ରୋଟୋକଲକୁ ମାନିନାହିଁ । ଅବଶ୍ୟ ସେମିତି ମଣିଷ ଯେମିତି ମିଳିବେ ନାହିଁ, ସେମିତି ଗଭର୍ଣ୍ଣର ବି ମିଳିବା କଠିନ । କିନ୍ତୁ ବି. ଜେ. ବି. କଲେଜର ତତ୍କାଳୀନ ଅଧ୍ୟାପକମାନେ ନିଶ୍ଚୟ ମନେ ରଖିଥିବେ ଯେ ବି. ସି. ଦାସ. କାହାକୁ ଛାଡ଼ିବାର ଲୋକ ନୁହନ୍ତି, ନିଜର କନ୍ୟାକୁ ମଧ୍ୟ ନୁହେଁ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ସେ ପଡ଼ୋଶୀ । ତାଙ୍କର ବନ୍ଧୁ ବାନ୍ଧବ ମଧ୍ୟ । କିନ୍ତୁ ବି. ସି. ଦାସ ତା'ର କୌଣସି ଅପବ୍ୟବହାର କରିବାକୁ କଦାପି ଚାହିଁ ନାହାନ୍ତି । ଭାବି ମଧ୍ୟ ନାହାନ୍ତି ।

ଏମିତି ମଣିଷଟି ଆଜି ହଜିଗଲା । ତାଙ୍କୁ କିନ୍ତୁ ହେଜିବାକୁ ହେବ । ମୂଲ୍ୟବୋଧର ଗଭୀର ଅବକ୍ଷୟ ଭିତରେ ବି. ସି. ଦାସ ଏକ ବର୍ତ୍ତିକା, ଗଭୀର ଘନ ଅନ୍ଧକାର ଭିତରେ । ଚମଡ଼ା ବା ଚାକିରି ବଞ୍ଚାଇ ରଖିବା ପାଇଁ, ପ୍ରାଣ ବା ବିବେକର ବଳି ଯେଉଁଠି ସାଫଲ୍ୟର ମାପକାଠି ସେଇ ଭିତରେ ସେ ବ୍ୟତିକ୍ରମ, ଏକ ଭୟାନକ ବ୍ୟତିକ୍ରମ । ଇତିହାସ ପୃଷ୍ଠାରେ ସେ ଆଜି ହଜିଯାଇ ପାରନ୍ତି, କିନ୍ତୁ ସବୁଦିନ ପାଇଁ ନୁହେଁ ।



# 'ହଜାର ବର୍ଷର ରାଜା' ଆଉ ନାହାନ୍ତି

ବୟସ ଅତିକ୍ରାନ୍ତ ହୋଇଛି । କିନ୍ତୁ ମନ ରହିଛି ସେହିପରି ସବୁଜ, ତରୁଣ । କଟକ ନଗର । ତା'ର ସହସ୍ର ବର୍ଷ ପାଳିତ ହେଉଛି । ବୈଷ୍ଣବ ମହାପାତ୍ର ଖୋଦ୍ କଟକୀ । ତାଙ୍କର ସହରର ସହସ୍ର ବର୍ଷ ପୂର୍ତ୍ତି ପାଳିତ ହେଉଛି, ଆଉ ସେ ରହିଯିବେ ସେଥିରୁ ବାଦ୍ ପଡ଼ି । ଅସମ୍ଭବ । ଦେଖାଗଲା, ବୃଦ୍ଧ ବୈଷ୍ଣବ ମହାପାତ୍ର ବୀର ଦର୍ପରେ ରଙ୍ଗମଞ୍ଚରେ ଅବତୀର୍ଣ୍ଣ 'ରାଜାର' ଭୂମିକାରେ । ଏହି ରାଜା, କଟକ ସହର ପ୍ରତିଷ୍ଠା କରିଥିଲେ । ତା'ପରେ ଯାହା ଘଟିଛି ତା' ହେଉଛି ଇତିହାସ । ସେଇ ଇତିହାସର ଏକ ଅଙ୍ଗ ହେଉଛନ୍ତି ବୈଷ୍ଣବ ମହାପାତ୍ର । ବୈଷ୍ଣବବାବୁଙ୍କର ସତେ ଯେପରି ଯୌବନ ଫେରି ଆସିଛି । ଇମିତି ତ ତାଙ୍କୁ ଜରା ଛୁଇଁନଥିଲା । ସେ ଥିଲେ ଦୁର୍ବିନୀତ, ଉତ୍ଫୁଲ୍ଲ, ଚିର ହାସ୍ୟମୟ । ଡାକ୍ତରଖାନା ଖଟରେ ଶୋଇଛନ୍ତି । ଜୀବନ ଦୀପ ଲିଭିଯିବା ପାଇଁ ଡେରି ନାହିଁ । କ'ଣ ଦରକାର ? ଉତ୍କଣ୍ଠାର ସହିତ ପଚାରିଲେ ବନ୍ଧୁ ଜନର ପରିଚିତ ବନ୍ଧୁ, ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟ ହୃଦୟାନନ୍ଦ ନାୟକ । 'କଫେ ରୁ' ଏକ ମ୍ଳାନ ହାସ୍ୟରେଖା ଉକୁଟି ମିଳାଇଗଲା କଟକୀ ରାଜାଙ୍କ ଓଠ ଉପରେ । ପିଲାଦିନର ସାଥୀ, ସହପାଠୀ, ସହକର୍ମୀ ବ୍ରଜକିଶୋର ସାହୁ ପଚାରିଲେ, ବୈଷ୍ଣବ, 'କ'ଣ ଦରକାର ? ଗୋଟାଏ ସିଗାରେଟ୍'— ଏଇ ଡାକ୍ତରମାନେ ଦେଉ ନାହାନ୍ତି ।' ପୁଣି ସେଇ ମ୍ଳାନ ହାସ୍ୟରେଖା ଉକୁଟି ଲିଭିଯାଉଛି । ମୃତ୍ୟୁ ଆସୁଛି । ଆସୁ । ତାକୁ ଭୟ କାହିଁକି । ରଙ୍ଗମଞ୍ଚ ଉପରେ ତ ବୈଷ୍ଣବ ମହାପାତ୍ରଙ୍କର ଅସଂଖ୍ୟ "ମୃତ୍ୟୁ" ଘଟିଛି । ସେ ମୃତ୍ୟୁ ଆଣିଦେଇଛି ଅସଂଖ୍ୟ ଦର୍ଶକଙ୍କର ଆଖିରେ ଲୁହ । ଆଜି ଜୀବନର ରଙ୍ଗମଞ୍ଚରେ ସେ ମୃତ୍ୟୁ ଆସୁଛି । "ସମଗ୍ର ପୃଥିବୀ ହେଉଛି ଏକ ରଙ୍ଗମଞ୍ଚ । ପୁରୁଷମାନେ ଏଇଠି ଅଭିନେତା, ନାରୀମାନେ ଅଭିନେତ୍ରୀ" । ତେଣୁ ମୃତ୍ୟୁକୁ ଡର କାହିଁକି ? ସେଦିନ ଜାନୁଆରୀ ସାତ ତାରିଖ ଅପରାହ୍ଣରେ ବୈଷ୍ଣବ ମହାପାତ୍ରଙ୍କୁ ଚୌକିରେ ବସାଇ ଭଣ୍ଡାରୀ ପ୍ରସ୍ତୁତ କରୁଥିଲା ଅନ୍ତିମ ଯାତ୍ରା ପାଇଁ । କ୍ଷିଅର କରାଯାଉଛି । ନୂଆ ଲୁଗା ପିନ୍ଧାଇ ଦିଆଗଲା । ପାନ ଖାଇବାକୁ ପାଟିରେ ପାନ ଖଣ୍ଡିଏ ଦିଆଗଲା । ମୃତ୍ୟୁର ତ କୌଣସି ଲକ୍ଷଣ ନାହିଁ । ଭ୍ରମ ସୃଷ୍ଟି ହେଉଛି । ବୈଷ୍ଣବ ବାବୁ ଆଉ ଫେରିବେ ନାହିଁ । କଟକ ସହରର ରଙ୍ଗମଞ୍ଚ ଦରିଦ୍ର ହୋଇଯିବ । ଆଉ ତାଙ୍କର ଉଦାତ୍ତ କଣ୍ଠସ୍ୱର ଶୁଭିବ ନାହିଁ । ମନେ ପଡ଼ୁଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ଦରବାର । ସବ୍-ଡେପୁଟି ମାଜିଷ୍ଟ୍ରେଟ ବୈଷ୍ଣବ ମହାପାତ୍ର ହାଜର ସେଇଠି, କ'ଣ ଏକ ସରକାରୀ କାର୍ଯ୍ୟରେ । ନଜର

ପରିଚୟ ଦେବାକୁ ଯାଇ ବୈଷ୍ଣବ ବାବୁ କହିଲେ,ଆଜ୍ଞା !'ମୁଁ ବୈଷ୍ଣବ ଚରଣ ମହାପାତ୍ର.... ପାଟିରୁ କଥା ସରିନାହିଁ । ସେପଟରୁ ବୀରେନ୍ ମିତ୍ରଙ୍କ କଣ୍ଠରୁ ଗର୍ଜନ ଶୁଭିଲା, "ଆବେ, ତୁ କେଉଁଦିନ ବୈଷ୍ଣବ ମହାପାତ୍ର ହେଲୁ ।" ବୈଷ୍ଣବ ବାବୁଙ୍କୁ ଚମକ ଲାଗିଲା । କ'ଣ ହେଲା ? ମୁଖ୍ୟମନ୍ତ୍ରୀ ଉତ୍କ୍ଷିପ୍ତ କାହିଁକି ? "ଆବେ, ତୁ ତ ଶ୍ୟାମ, ଶ୍ୟାମ ଭୂମିକାରେ ଅଭିନୟ କରୁଥିଲୁ, ବୈଷ୍ଣବ ହେଲୁ କେବେଠାରୁ ?" ବୈଷ୍ଣବ ବାବୁଙ୍କର ଶ୍ୟାମ ଭୂମିକାରେ ଅଭିନୟ କଟକ ସହରରେ ଖୁବ୍ ଜନପ୍ରିୟ ହୋଇଥାଏ । ଦରବାରରେ ହାସ୍ୟରୋଳ ଖେଳିଗଲା ।

ବୈଷ୍ଣବ ବାବୁ ସରକାରୀ ଚାକିରି କରିଥିଲେ । ଡେପୁଟି ମାଜିଷ୍ଟ୍ରେଟ ପଦବୀରୁ ଅବସର ଗ୍ରହଣ କରିଥିଲେ । ସେଇଟା ଥିଲା ତାଙ୍କର ପେଷା । କିନ୍ତୁ ନିଶା ଥିଲା ଅଭିନୟ । ସରକାରୀ ଦପ୍ତରରେ ତାଙ୍କର କଟକୀ ଭାଷାର ନିଖୁଣ ବକ୍ତବ୍ୟ ରେକର୍ଡ଼ ହୋଇ ରହିଛି । ବୈଷ୍ଣବବାବୁ ଥିଲେ ହାମ୍ କଟକୀ ।

ସେଇ ବୈଷ୍ଣବ ମହାପାତ୍ର ଆଉ ନାହାନ୍ତି । କିନ୍ତୁ ସେ ଛାଡ଼ି ଯାଇଛନ୍ତି ଏକ ବିରାଟ ଐତିହ୍ୟ, ପରମ୍ପରା, ତାଙ୍କର ପ୍ରିୟ ସହର ପର ।



# ବେହେଲାର ଶେଷ ସୁର

ଭୁବନେଶ୍ୱର ମିଶ୍ର ଆଉ ନାହାନ୍ତି । ଗଲା କେତେଦିନ ଧରି ସେ ଅସୁସ୍ଥ ଥିଲେ । କିନ୍ତୁ ହଠାତ୍ ଭାୟୋଲିନ୍‌ର ଶେଷ ତାରଟି କ'ଣ ଛିଡ଼ିଯିବ ଏକଥା କିଏ ଜାଣିଥିଲା ? ନୃତ୍ୟର ଛନ୍ଦ କହିଲେ କେଳୁଚରଣ, ବଂଶୀର ସୁର କହିଲେ ହରିପ୍ରସାଦ, ଠିକ୍ ସେମିତି ବେହେଲାର ତାର କହିଲେ ଭୁବନେଶ୍ୱର ମିଶ୍ରଙ୍କୁ ହିଁ ବୁଝାଏ । ବେହେଲାର ସେଇ ରାଗିଣୀ ଆଉ ବାଜିବ ନାହିଁ, ତୋଳିବ ନାହିଁ ହୃଦୟରେ ସ୍ପନ୍ଦନ, ଆଣିଦେବ ନାହିଁ ଆଖିରେ ଲୁହ । ଭୁବନେଶ୍ୱର ମିଶ୍ର ଥିଲେ ନିଚ୍ଛକ ଶିଳ୍ପୀଟିଏ । ଶିଳ୍ପୀର ଘାତ ପ୍ରତିଘାତ ତାଙ୍କ ଭିତରେ ପ୍ରକାଶିତ । ଲମ୍ବା ଚଉଡ଼ା ଗୌରବର୍ଣ୍ଣ ମଣିଷ । ହସ ହସ ମୁହଁ । ଅହମିକା, ଗର୍ବ ନାହିଁ ବରଂ ଭରି ରହିଛି ବିନମ୍ରତା । ତାଙ୍କୁ ଦେଖି ଆସିଛି ଅନେକଦିନରୁ । କଳା ପାକଳ ହୋଇଛି, ବେହେଲା ବୋଲ ମାନିଛି । ପଣ୍ଡିତ ଭୁବନେଶ୍ୱର ମିଶ୍ର ଅଧିକରୁ ଅଧିକ ସାଫଲ୍ୟ ଅର୍ଜନ କରିଛନ୍ତି । ଦେଶ ବିଦେଶରେ ଖ୍ୟାତିଲାଭ କରିଛନ୍ତି । ଓଡ଼ିଶା ପାଇଁ ଆଣିଛନ୍ତି ସୁନାମ । ଏବଂ ପୁଣି ଫେରି ଆସିଛନ୍ତି ଓଡ଼ିଶାକୁ, ଆପଣାର ଜନ୍ମଭୂମିକୁ । ପଚାରିଲେ କହନ୍ତି "ମୁଁ ମୋର ଶକ୍ତି ସଂଗ୍ରହ କରିଛି ଏଇ ମାଟିରୁ । ଏଇ ମାଟିରେ ହିଁ ମୋର ଶେଷ ରାଗିଣୀ ଧ୍ୱନିତ ହେବ ଏଇ ମୋର କାମନା ।

ଭୁବନେଶ୍ୱର ମିଶ୍ର ବନ୍ଧୁବତ୍ସଳ । ରିକ୍‌ସାରେ ଯାଉଥିବେ । କୋଳରେ ରହିଥିବ ତାଙ୍କର ପ୍ରିୟ ଭାୟୋଲିନ୍ । ଆଉ ମୁହଁରେ ଲାଗିଥିବ ସ୍ମିତହାସ୍ୟର ରେଖା । ଅଭିବାଦନ ଗ୍ରହଣ କରୁଥିବେ ଏବଂ ନମସ୍କାର କରୁଥିବେ ବୟସ୍କମାନଙ୍କୁ । ଅନ୍ୟ-ମାନଙ୍କ ଭଳି ଗମ୍ଭୀର ମୁହଁ କରି ବସି ନଥିବେ ।

ତାଙ୍କର ପ୍ରିୟ ଯନ୍ତ୍ର ବେହେଲା ପୋଷା ମାନିଥିଲା ପିଲାଦିନରୁ । ବାପା କବିରାଜ ଅନନ୍ତ ମିଶ୍ର ପାରଳାଖେମଣ୍ଡିର । କିନ୍ତୁ କବିରାଜ ପାଇଁ ଚାଲିଯାଇଥିଲେ ମାଡ୍ରାଜ ସହରକୁ । ସେଇ ସହରରେ ତତ୍‌କାଳୀନ ପ୍ରସିଦ୍ଧ ବେହେଲା ବାଦକ ଅନନ୍ତ କୃଷ୍ଣନଙ୍କ ପାଖରେ କିଶୋର ଭୁବନେଶ୍ୱର ମିଶ୍ର ଶିକ୍ଷାଲାଭ କରନ୍ତି । ବେହେଲାରେ ଆଙ୍ଗୁଠି ଚାଳନା ଧୀରେ ଧୀରେ ପାକଳ ହୁଏ । ଭୁବନେଶ୍ୱର ମିଶ୍ରଙ୍କର ପାଠପଢ଼ା ମାଟ୍ରିକରେ ଶେଷ ହୋଇଯାଏ । କିନ୍ତୁ ଜିଜ୍ଞାସା ଥିଲା ପ୍ରଚୁର । ସବୁବେଳେ ବହିଟିଏ ଧରିଥାଆନ୍ତି ହାତରେ । ଟ୍ରେନ୍‌ରେ ଗଲାବେଳେ ବି ପଢ଼ନ୍ତି । ସେଇଯୋଗୁଁ ଓଡ଼ିଆ ଓ ଇଂରାଜୀରେ ତାଙ୍କର ବ୍ୟୁତ୍ପତ୍ତିର ଅଭାବ ନଥିଲା ।

ଯିବାବେଳକୁ ବୟସ ହୋଇଥିଲା ପ୍ରାୟ ୭୨ ବର୍ଷ । କିନ୍ତୁ ଉଜ୍ଜ୍ୱଳବର୍ଣ୍ଣ ଭୁବନେଶ୍ୱରଙ୍କୁ ଦେଖିଲେ ଜଣାପଡ଼େ ନାହିଁ ବୟସ । କଟକରେ ଆକାଶବାଣୀ ଗଢ଼ା ହେଲାପରେ ସେ ଯୋଗ ଦିଅନ୍ତି ସେଥିରେ । ଓଡ଼ିଶୀ ନୃତ୍ୟକୁ କ୍ଲାସିକାଲ କଳା ଭାବରେ ସ୍ୱୀକୃତ ଆଣିବାପାଇଁ ତାଙ୍କର ଅବଦାନ ମଧ୍ୟ କିଛି କମ ନୁହେଁ । ଆକାଶବାଣୀର ବିବିଧ ଭାରତୀକୁ ସେ ସଂଗଠିତ କରନ୍ତି ଏବଂ ସେଥିରେ ଯୋଗଦେବାପାଇଁ ସେ ବମ୍ବେ ଯାଆନ୍ତି । ଏହି ଅବସରରେ ସେ ସାତ ଆଠଟି ଓଡ଼ିଆ ଚଳଚ୍ଚିତ୍ରର ସଙ୍ଗୀତ ନିର୍ଦ୍ଦେଶନା ମଧ୍ୟ ଦିଅନ୍ତି ।

ତାଙ୍କର ବେହେଲାବାଦନ ଜାଗାଏ ଓ ଅନ୍ତର୍କାଢକ ଶ୍ରୋତା ସୃଷ୍ଟି କରେ । ଶ୍ରୀମା ନିଜେ ଥିଲେ ଜଣେ ପ୍ରସିଦ୍ଧ ପିଆନୋ ବାଦକ । ଭୁବନେଶ୍ୱର ମିଶ୍ର ତାଙ୍କ ପାଇଁ ସ୍ୱତନ୍ତ୍ର ରାଗିଣୀ ସୃଷ୍ଟି କରନ୍ତି ଆପଣାର ବେହେଲାରେ ଏବଂ ଶ୍ରୀମା ତାଙ୍କୁ ନାମିତ କରନ୍ତି ଶ୍ରୀ କୁମାର ନାମରେ ।

ଭୁବନେଶ୍ୱର ମିଶ୍ରଙ୍କର ପରଲୋକ ସମ୍ବାଦ ହଠାତ୍ । ମନେ ହେଲା ଯେମିତି ବେହେଲା ବାଜୁ ବାଜୁ ହଠାତ୍ ତାରଟିଏ ଛିଡ଼ି ଯାଇଛି ଏବଂ ସୁର ହୋଇ ଯାଇଛି ବେସୁରା ।

କିନ୍ତୁ ଏଇ ବେହେଲାର ପ୍ରତିଧ୍ୱନି ଶୁଭିବ ବହୁକାଳ ଧରି କଳା ଜଗତରେ ଏବଂ ତାହାହିଁ ଅମର କରି ରଖିବ ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କୁ କାଳର ବିଶାଳ ବକ୍ଷରେ ।



# ପରଷୁଣିର ଅମୃତ ସ୍ପର୍ଶରେ

ମରଣ ବି ଇମିତି ଆସେ । ମହାବୀରଙ୍କୁ ନେବା ପାଇଁ ମରଣଙ୍କୁ ବି ଆସିବାକୁ ପଡ଼ିବ ଅଚାନକ, ହଠାତ୍ । ମହାବୀର ଜୀବନରେ କାହାକୁ ନାହିଁ କରି ନାହାନ୍ତି । ଅନେକ ପ୍ରକାର ବ୍ୟବସାୟରେ ସେ ହାତ ଦେଇଥିଲେ ଏବଂ ସବୁଥିରେ ସାଫଲ୍ୟ ମଧ୍ୟ ଲାଭ କରିଥିଲେ । ଲୁଗା ଦୋକାନ, ଖବରକାଗଜ, ବିଭିନ୍ନ ବିଭବ । କିନ୍ତୁ ନାଁ କରିଥିଲେ ଖାଇବାକୁ ଦେବାରେ, ଖାଇବାର ଆୟୋଜନରେ । ସେଇଟା ଖାଲି ତାଙ୍କର ବ୍ୟବସାୟ ନଥିଲା, ସେଥିରୁ ସେ ପାଉଥିଲେ ତୃପ୍ତି, ବଢ଼ିଆ ଖାଇବା ହୋଇଛି ଏଇ ସାର୍ଟିଫିକେଟ ପାଇବାରେ ତୃପ୍ତି । ସେଇଯୋଗୁଁ ବନ୍ଦ, ସ୍ଲେଟ, ଝଡ଼, ବର୍ଷା, ଶୀତତାପ ନିୟନ୍ତ୍ରିତ ଘରଠୁ ବାରବାଟୀ ଷ୍ଟାଡ଼ିୟମ ପଡ଼ିଆ ସବୁଠି ତାଙ୍କ ସାଙ୍ଗରେ ଦେଖାହୁଏ । ଏକ ପ୍ରାଣ ଖୋଲି ମହକିଆ ହସରେ ସେ ସ୍ୱାଗତ କରନ୍ତି ଯେପରି ଆପଣାର ଲୋକ । ଆଉ ଅନେକ ସମୟରେ ହାତରେ ପ୍ଲେଟଧରି ସେ ବଳାଇ ଖୁଆନ୍ତି । ବହୁ ଲୋକଙ୍କ ସହିତ ତାଙ୍କର ପରିଚିତ, ପ୍ରତିଷ୍ଠିତ ପୁଣି ସାଧାରଣ । ଟୁନା ନାମରେ ହିଁ ସେ ପରିଚିତ । ଅନେକ ଲୋକଙ୍କର ଏକ ପ୍ରକାର ଗଭୀର ବିଶ୍ୱାସ ବା ପତିଆରା ତାଙ୍କ ଉପରେ । ତାଙ୍କ ଉପରେ ଅର୍ପିଦେଲେ ନିଶ୍ଚିନ୍ତ । ଏଇ ହେଉଛନ୍ତି ସେଇ ମଣିଷ ଯାହାକୁ ଭେଟ ମିଳେ ଜନ୍ମ ଦିବସ ଉତ୍ସବରେ, ବ୍ରତ ଘରେ, ବିବାହ ଉତ୍ସବରେ ଏବଂ ପୁଣି ଶୁଦ୍ଧିକ୍ରିୟାରେ । ଫ୍ରମ ଉମ୍ବ ଟୁ ଦି ଟୁମ୍ବ । ମୋ ଝିଅ ପ୍ରଜ୍ଞାର ବିବାହ ହେବ । ଡାକିବାକୁ ପଡ଼ିବ ବହୁତ ଲୋକଙ୍କୁ । ପାଖରେ ପଇସା ନାହିଁ; କିନ୍ତୁ ଟୁନାବାବୁ ଅଛନ୍ତି । କି ଦମ୍ଭିଲି ଉକ୍ତ । ମୁଁ ତ ଅଛୁ । ଆମ ଝିଅ ବାହା ହେବ । ମୁଁ ବୁଝିବି । ସେ ସବୁ ବୁଝିଥିଲେ । କେତେ ପଇସା, କେବେ କିମିତି ନେଇଥିଲେ ମନେ ପଡ଼ିଲେ ଆଖିରେ ଲୁହ ଜମି ଆସେ । ମନକୁ ରୁନ୍ଧି ଦିଏ ଭାବନା । ଦେଖିଛି ତାଙ୍କୁ ନାସନାଲ ଗେମସ୍‌ରେ । ଭୈରବବାବୁ ନାହାନ୍ତି । ଦେଖିଛି ତାଙ୍କୁ କେତେ ବିବାହ, ବ୍ରତ ଉତ୍ସବରେ । ସେଇ ହସ, କ୍ଳାନ୍ତି ନାହିଁ । ଦିନ ରାତି, ଝଡ଼, ବର୍ଷା କିଛି ମାନନ୍ତି ନାହିଁ । କଥା ଦେଇଛି, ଦାୟିତ୍ୱ ନେଇଛି । ଖାଲି କଣ ଟଙ୍କାରେ ସବୁ ମୂଲ ହେବ ଜୀବନରେ ? ସେଇ ଯୋଗୁଁ ଟୁନାବାବୁ ଏକ ପ୍ରତୀକ ପାଲଟିଥିଲେ । 'ସମାଜ' ପରିବାରଭୁକ୍ତ ସଭ୍ୟ ଥିଲେ ସେ । ରାଧାନାଥବାବୁ କହୁଛନ୍ତି, ସେଇ ଯଥେଷ୍ଟ, ମେନୁ ଦରକାର ନାହିଁ । କେମିତି ଲୋକଙ୍କୁ ଡକା ହୋଇଛି ସେତିକି ଜାଣିଲେ ଯଥେଷ୍ଟ । ୟୁରୋପୀୟଙ୍କ ପାଇଁ କିମିତି ମେନୁ ହେବ, କିମିତି ହେବ ଦିଲ୍ଲୀର ନିରାମିଷାଶୀମାନଙ୍କ

ପାଇଁ ସେସବୁକୁ ସେ ଦୋରସ୍ତ କରି ନେଇଥିଲେ । ଡକ୍ଟର ସଦାଶିବ ମିଶ୍ର ମସଲା, ଘିଅ, ଚାଉଳ ଜାତୀୟ ଖାଆନ୍ତି ନାହିଁ । ତେଣୁ ସେ ପଚାରିନେବେ ଆଗରୁ ଯାଉ ଆସିବେ କି ? ତାଙ୍କ ପାଇଁ ସ୍ୱତନ୍ତ୍ର ଷ୍ଟୁ ତିଆରି କରି ରଖିଥିବେ ଚୁନାବାବୁ । ପ୍ରତ୍ୟେକ କଥାରେ ଏକ ପର୍ସନାଲ ଟଚ୍ ତାଙ୍କର ସ୍ୱାତନ୍ତ୍ର୍ୟ । ସେ ଆଉ ନାହାନ୍ତି । ଇମିତି କଣ ମୃତ୍ୟୁ ଆସେ ? ନ ଆସିବ ବା କାହିଁକି ? ଆମକୁ ସିନା ବାଧୁଛି । କିନ୍ତୁ କି ରାଜକୀୟ ମୃତ୍ୟୁ । ରୋଗ ନାହିଁ, କଷ୍ଟ ନାହିଁ । ମର୍ଣ୍ଣିଂଓ୍ୱାର୍କ ସାରିଛି । ଇଷ୍ଟଦେବ ମହାବୀରଙ୍କ ଦର୍ଶନ ବି ସାରିଛି । ପୁଅ, ବୋହୂ, ସ୍ତ୍ରୀ ସମସ୍ତେ ଅଛନ୍ତି । ବେଶି ଟିକିଏ ଯନ୍ତ୍ରଣା । ଆଉ ତା'ପରେ ଛୁଟି । କେତେ ବାହାଘର, ଜନ୍ମଦିନ, ବ୍ରତଘର ଅର୍ଡ଼ର ନେଇଛନ୍ତି । ଯେହେତୁ ଜୀବନରେ ସେ କେବେ ନାହିଁ କରି ନାହାନ୍ତି ସେଇଯୋଗୁଁ ଆଜି ଚକୁ ତାକୁ ପୂରଣ କରିବାକୁ ବାକି । ଚୁନାବାବୁ ନାହାନ୍ତି । ଚକୁ ଅଛି ସେଇ ସମ୍ଭାଳିବ ଏଣିକି ବାହାବ୍ରତ ଶୁଦ୍ଧି କିମ୍ବା କଥା । କିନ୍ତୁ ସେ ହସ, ସେ ଦମ୍ଫିଲ ହସ, ସେଇ ଲମ୍ବା ମଣିଷ ମିଳିବ କେଉଁଠୁ ? ମହାବୀର (ଚୁନା) ସାହୁ ନାହାନ୍ତି । କିନ୍ତୁ ସେ ତ ସ୍ମୃତି ହୋଇ ରହିବେ ତାଙ୍କର ଅଗଣିତ ବନ୍ଧୁମାନଙ୍କ ପାଖରେ । ସବୁ କାର୍ଯ୍ୟକ୍ରମରେ ତାଙ୍କର ଛାଇ ଠିଆ ହେବ ଚକୁ ପାଖରେ ।



# ବିଦ୍ରୋହୀ ରଣକ୍ଲାନ୍ତ

ମୁରାରି ମୋହନ ଜେନାଙ୍କର ବୟସ ବାହୁଡ଼ିଲା ବେଳକୁ ହୋଇଥିଲା ବାଷଠି ବର୍ଷ । ପିଲାଦିନୁଁ ବିଦ୍ରୋହ ତାଙ୍କର ମୁଣ୍ଡରେ ବସା ବାନ୍ଧିଥିଲା । ମୃତ୍ୟୁ ପର୍ଯ୍ୟନ୍ତ ତା'ହା ଓହ୍ଲାଇ ନାହିଁ । ଏଷ୍ଟାବ୍ଲିସମେଣ୍ଟ, ପ୍ରତିଷ୍ଠିତ ସତ୍ତାର ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବା ତାଙ୍କର ଧର୍ମ ପାଲଟିଥିଲା । ମୁଁ ତାଙ୍କୁ ସ୍କୁଲରେ ପଢ଼ିବା ବେଳରୁ ଦେଖିଆସିଛି । ଚଳଚ୍ଚିତ୍ର ଜଗତର ଧୀର ବିଶ୍ୱାଳ, ସଙ୍ଗୀତଜ୍ଞ ଅଗଣି ପୃଷ୍ଟି, ସମାଜସେବୀ କର୍ପୂର ଚରଣ ପଣ୍ଡା ପ୍ରଭୃତିଙ୍କର ସେ ସମସାମୟିକ ବନ୍ଧୁ । ପିଲାଦିନେ ବାମପନ୍ଥୀ ଛାତ୍ର ଆନ୍ଦୋଳନର ଅନ୍ତର୍ଭୁକ୍ତ ଥିଲେ । ପ୍ରସିଦ୍ଧ ଇଂରାଜୀ ସମାଲୋଚକ କ୍ରିଷ୍ଟୋଫର କଡ୍‌ୱେଲଙ୍କର ଏକ ସମାଲୋଚନା ପୁସ୍ତକ 'ଇଲ୍ୟୁଜନ ଏଣ୍ଡ୍ ରିଏଲିଟି' ସଦ୍ୟ ପ୍ରକାଶିତ ହୋଇ ଚହଳ ସୃଷ୍ଟି କରିଥାଏ । ଭାରି କଠିନ ଭାଷା । ତରୁଣ ଲେଖକ ଅନେକ ଚିନ୍ତାକୁ ଏକାଠି ଭର୍ତ୍ତିକରି ଖୁବ୍ କ୍ଲିଷ୍ଟ କରିଥାନ୍ତି ବହିଟିକୁ । ସମ୍ଭବ ସେମିନାରୀର ଛାତ୍ର ମୁରାରି ଜେନା ଯାଇ ପହଞ୍ଚିଲେ ପ୍ରସିଦ୍ଧ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ପାଖରେ ବହିଟିକୁ ମାଗିବା ପାଇଁ । ପିଲାଟିର ଆଗ୍ରହ ଦେଖି କାଳିନ୍ଦୀ ବାବୁ ବହିଟିକୁ ଦେଲେ ଏବଂ ପଚାରିଲେ 'କଣ ପଢ଼ୁଛ ? ସ୍କୁଲର ଛାତ୍ର ଜାଣି ବିନମ୍ର କାଳିନ୍ଦୀ ବାବୁ କହିଲେ, ଭାରି କଠିନ ଭାଷା, ତା'ଠାରୁ କଠିନ ଚିନ୍ତା । ମୁଁ ତ ସବୁ ବୁଝି ପାରି ନାହିଁ । ତମେ ବୁଝି ପାରିବ ତ ? ''ଆପଣ ତ ପୁରା ବୁଝି ନାହାନ୍ତି ବୋଲି କହିଲେ, ମୁଁ ବି ପୁରା ବୁଝି ହୁଏତ ପାରିବି ନାହିଁ । ତା' ହେଲେ ଆପଣ ଓ ମୋ ଭିତରେ କଣ ପାର୍ଥକ୍ୟ ।

ମୁରାରି ମୋହନଙ୍କର କାବ୍ୟିକ ପ୍ରତିଭା ପିଲାଦିନରୁ ଜଣା ପଡ଼ୁଥିଲା । କିନ୍ତୁ ତାଙ୍କର ବଂଶୀ ପିଲାଦିନରୁ ହିଁ ବେସୁରା ବାଜିବାକୁ ଆରମ୍ଭ କରିଥିଲା । 'ଭଗବାନ' ତୁମକୁ ମୁଁ ଠିଆ ଫାଡ଼ି ଦେବି' କବିତା ତାହାର ଏକ ଉଦାହରଣ । ଏହା ପୂର୍ବରୁ ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଭଗବାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । କିନ୍ତୁ ତାହାର ପ୍ରକାଶନର ଭଙ୍ଗୀ ଥିଲା ମୁଲାଏମ୍ । ମୁରାରି ମୋହନଙ୍କୁ ମୁଲାଏମ୍ କଣ ଜଣା ନଥିଲା ? ନା ଯାହା ଉଚିତ ଭାବୁଥିଲେ, ତାହା ସେହି ଭାବନାର ଭଙ୍ଗୀରେ ହିଁ ପ୍ରକାଶ କରୁଥିଲେ । ପ୍ରତିବାଦ କରିବାର କଥା ତ ପ୍ରତିବାଦର ଭାଷାରେ ହିଁ କରି । ତାକୁ ତଥାକଥିତ ଶାଳୀନତା, ସୌନ୍ଦର୍ଯ୍ୟ, ଭଦ୍ରାମିର ଆବରଣରେ ଢାଙ୍କି ଲାଭ କଣ ? ଦାନ୍ତ କାମୁଡ଼ା ହେବା ଦରକାର । ତଥାକଥିତ ଭଦ୍ରାମିର ଭାଷା ହେଉଛି

ପ୍ରତାରଣା ବା ହିପୋକ୍ରାସି । ମୁରଲି, ତମେ, କାନ୍ତିମୂଳକ ହୋଇଯାଅ ନାହିଁ, ତମେ ଡ୍ରେନ ଇନସ୍‌ପେକ୍ଟର ହୋଇଯାଉ ନାହିଁ ? ବନ୍ଧୁ ହିସାବରେ ଏଇଭଳି ପ୍ରଶ୍ନର ଉତ୍ତରରେ ମୁରଲି ହସନ୍ତି ଏବଂ ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ କହନ୍ତି । ରାସ୍ତାରେ, ଘରେ, ସମାଜରେ ପଡ଼ିଥିବା ମଇଳାକୁ ସଫା କରିବା ଏକ ଆନ୍ତିମୂଳକ କାର୍ଯ୍ୟ, କାନ୍ତିମୂଳକ ନୁହେଁ ଏବଂ ମୁଁ, ମୁରଲି ମୋହନ, ସତ୍ୟଙ୍କୁ, ଅସନାକୁ ସେଇ ରୂପରେ ପ୍ରକାଶ କରେ । ଭାଷାର ଛଇଳ ମୋତେ ମାଲୁମ ନାହିଁ ।

ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ଜୟନ୍ତୀ ପାଳିତ ହୁଏ । ସ୍ତାବକମାନେ ଏହା କରୁଥିବା ଦେଖି ଏବଂ ସମସ୍ତ ସମୟରେ ଜୟନ୍ତୀ ଯାହା ପାଇଁ ସେ ନିଜେ "ଜୟନ୍ତୀ"ର ସବୁ ଆୟୋଜନ କରୁଥିବା ଦେଖି ଆରମ୍ଭ କଲେ ଏକ ଅନୁଷ୍ଠାନ । ଆତ୍ମପୂଜା କରିବା ହେଲା ଏହାର କାମ । ମୁଁ, ମୁରଲି ଜେନା, ମୋର ଜୟନ୍ତୀ ପାଳିତ ହେବ, ଆପଣ ଆସିବେ, ମୁଁ ଏଥିପାଇଁ ନିବେଦନ କରୁଛି । ଆସିବେ ଏବଂ ମୋର ପ୍ରଶଂସା ଗାଇବେ । ସମାଜ ପ୍ରତି କି ଶାଣିତ, କ୍ରୂର ପରିହାସ ? ଏଥିପାଇଁ କେବଳ ସାହସ ନୁହେଁ, ଦୁଃସାହସ ଆବଶ୍ୟକ । ମୁରଲି ଜେନାଙ୍କର ଶାଣିତ କଣ୍ଠ, ଶାଣିତ କଲମ ଏହା କରି ପାରୁଥିଲା ।

ମୁରଲି ଜେନା ଚାକିରି କଲେ । ଶ୍ରମ ବିଭାଗରେ । ଚାକିରିଟା କେବେ ଚାଲିଯିବ ଏ ଆଶଂକା ସମସ୍ତଙ୍କର ଥିଲା । କିନ୍ତୁ ଚାକିରିର କାଳ କଟିଗଲା । ମୁରଲି ଜେନାଙ୍କ ପାଟିଟା ଖର । କିନ୍ତୁ ହୃଦୟଟା କୋମଳ । କୁହନ୍ତି, ଲେଖନ୍ତି ବେଶ୍ କର୍କଶ କିନ୍ତୁ ବନ୍ଧୁବତ୍ସଳ, ଦରଦୀ ଏବଂ ପ୍ରାଣ ମଧ୍ୟ ଖୁବ୍ ଉଷ୍ମ । କଣ ଆପଣ ଡାକଲେ ନାହିଁ ମୋତେ ? ବୋଧହୁଏ ଭୁଲି ଯାଇଛନ୍ତି । ମୁଁ କିନ୍ତୁ ଆସିଚି । କବିତାଟିଏ ମଧ୍ୟ ଆଣିଚି । ଇମିତି କଥା କହି ଆପଣାର କରିଦେବେ ମୁରଲି ଏବଂ ମନ ନେଇ ଯିବ ତାଙ୍କ ପାଖରେ । ମୋ ଉପରେ ବହି, ଶବେଲ ପୋଏଟ ମୁରଲି ଜେନା, ଏଇ ମୁକ୍ତିବର୍ଷରେ ହିଁ ଉନ୍ମୋଚିତ ହେବ । ଆପଣ ମୋର ପୁରାତନ ବନ୍ଧୁ । ତେଣୁ ମୁଁ ଅନ୍ୟ କୁଆଡ଼କୁ ଯିବି କାହିଁକି ? ମୁରଲି ବନ୍ଧୁମାନଙ୍କ ଉପରେ ଦାବୀ କରି ବସନ୍ତି । ତାଙ୍କ ଉପରେ ଏକ ଲେଖା ପଠାଇଥିଲି । ମୁରଲି ଘରେ ଆସି ପହଞ୍ଚିଲେ । ଘଟଣାଗୁଡ଼ାକ ମନେ ପକାଇ ଦେଲେ ଆପଣ । କିମିତି ମନେ ରହିଲା ଆପଣଙ୍କର ଏତେ ଦିନର କଥା ? ସତରେ ଆପଣ ବନ୍ଧୁ । ଧନ୍ୟବାଦ ନିଅନ୍ତୁ ଏବଂ ଆଜି ରାଉଜଙ୍କ ହାତ ତିଆରି କିଛି ଜିନିଷ ଖିଆଯାଉ । ମୁରଲି ଜେନା ଭିନ୍ନ ସ୍ୱରର ମଣିଷ ।

ସ୍ୱୀକୃତି ମିଳିଛି ଅନେକ ଅନୁଷ୍ଠାନରୁ । କିନ୍ତୁ ଯେତିକି ମିଳିବାର କଥା ତାହା ମିଳିନଥିଲା । ମିଳିବାର ଆବଶ୍ୟକତା ମଧ୍ୟ ନଥିଲା । କାରଣ ଭିନ୍ନ ସ୍ୱର, ଭିନ୍ନ ସ୍ୱାଦର ଏଇ ମଣିଷ ଯଦି ଏଷ୍ଟାବ୍ଲିଶମେଣ୍ଟ ବା ପ୍ରତିଷ୍ଠିତଙ୍କ ହାତରୁ ସ୍ୱୀକୃତି ପାଇଥାନ୍ତା

ତା' ହେଲେ ତାର ସ୍ୱାତନ୍ତ୍ର୍ୟ କଣ ? ଅପ୍ରିୟ, ଅପ୍ରୀତିକର କଥା କହିବାରେ ଧୂରୀଣ ବନ୍ଧୁ ବତ୍ସଳ, ନିର୍ଭୀକ ସ୍ୱଭାବାପନ୍ନ ମୁରାରି ଏକ ଦ୍ୱୈତ ବ୍ୟକ୍ତିତ୍ୱ । ଏବଂ ସେଇଥିପାଇଁ ହିଁ ସେ ବନ୍ଧୁ ଗହଣରେ ସ୍ମୃତ ହୋଇ ରହିବେ ବହୁକାଳ ।

ସମାଜରେ ଯେତେବେଳେ କିଛି ଅସୁନ୍ଦର, ଅଶ୍ଳୀଳ କଥା ଦେଖାଯିବ ସେତେବେଳେ ମୁରାରି ମୋହନ ମନେ ପଡ଼ିବେ । ଯେମିତି ଆଜି 'ନିଆଁ ଖୁଣ୍ଟା' ଓ ଗୋଦାବରୀଶ ମହାପାତ୍ର ମନେ ପଡ଼ନ୍ତି । ଆହା, ସେ ଆସନ୍ତେ କି ? ବହୁ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ । ଉତ୍ତର ଜୀବନରେ ସେ ଆସ୍ତିକ ପାଲଟି ଥିଲେ । କଟକ ରାମଲୀଳା ପ୍ରଚ୍ଛର ସମିତି, ରାମକୃଷ୍ଣ ପ୍ରଚ୍ଛର ପରିଷଦ ପ୍ରଭୃତି ଅନୁଷ୍ଠାନ ମୁରାରିର ଆଲେଖ୍ୟ ବହନ କରିଛନ୍ତି ।

କିନ୍ତୁ ମୁରାରି ଜେନା ଅନନ୍ୟ । ମୁରାରି ଜେନା ସ୍ୱତନ୍ତ୍ର । ମୁରାରି ଜେନା ଭିନ୍ନ ସ୍ୱରର ବଂଶୀ । ସେଇ ସ୍ୱରର ଧ୍ୱନି ଶୁଭିବ ମହାକାଳ ବକ୍ଷରେ ବହୁଯୁଗ ଧରି ।



# ଜନ୍ମିଲେ ମରଣ ସତ୍ୟ

ଜୀବନରେ ହାରିବି ନାହିଁ । ସେଇଯୋଗୁଁ ବାପା ମା ନାଆଁ ଦେଇଥିଲେ ରଣଜିତ୍ । ହାରିତ ନଥିଲି ସତରେ । ପରାକାଷ୍ଠା, ସାଫଲ୍ୟ, ଖ୍ୟାତି ସବୁତ ଜିତିଥିଲି ସଂସାରରେ—ଯାହା ଲୋଡ଼ା ସବୁତ ପାଇଥିଲି । ଧନ ଦୌଲତ, ପରିବାର । ଯିବା ସମସ୍ତ ବି ହୋଇ ନଥିଲା । କେତେ କାମ କଥା ଭାବୁଥିଲେ, କେତେ ଯୋଜନା ଥିଲା ଆଗରେ । କିନ୍ତୁ ହଠାତ୍ ଯେମିତି ସବୁର ଏକ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ସବୁ ରହିଗଲା ପଛରେ । ଆଉ ସେ ?

ଏଇ ଦେଖା ହୋଇଥିଲା ସେ ଦିନ । ଜାଣିଥିଲି ମୃତ୍ୟୁ ଆସୁଛି । ମୃତ୍ୟୁର ଶୀତଳ ପଦଧ୍ୱନି ସେ ଶୁଣିଥିଲି ଠିକ୍ । କିନ୍ତୁ ଜୀବନ ବଡ଼, ମୃତ୍ୟୁ ବଡ଼ ନୁହେଁ । ଜୀବନ ଥିବା ପର୍ଯ୍ୟନ୍ତ ଏଇ ଜୀବନ ହିଁ ସତ୍ୟ । ଆଉ ତା'ପରେ ? ତା'ପର କଥା କିଏ କହିବ ? ଶଙ୍କର, ବୁଦ୍ଧ, ଚୈତନ୍ୟ କେତେ ମହାପୁରୁଷଙ୍କର ପଦଚିହ୍ନ ସେଇ ରାସ୍ତାରେ ଦେଖିବାକୁ ମିଳେ । ମୃତ୍ୟୁ ପରେ କଣ ତା' କିଏ କହିବ ।

ତେଣୁ ଜୀବନକୁ ଉପେକ୍ଷା କରି ମୃତ୍ୟୁକୁ ଆବୋରି ଧରିବାର କୌଣସି କାରଣ ନାହିଁ । ମୁଁ ଡାକ୍ତରଙ୍କୁ କହି ଦେଇଛି । ମୋର ଅବସର ନେବାର ସମୟ ହୋଇନାହିଁ । ବିଶ୍ରାମ କରିବାକୁ ମୋର ବେଳ ନାହିଁ । କର୍ମହିଁ ମୋର ସବୁ । ଏଇ କର୍ମ ହିଁ ମୋ ସାଫଲ୍ୟର ହେତୁ । ମୁଁ ଜୀବନକୁ ଉପଭୋଗ କରିବାକୁ ଚାହେଁ । ମୁଁ ନିଷ୍କାମ ତପସ୍ୟା କରି ଶିଖିନାହିଁ । ତେଣୁ ମୋର ସିଗାରେଟ ଆଉ ମୁଁ ଅଭିନ୍ନ । ଆଉ ପରି-ଶେଷରେ ମୋର ସ୍କଚ । ସେଇଟା ମଧ୍ୟ ମୁଁ ଛାଡ଼ି ପାରିବି ନାହିଁ । ଆଉ ଛାଡ଼ିଲେ କୁଆଡ଼େ ମୁଁ ଅଧିକା ଚାରି ଛ ମାସ ବଞ୍ଚିବି । ଏଇଥି ପାଇଁ ମୁଁ ମୋର ଜୀବନ୍ୟାସକୁ ଭୁଲିବାକୁ ଚାହେଁନା ।

ରଣଜିତ୍, ବୁଢ଼ାଭାଇ କହି ଯାଉଛି ତା'ର କଥା ଆରାମରେ ଚୌକିରେ ବସି । ଆମେ ସବୁ ଘେରି ବସିଛୁ । ସମସ୍ତେ ସଚେତନ ଯେ ଇଏ ଆଉ ବେଶୀ ଦିନ ନୁହନ୍ତି । ସେ କିନ୍ତୁ ବିବ୍ରତ ନୁହେଁ । ମୃତ୍ୟୁ ଆସିବ ତ ଆସୁ । ସେଇଟା ତ ବି ଗୋଟାଏ ଟ୍ରିପ୍ । ଆଉ ହୁଏତ ସର୍ବଶେଷ ଟ୍ରିପ୍, ସେଇ ଯୋଗୁଁ ସେ କହି ଚାଲିଛି ମିସଲରେ ଠିଆ ହୋଇ । କିନ୍ତୁ କାହା ସହିତ ଏଇ ଯୁଦ୍ଧ । ଏହା ନିର୍ଲିପ୍ତତା ନା ବାତୁଳତା ?

ଅସନ୍ତା ସପ୍ତାହରେ ତୋ ଘରକୁ ଖାଇବାକୁ ଯିବି । ତିନୋଟି ଜଣେ ଆଉ ସ୍ଥିତ । କିଏ ଦେଉଛି ? ବୁଢ଼ାଭାଇ କହି ଚାଲିଛି ।

କିନ୍ତୁ ସେ ତ ଆଉ ଖାଇବାକୁ ଆସିବ ନାହିଁ । ତାକୁ ଯେ ନିମନ୍ତ୍ରଣ ଆସିଛି ବହୁତ ଦୂରରୁ । କିଏ ବୁଢ଼ାଭାଇ, ସେଠି କିଏ ଏକ ବିସ୍ମୟ ଭିନରର ନିମନ୍ତ୍ରଣ ? କେବେ ଫେରିବ କହିଲ ଦେଖି ? ନାଁ ସେଠି କୌଣସି ମଣିଷର ଦାସ ପାଇଁ ଜବାବ ସୁଆଲ ପଡ଼ିଲା ? ସେ ସୁଆଲ ସରିବ କେବେ ?

ସେଇ ବିଶାଳ ଫ୍ରେମ, ସେଇ ପ୍ରାଣଖୋଲା ହସ, ଉଦଣ୍ଡ ଚାଲିର ପଦଧ୍ୱନି କିଛି ଆଉ ଦେଖିବାକୁ ମିଳିବନାହିଁ । ବାର ଆସୋସିଏସନ, ବାର କାଉନସିଲ, ରାଜନୀତିର ପଣାପାଲି ସବୁ ରହିଗଲା ପଛରେ ।

କିନ୍ତୁ ତମେ ବଞ୍ଚି ରହିବ ଆମ ଭିତରେ । ଆମେ ଯେଉଁ 'ଅନ୍ୟମାନେ" ଯେଉଁମାନେ ରହି ଯାଇଛୁ ସଭିଙ୍କ ପଛରେ, ଜୀବନର ସ୍ୱାଦ ଚାଖି ଚାଖି । ତମକୁ ଆଇନଶାଳା କି ମନ୍ତ୍ରୀ ଗାଦି ମନେ ରଖିବ କି ନାହିଁ ଜାଣେ ନାହିଁ; କିନ୍ତୁ ଯେଉଁମାନଙ୍କ ପାଖରେ ତମେ ଋଣେଇଜ୍ଞ ବା ବୁଢ଼ାଭାଇ ସେଇ ମାନଙ୍କ ପାଖରେ ତ ତମେ ହିଜଳି ରହିବ ସବୁଦିନ ।

ସବୁ ରଣରେ ଜିତ ଜିତ ଏଇ ରଣରେ ତମେ ହାରିଗଲ କାହିଁକି, ରଣଜିତ । ଆଗରେ ପଡ଼ି ଆଉରି ଅସୁମାରି କାମ ବାକି ଅଛି । ଜୀବନ ଏକ ଧାରା, ଏକ ପ୍ରବାହ । ସବୁ ଚାଲିଥିବ ସେମିତ । ଆଉ ସେଇ ଲୋକଟି ହଠାତ୍ ନଥିବ ।

ତମେ ଆଉ ନାହଁ ।



# ରବି, ତମେ ଗଲ କୁଆଡ଼େ

ରବି ହସେ, ହସାଏ ।

ରବି ଲେଖେ, ଲେଖାଏ।

ରବି ଲଢ଼େ, କିନ୍ତୁ ଲଢ଼ାଏ ନାହିଁ ।

ପାଠ ପଢ଼ିଲା ବେଳର କଥା । ରବି ରହେ ପୂର୍ବ ଛାତ୍ରାବାସ, ରେଭେନ୍‌ସା କଲେଜରେ । ହସ ଯେମିତି ବସା ବାନ୍ଧିଛି ତାର ମୁହଁରେ, କଲମ ମୂନରେ । ଲେଖେ ଜୀବନରୁ, ସାଙ୍ଗ ସାଥୀ ମହଲରୁ ଉପାଦାନ ସଂଗ୍ରହକରି । ହଠାତ୍ ଅନ୍ତରଙ୍ଗ, ଧ୍ୟାନମଗ୍ନ ହୋଇ ଲେଖେ ନାହିଁ । ସେମିତି ବସିବା ତାକୁ ପୋଷାଏ ନାହିଁ । କଲେଜ ଛକ ଶାନ୍ତି ଖାଇ ଦୋକାନରେ ଅଡ଼୍‌ଡ଼ା ମାରୁଥିବ ପିଲାଙ୍କ ସାଙ୍ଗରେ । ଆଉ ତାରି ଭିତରେ କେତେବେଳେ ଖସିଯାଇ ଲେଖି ଦେଇଥିବ, ନହେଲେ ପଢ଼ି ଦେଇଥିବ ପାଠ୍ୟ ପୁସ୍ତକ । କ୍ଲାସରେ ରବି ନଥିଲେ କ୍ଲାସ ନୀରସ ଲାଗେ, ଖାଲି ଖାଲି ଲାଗେ । ସବୁ ଝିଅ ପିଲା ରବିକୁ ଜାଣନ୍ତି । କିନ୍ତୁ କାହାରି ଅସୁସ୍ଥା ନଥାଏ । କାରଣ ରବିର ସବୁ ବ୍ୟବହାର ନିର୍ଦ୍ଦୋଷ । ହସ ଖୁସି ହେଉଛି ତା'ର ଜୀବନ । ଜୀବନ ହସିବା ପାଇଁ । ରବି ତାର ପ୍ରତୀକ ।

ସେ ରବି ହସି ହସି ଚାଲିଗଲା ।

ରବି ଲେଖେ । ଲେଖେ ଗଳ୍ପ ଲଘୁ ଏବଂ ଗୁରୁ । କିନ୍ତୁ ହାସ୍ୟ ରସ ପାଇଁ ସେ ଖ୍ୟାତ । ସେଇ ଯୋଗୁଁ ଡାକରା ପଡ଼େ । ଲେଖା ପାଇଁ । ଅନେକ ଲେଖକଙ୍କ ପରି ଲେଖା ମାଗିଲେ ସେ ଅଯଥା ଗମ୍ଭୀର ହୋଇଯାଏ ନାହିଁ । କାରଣ ସେଇଟା ତାକୁ ମାନେ ନାହିଁ । ରବି ଲେଖାଏ । ଲେଖା ପାଇଁ ଜିଦ୍ ଧରି ବସେ । ପ୍ରବନ୍ଧ,ଗଳ୍ପ, କବିତା ଯାହାଠୁ ଯାହା ପାଇବାର କଥା । ରବିର ଅନୁରୋଧ, ତାଗିଦ୍ ଏଡ଼ାଇଦେବା ଖୁବ୍ କଷ୍ଟ । ଇମିତି ମୁହଁ ଶୁଖାଇ ଠିଆ ହେବ ଯେ ମନେ ହେବ ଯେମିତି ନିଖୁଣ ଅଭିନୟ କରୁଛି ।

ସେଇ ଲେଖକ, ସାର୍ଥକ ରବି ଆଉ ନାହିଁ ।

ରବି ଲଢ଼େ । ଏଇ ମନେ ପଡ଼ୁଛି ୧୯୫୫ ମସିହାର କରାଳ ବନ୍ୟା କଥା । ରବି ଲଢ଼ିଛି ଉନ୍ମତ୍ତ ପ୍ରକୃତି ସାଙ୍ଗରେ । ବନ୍ୟାର ପ୍ରଳୟଙ୍କରୀ ରୂପ ସହିତ । ମନେ ପଡ଼ୁଛି ୧୯୫୬ର ସୀମା ଆନ୍ଦୋଳନ କଥା । ରବି ଲଢ଼ିଛି ବୀର ପରି । ପୁଲିସ ସହିତ, ଲାଠି

ସହିତ, ସାମରିକ ବାହିନୀ ସହିତ । ଏବଂ ଅମାନିଆ କର୍ତ୍ତୃପକ୍ଷଙ୍କ ସହିତ । ଲଢ଼େଇରୁ ଓହରିଯାଇ ନାହିଁ, ପଛକୁ ଫେରି ନାହିଁ ।

କିନ୍ତୁ ରବିର ବ୍ୟକ୍ତିଗତ ଶତ୍ରୁ ବୋଧହୁଏ କେହି ନଥିଲେ । କେମିତି ରହିବେ ? ହସିବା ଯାହାର ଧର୍ମ, ହସାଇବ । ଯାହାର ଦର୍ଶନ ତା'ର ପୁଣି ବୈରିତା, ଅପଡ଼ କାହା ସାଙ୍ଗରେ ? ଦୁଇଟାତ ଅସମ୍ଭବ । ରବି, ରବି ଭଳି ଅନନ୍ୟ ।

ପେଷା ଭୂତତ୍ତ୍ୱ । ଜଣା ଲେଖିବା । ପାହାଡ଼, ମାଟି ବିଦାରିବ । ଉତ୍ତୋଳନ କରିବ ଅମୂଲ୍ୟ ସଂପଦ । କିନ୍ତୁ ସେଇ ହାତ ଲେଖିବ । ଲେଖିବ ମନର ନରମ ଭାବନାକୁ ଛୁଇଁ । ସେଇ ହାତ କଠିନ, ସେଇ ହାତ ନରମ । ଗୋଟାଏ ମସ୍ତିଷ୍କର ଆଉ ଗୋଟାଏ ହୃଦୟର ।

ବୟସରେ କନିଷ୍ଠ । କିନ୍ତୁ ଗଲ ସ୍କୁଲ ଆଗ । କାହିଁକି ? ସେଠି କଣ ହାସ୍ୟର ଅଭାବ ହେଲା ? ରବି ଆଉ ନାହିଁ । କିନ୍ତୁ ସେ ବଞ୍ଚି ରହିବ ଅନେକ କାଳ ପାଇଁ । ମଣିଷ ଯେତେବେଳେ ହସିବାକୁ ଚାହିଁବ, ଦୁଃଖ ଭିତରେ, ଗ୍ଲାନି ଭିତରେ ସେତେବେଳେ ମନେ ପଡ଼ିବ ରବି, ତମର ବିୟୋଗର ଦୁଃଖକୁ ତ ହସରେ ବୁଡ଼ାଇ ହେବ ନାହିଁ । କାରଣ ସେ'ତ ହସ ହେବ ନାହିଁ । ହେବ କାନ୍ଦର ବିକାର ମାତ୍ର ।



# ଅନନ୍ୟା

ସେତେବେଳେ ଦେଶରେ ଅନ୍ଧାର ଥିଲା । ନିବୁଜ ନିରନ୍ଧ୍ର, ଆଁଖିସିଆ ଅନ୍ଧକାର । ପରାଧୀନତାର ଅନ୍ଧକାର । କିନ୍ତୁ ତାରି ଭିତରେ ଦୀପ୍ତହିଡ଼ି ଜାଳିବା ପାଇଁ ବି ଲୋକ ଥିଲେ । ନିଜେ ଜଳିବେ, ଦୁଃଖ ଭିତରେ, ଅତ୍ୟାଚାର ଭିତରେ । କିନ୍ତୁ ତା'ରି ଭିତରେ ସେମାନେ ଆଲୋକ ଦେବେ ଅନ୍ୟମାନଙ୍କୁ । ମହାଯଜ୍ଞରେ ବଳିର ପ୍ରୟୋଜନ । ତାରି ଭିତରେ ଦେଶମାତା ପାଖରେ ବଳିହେବା ପାଇଁ ବାହାରି ଆସିଲେ ଅନେକ । ଜୀବନର ଅନ୍ୟ ସବୁ ପ୍ରତିଷ୍ଠା, ଜୀବନର ଅନ୍ୟ ସବୁ ସମ୍ଭୋଗ ରହିଗଲା ପଛରେ । ପଛକୁ ଫେରି ଅନାଇବାର ଅବକାଶ ନାହିଁ । ଆଗରେ ଡାକରା ଶୁଭୁଛି । ମା'ଆର ଡାକରା ।

ଆସିଥିଲେ ଅନେକ ବ୍ୟକ୍ତି । ସ୍ୱାଧୀନତା ସଂଗ୍ରାମ ସେମାନଙ୍କୁ ପାଇ ଗର୍ବିତ ହୋଇଛି । ଆସିଥିଲେ ଅନେକ ପରିବାର । ସମଗ୍ର ପରିବାର ଉଦ୍‌ବୁଦ୍ଧ ହୋଇଥିଲା, ଅନୁପ୍ରାଣିତ ହୋଇଥିଲା । ସେମାନେ ଆସିଥିଲେ । ସେଇ ପରିବାର ଭିତରେ ଚୌଧୁରୀ ପରିବାର ଅନ୍ୟତମ । ଅନ୍ୟତମ ନୁହନ୍ତି । ଅନନ୍ୟ । କାରଣ ଇମିତି କୌଣସି ପରିବାର ବୋଧହୁଏ ଭାରତବର୍ଷରେ ନାହାନ୍ତି । ତିନି ପୁରୁଷଧରି ସମଗ୍ର ପରିବାର ଏକ ଧର୍ମରେ ଦୀକ୍ଷିତ ହେବା ଏବଂ ସେଥିପାଇଁ ଏକନିଷ୍ଠ ଭାବରେ କାମ କରିଯିବାର ଉଦାହରଣ ଭାରତରେ ବିରଳ । ଓଡ଼ିଶାରେ ଜନ୍ମ ନହୋଇ ଅନ୍ୟତ୍ର ଜନ୍ମ ହୋଇଥିଲେ କ'ଣ ହୋଇଥାନ୍ତା ତାହା ବର୍ତ୍ତମାନ ଭାବି ଲାଭ ନାହିଁ । କାରଣ ସମସ୍ତ ଅତୀତାନ୍ତ ହୋଇଛି ।

ଜମିଦାର ଘର । ପୁଣି ସ୍ୱାମୀ ତତ୍କାଳୀନ ମାଜିଷ୍ଟ୍ରେଟ । ସମ୍ଭୋଗର ଊଣା ହେବା କଥା ନୁହେଁ । ସ୍ୱାମୀ ପିତା ଯୋଗ ଦେଇଦେଲେ ସ୍ୱାଧୀନତା ସଂଗ୍ରାମରେ । କିନ୍ତୁ ସ୍ତ୍ରୀ ? ଭାପା ତ ପଡ଼ିବ ତାଙ୍କରି ଉପରେ । ପଡ଼ିଲା ସତରେ । କିନ୍ତୁ ସେ ପାଳିଚିଲେ ସବୁଂସହା । ଦୁଃଖ ନାହିଁ । ଏକ ମ୍ଳାନ ହସର ରେଖା ଉଙ୍କୁଟେ ମାତୃହୃଦର ସ୍ନେହସିକ୍ତ ହୋଇ । ସୁନ୍ଦର ଆଖି । ସେ ହେଉଛନ୍ତି ରମାଦେବୀ ।

ସ୍ୱାଧୀନତା ସଂଗ୍ରାମର ଅଗ୍ନି ତାଙ୍କୁ ଜାଳି ପାରି ନଥିଲା । ଜାଳିବାକୁ ଯାଇ ଉଦ୍ଦୀପ୍ତ କରିଥିଲା । ଅଗ୍ନି ଭିତରେ ସୁନା ପରି । ସ୍ୱାଧୀନତା ସଂଗ୍ରାମ ଭିତରେ ସେ ଘର ଛାଡ଼ିଲେ, ଦୁଆର ଛାଡ଼ିଲେ, ଆଶ୍ରମ ତିଆରି କଲେ । ଆଉ ପାଲଟିଲେ ମା । ଗୋଟିଏ

ପୁତ୍ରର ନୁହେଁ, ସହସ୍ର ପୁତ୍ରର । ପଛରେ ବାକି ସବୁ ରହିଗଲା । ମୁକ୍ତି, ଦେଶର ମୁକ୍ତି ପାଇଁ ସେ ପୁରୁଣା ସଂସାରର ବନ୍ଧନରୁ ମୁକ୍ତି ନେଲେ । ସ୍ୱାଧୀନତା ସଂଗ୍ରାମରେ ଏଇ ପରିବାରର ଦାନ ବିପୁଳ ।

ସ୍ୱାଧୀନତା ଆସିଲା ।

ବର୍ତ୍ତମାନ କ୍ଷମତା ।

ତ୍ୟାଗର ଯୁଗ ଶେଷ । ଭୋଗର ଯୁଗ ଆରମ୍ଭ ।

କିନ୍ତୁ ସ୍ୱାଧୀନତା କା' ପାଇଁ ? ଯେଉଁମାନଙ୍କ ପାଇଁ ସେମାନଙ୍କର ଅବସ୍ଥା କଣ ? ତାହାହେଲେ କ୍ଷମତା କାହାପାଇଁ—ଦଳ ପାଇଁ, ପରିବାର ପାଇଁ, ନିଜ ପାଇଁ ? କଣ ମିଳିବ ସେଥିରୁ ? ଜୀବନର ଅପରାହ୍ନ । ମଲାପରେ ପତାକା ଅର୍ଦ୍ଧନମିତ ହୋଇ ଉଡ଼ିବ ନାହିଁ । ସାମରିକ ବିଗୁଲ ବାଜିବ ନାହିଁ । ଏଇଆ ତ ?

ଲୁହା ତରଳାଇବା କି କଷ୍ଟ ! ଲୁହା ଯେଉଁମାନେ ତରଳାଉଥିଲେ, କିନ୍ତୁ ଲୁହା ତରଳିଲା ପରେ ଯେଉଁମାନେ ସେଥିରୁ ଅଲଗା ହୋଇଗଲେ ସେମାନଙ୍କ ମଧ୍ୟରେ ମା' ରମା ଦେବୀ ଅନ୍ୟତମା । ଦେବର ନବକୃଷ୍ଣ ଚୌଧୁରୀ କିଛି ଦିନ ମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କୁ ମଧ୍ୟ ତାହା ପୋଷାଇଲା ନାହିଁ । ପୋଷାଇବ କିମିତି ? ଲକ୍ଷ୍ୟ ଥିଲା ସୁଦୂର ପ୍ରସାରୀ । କୋରାପୁଟର ଆଦିବାସୀ ଆଜି ମଧ୍ୟ ଲଙ୍ଗଳା ରହେ । କଳାହାଣ୍ଡିରେ ଆଜି ବି ଦୁର୍ଭିକ୍ଷ ବସା ବାନ୍ଧେ । ତା'ହେଲେ ସ୍ୱରାଜ ଯେବେ କି ହେବ ?

"କି ହେବ ଏ ସ୍ୱରାଜ ଯେବେ ଯଦି ଆମ ନ ପୂରେ ପେଟ ।"

ନାଁ, ସ୍ୱାଧୀନତା ସଂଗ୍ରାମ ସରି ନାହିଁ । ରାଜନୈତିକ ସ୍ୱାଧୀନତା ସିନା ଆସିଲା । କିନ୍ତୁ ଅର୍ଥନୈତିକ ସ୍ୱାଧୀନତା ତ ଆସି ନାହିଁ । ତାକୁ ହାସଲ କରିବା ପାଇଁ ଆଉ ଦଳ ବା ପାର୍ଟିମାନଙ୍କର ବଳ ପାଇବ ନାହିଁ । କାରଣ ସବୁ ଦଳ ତ କ୍ଷମତାର ଲଢ଼େଇରେ ବ୍ୟାପୃତ । ତେଣୁ ଚାଲ, ନୂଆ ରାସ୍ତାରେ, ଚାଲ, ନୂଆ ଆଲୋକର ଗୀତ ଗାଇ ।

ସମସ୍ତଙ୍କର ଜୟ ହେଉ । ଜୟ ହେଉ ଜଗତର । ଚୌଧୁରୀ ପରିବାର ସହିତ ରମାଦେବୀ ଚାଲିଲେ । ବୟସ ଅତିକ୍ରାନ୍ତ ହୋଇଛି । ଅପରାହ୍ନର ଛାଇ ପଡ଼ିଲାଣି । କିନ୍ତୁ ମନ ଥକି ନାହିଁ ।

"ଦଧୀଚିର ହାଡ ଉଜାଡ଼ି ନଦେଲେ,
ଏ ଜାତିର ଭାଗ୍ୟ ଫେରିବ କି ?"

ଧ୍ୱନିତ ହେଉଛି ତଥାପି ଏଇ ସଙ୍ଗୀତ କଣ୍ଠ କୁହରରେ ।

ମଣିଷ ଭୁକ୍ତି ପାଇଁ, ଧାନା ପାଇଁ କେବଳ ବଞ୍ଚେ ନାହିଁ । ତାର ବୌଦ୍ଧିକ ବିକାଶ ପାଇଁ ଆବଶ୍ୟକ ଗଣତନ୍ତ୍ର, ଆବଶ୍ୟକ ଶାନ୍ତି ।

ଏ କଣ ଯୁଦ୍ଧର ଦାମାମା ? ଭାରତବର୍ଷରେ ଗଣତନ୍ତ୍ରର ଟୋଟି ଚିପିବା ପାଇଁ ଉଦ୍ୟମ । ପୁଣି ଥରେ ସ୍ୱାଧୀନତାର ଡାକରା ଆସିଲା କି ? ଚୌଧୁରୀ ପରିବାର ପୁଣି ଝାସ ଦେଲେ ସେଇ ସଂଗ୍ରାମରେ ।

ସେ ସଂଗ୍ରାମର ଅନ୍ତ ନାହିଁ । ମଣିଷ ସମାଜର ମୁକ୍ତି ପାଇଁ ସେ ସଂଗ୍ରାମ ଚିରନ୍ତନ । ଲୋକ ଯିବେ । ଲୋକ ଆସିବେ । କିନ୍ତୁ ଯାହା ଚିରନ୍ତନ, ତାର ଭିତରେ ଏକ ମାଇଲ ଖୁଣ୍ଟ—ରମାଦେବୀ ।

ବିଶ୍ୱମ୍ଭର ସାମନ୍ତ ପଣ୍ଡିତେଶ୍ୱ ଆଶ୍ରମରେ ସାଧକ । ସେ ଆସୁଛନ୍ତି ଓଡ଼ିଶା । ସାକ୍ଷାତ କରିବାକୁ ଯାଇଥିଲେ ମା ରମା ଦେବୀଙ୍କୁ । ଦିନେ ସେ ବିପ୍ଳବୀ ଥିଲେ, ବର୍ତ୍ତମାନ ସାଧକ ।

ତମେ ସମସ୍ତେ, ରାଜନୈତିକ ନେତା ଓ ସାଧକ ଉଭୟେ ତ ନିଜ କଥା ଭାବିଲ । ସେମାନେ ଭାବିଲେ ନିଜର ସ୍ୱାର୍ଥ କଥା । ତମେମାନେ ଭାବିଲ ନିଜର ମୁକ୍ତି କଥା । କିନ୍ତୁ କେହିତ ସମାଜ କଥା ଭାବିଲ ନାହିଁ ।

ସତରେ ତ ! କେହି ସମାଜ କଥା ଭାବିଲେ ନାହିଁ । ସମାଜ ପଡ଼ି ରହିଛି ସେହିପରି । ମଣିଷ ସ୍ମରଣ କରୁଛି ସେଇମାନଙ୍କୁ ଯେଉଁମାନେ ନିଜେ ନର୍କକୁ ଯାଇ ଜଗତ ଉଦ୍ଧାର କଥା ବିଚାର କରୁଥିଲେ ।

ରମାଦେବୀ ଆଉ ନାହାନ୍ତି ।

□

# ସଜଳ ସ୍ମୃତି

୧୯୫୦ ମସିହା ବୋଧହୁଏ । ବର୍ଲିନରେ ବିଶ୍ୱ ଯୁବ ଓ ଛାତ୍ର ଉତ୍ସବ । ଏକ ଓଡ଼ିଶାବାସୀ ଝିଅକୁ ଭାରତୀୟ ପ୍ରତିନିଧି ଦଳର ସମ୍ମୁଖରେ ଜାତୀୟ ପତାକାକୁ ବହନ କରି ଯିବାର ସୁଯୋଗ ମିଳିଥିଲା । ସେଇ ଝିଅ ରମା ରାଣୀ ରାୟ ଆଉ ନାହାନ୍ତି । ବହୁଦିନ ଧରି ସେ ବିଛଣାରେ ଶୋଇ ରହିଥିଲେ, ରୋଗ ଶଯ୍ୟାରେ, ଅସହ୍ୟ ଯନ୍ତ୍ରଣାରେ । ଦେହ ସିନା ବୋଲ ମାନୁ ନଥିଲା । କିନ୍ତୁ ମନ ?

ରମାରାଣୀ ରାୟଙ୍କୁ ସେତେବେଳେ ରେଭେନ୍ସା କଲେଜରେ ସମସ୍ତେ ଚିହ୍ନନ୍ତି । ଚିହ୍ନନ୍ତି ତାଙ୍କର ପତଳା କିନ୍ତୁ ଦୀର୍ଘ ଚେହେରା ପାଇଁ । ଚିହ୍ନନ୍ତି କାରଣ ସେ ପ୍ରଥମ ଝିଅ ଯେ ଶାଢ଼ୀ ନ ପିନ୍ଧି ପିନ୍ଧିଥିଲେ ଫୁଲପ୍ୟାଣ୍ଟ ଏବଂ ସାର୍ଟ । ଆଜିର ଝିଅମାନେ ସେ କଥା ବିଶ୍ୱାସ କରି ପାରିବେ ନାହିଁ । ରମାରାଣୀ ଯେତେବେଳେ ପ୍ୟାଣ୍ଟ ପିନ୍ଧି କଲେଜକୁ ଆସିଲେ, ସେ ଯେଉଁ ଅବସ୍ଥା । ରମାରାଣୀ ବହୁ କଷ୍ଟରେ ଶାଢ଼ୀ ପିନ୍ଧିଲେ ସତ୍ୟ କିନ୍ତୁ ଶାଢ଼ୀ ପିନ୍ଧି ସେ ଯେତେବେଳେ ଗୋଡ଼ ଛନ୍ଦି ହୋଇଯିବା ଆଶଙ୍କାରେ ସେ ଶାଢ଼ୀକୁ ଆଣ୍ଠୁ ପର୍ଯ୍ୟନ୍ତ ଟେକି ଟେକି ଚାଲିଲେ, ଯେଉଁ ଅବସ୍ଥା ସୃଷ୍ଟି ହେଲା ତାହା ଏବେ ବି ସ୍ମୃତି ରହିଛି ଅନେକଙ୍କର ।

ରମାରାଣୀଙ୍କୁ କିନ୍ତୁ ଭୟ ସ୍ପର୍ଶ କରି ନଥିଲା । ନିର୍ଭୀକ ରମା ରାଣୀ କାହାକୁ ଡରିବାର ମଣିଷ ନଥିଲେ । ନର୍ସିଂକୁ ସେ ଆପଣାର ବ୍ରତ ଭାବରେ ଗ୍ରହଣ କରିଥିଲେ । ଖାଲି ବେଉସା ନୁହେଁ ବିଶ୍ୱାସ ମଧ୍ୟ । ରମାରାଣୀ ଇଂଲଣ୍ଡ ଗଲେ ଉଚ୍ଚ ଶିକ୍ଷା ପାଇଁ । ସମାଜବାଦର ବିଶ୍ୱାସ ଜନ୍ମି ଥିଲା ତାଙ୍କର ପିଲାକାଳରୁ । ବିଲାତର ସାମ୍ୟବାଦୀ ନେତାମାନଙ୍କର ସହ ତାଙ୍କର ପରିଚିତି ଘଟିଥିଲା । ସ୍ୱର୍ଗତ ସୁରଜ୍ ଅଲ୍ଲୀ, ରଜନୀ ପାମିଦତ୍ତ ପ୍ରମୁଖଙ୍କ ସହ ତାଙ୍କର ପରିଚିତି ତାଙ୍କୁ ଆଣି ଦେଇଥିଲା ଆନ୍ତର୍ଜାତିକ ଖ୍ୟାତି ।

ସେ ଫେରିଲେ । ରୁଗ୍‌ଣ ମଣିଷର ସେବା ବା ନର୍ସିଂକୁ ଜୀବନର କର୍ମ ଭାବରେ ସେ ଗ୍ରହଣ କଲେ । କିନ୍ତୁ ସେତିକରେ ତାଙ୍କର କାର୍ଯ୍ୟ ସୀମିତ ରହିଲା ନାହିଁ । ଉତ୍କଳ ମହିଳା ସମିତିର ସେ ହେଲେ ଅନ୍ୟତମ ପ୍ରତିଷ୍ଠାତା । ବହୁବିଧ କାର୍ଯ୍ୟରେ ସେ ଆପଣାକୁ ବିନିଯୋଗ କଲେ, ବିଶେଷତଃ ନାରୀ ଓ ଶିଶୁର କଲ୍ୟାଣ ପାଇଁ ।

ରୋଗ ତାଙ୍କୁ ଗ୍ରାସ କଲା । ସେ ଧୀରେ ଧୀରେ ଶଯ୍ୟାଶାୟୀ ହେଲେ । କିନ୍ତୁ ତା ସତ୍ତ୍ୱେ ସେ ନର୍ସିଂ ସଙ୍ଗଠନକୁ ଛାଡ଼ିଲେ ନାହିଁ । ରାମକୃଷ୍ଣ ବେହେରା (ପି.ଟି.ଆଇ.ର ପୂର୍ବତନ ପ୍ରତିନିଧି) ସେଦିନ ସେଇ କଥା ସ୍ମରଣ କରୁଥିଲେ ସଜଳ ନୟନରେ । ରମାଦି’ ବିଛଣାରେ ଶୋଇ ମଧ୍ୟ କହିଛନ୍ତି, ତୁମକୁ ଏ କାମ କରିବାକୁ ହେବ । ରମାଦି’ ସମସ୍ତଙ୍କର ରମାଦି’ ।

ରମାଦି’ ଆଉ ନାହିଁ । କିନ୍ତୁ ସେ ବଞ୍ଚି ରହିବ ବନ୍ଧୁବାନ୍ଧବ ,ସହକର୍ମୀମାନଙ୍କର ସ୍ମୃତିରେ ଚିରକାଳ ।



# ମୁକ୍ତିର ଆଦ୍ୟ ଦୁନ୍ଦୁଭି ନାରବୀର

୧୯୨୦ ମସିହା । ମାଇକ୍ ନଥିଲା । ଲୋକେ କିନ୍ତୁ ଆସୁଥିଲେ ହଜାର ହଜାର । ପଇସା ଦେଇ ସଭାକୁ ଲୋକ ଆଣିବାର ବ୍ୟବସ୍ଥା କଥା କେହି ସ୍ୱପ୍ନରେ ଭାବି ନଥିଲେ । ସ୍ୱାଧୀନତାର ଚେଉ ମଥା ପିଟୁଥିଲା । ବିରାଟ ଉଦ୍‌ବେଳନ । ସେମାନଙ୍କୁ କହିବାକୁ ହେବ ମୁକ୍ତିର କଥା । ଚେଉକୁ ଉଦବେଳନରେ ପରିଣତ କରିବାକୁ ହେବ । ମାଇକ ନାହିଁ । ନଥାଉ । ସେତେବେଳେ ବିଜୁଳି ଆଲୁଅ ନଥିଲା । ପେଟ୍ରୋମାକ୍‌ସ ଜାଳି ସଭା ହେଉଥିଲା । ସଂଧ୍ୟା କାଠଯୋଡ଼ି ବାଲିରେ ଓହ୍ଲାଇବା ପୂର୍ବରୁ ସଭା ସାରିଦାକୁ ପଡ଼ୁଥିଲା । ଚନ୍ଦ୍ରା ନାହିଁ ।

ଏକ ବିରାଟ ପୁରୁଷ । ପାଞ୍ଚହାତ ମଣିଷ । ଦାଉ ଦାଉ ତେଜୋମୟ । କଣ୍ଠରୁ ଶବ୍ଦ ବାହାରୁଛି ଯେମିତି ଏକ ହୋସ ପାଇପରୁ ପାଣିପରି । କୋଡ଼ିଏ ପଚିଶ ହଜାର ଲୋକ ଶୁଣୁଛନ୍ତି ମନ୍ତ୍ର ମୁଗ୍‌ଧ ପରି । ତାରି ଭିତରୁ ବାହାରି ଆସୁଛନ୍ତି ପିଲା, ବାନରସେନା ହେବା ପାଇଁ । ସାରା ଓଡ଼ିଶାବ୍ୟାପୀ ଆନ୍ଦୋଳନ । ସବୁ ଯାଗାରେ ସେଇ ମଣିଷକୁ ଦେଖିବାକୁ ମିଳେ । ସେ ହେଉଛନ୍ତି ରାଜକୃଷ୍ଣ ବୋଷ ।

୧୯୨୦ ରୁ ୧୯୩୦ । ରାଜକୃଷ୍ଣ ବୋଷ । ଯଦୁମଣି ମଙ୍ଗରାଜ ଏବଂ ନବକୃଷ୍ଣ ଚୌଧୁରୀ । ସବୁଠାରୁ ଡାକରା ଆସେ ଭାଷଣ ଦେବା ପାଇଁ । ସାରା ଓଡ଼ିଶାରେ ସେମାନଙ୍କର ନାମ ବିଛୁଡ଼ି ହୋଇ ପଡ଼େ । ଭାଷଣ ନୁହେଁ ତ, ଏ ଯେପରି ଆଗ୍ନେୟଗିରିର ଉଦ୍‌ଗୀରଣ ।

୧୯୩୦ ରୁ ୧୯୪୨ । ଓଡ଼ିଶାର ପ୍ରଥମ ରାଜବନ୍ଦୀ ରାଜକୃଷ୍ଣ ବୋଷ ମେଡ଼ିକାଲ ପାଠରେ ଡୋରି ବାନ୍ଧି ଆସିଥିଲେ ମୁକ୍ତିର ଆନ୍ଦୋଳନକୁ । ୧୯୪୨ରେ ରାଜବନ୍ଦୀମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ବ୍ରହ୍ମପୁର ଜେଲରେ ବନ୍ଦୀ କରି ରଖାଯାଏ । ସ୍ପେସାଲ ଜେଲ । ଫରେଷ୍ଟ ଡିପାର୍ଟମେଣ୍ଟରୁ ଉତ୍କୃଷ୍ଟ ହୋଇଥାନ୍ତି ଜେଲର ସୁପରିଣ୍ଟେଣ୍ଡେଣ୍ଟ ବ୍ରିଟିଶ ସରକାରଙ୍କର ଅନୁଗତ ସଇଦୁଦ୍ଦିନ । ତାଙ୍କର ମୁକାବିଲା କରିବାକୁ ହେବ । ରାଜବନ୍ଦୀମାନଙ୍କର ସମସ୍ୟା ବୁଝିବାକୁ ହେବ । ଜଣେ ମନିଟର ଆବଶ୍ୟକ । ଏବଂ ତାହାର ଦାୟିତ୍ୱ କିଏ ନେବ ? ସମସ୍ତଙ୍କର ଆଖି ଗୋଟିଏ ଲୋକ ଉପରେ । ସେ ହେଉଛନ୍ତି ରାଜକୃଷ୍ଣ ବୋଷ ।

ତା'ପରେ ମନ୍ତ୍ରୀତ୍ୱ । ଅନେକ ମନ୍ତ୍ରୀ ଆସିଛନ୍ତି, ଯାଇଛନ୍ତି, ଆସୁଛନ୍ତି । ତା'ର ହିସାବ କିଏ ରଖିଛି ? କିନ୍ତୁ ମୁକ୍ତିର ସେଇ ଆଦ୍ୟ ଦୁନ୍ଦୁଭି, ମୁକ୍ତିର ସେଇ ପାଞ୍ଚଜନ୍ୟ ଆଜିବି ଧ୍ୱନିତ ହୁଏ । ଯୁଗ ଯୁଗ ଧରି ସେଇ ଦୁନ୍ଦୁଭିର ପ୍ରତିଧ୍ୱନି ଶୁଭିବ, ମୁକ୍ତିକାମୀ ମଣିଷର ହୃଦୟରେ । ସେଇ ଦୁନ୍ଦୁଭି ଆଜି ନୀରବତ ।

ବୟସ ହୋଇଥିଲା । ପାରିବାରିକ ସମସ୍ୟା ବଢ଼ିଥିଲା । ରାଜନୀତିର ସୁଅ ଭିତରେ ସେ ଆଉ ରହିପାରି ନଥିଲେ । କାଳକ୍ରମେ ସେ ନିଃସଙ୍ଗ ହୋଇ ଯାଇଥିଲେ । କାରଣ ସମସାମୟିକ ମଣିଷ ଆଉ କେହି ନାହାନ୍ତି । ସମସ୍ତେ ହଜି ହଜି ଗଲେଣି । କିନ୍ତୁ ମସ୍ତିଷ୍କ ଥିଲା ଆଲର୍ଟ । ଦେଖାହେଲେ ପଚ୍ଚରନ୍ତି ଘଟଣା ଓ ମଣିଷର କଥା । ସେଇ ମଣିଷ ଆଉ ନାହିଁ । ରହିବାର ଆଉ କୌଣସି ଆବଶ୍ୟକତା ନଥିଲା । ଯେଉଁ ମଣିଷ ଦିନେ ଆପଣାର କଣ୍ଠରେ ହଜାର ହଜାର ମଣିଷଙ୍କୁ ଉଦ୍‌ବେଳିତ କରୁଥିଲା, ଯାହା ପାଇଁ ଭିଡ଼ ଜମୁଥିଲା, ସେଇ ମଣିଷ ନିଃସଙ୍ଗ ବିସ୍ମୃତ ହୋଇ ରହିବ କେତେଦିନ ?



# ଶୋକର ସମୟ ନୁହେଁ
# ସମୟ ଶପଥର

ରାଜୀବ ଗାନ୍ଧୀ ଆଉ ନାହାନ୍ତି । କାଲି ପ୍ରଧାନମନ୍ତ୍ରୀ ଥିଲେ, ହୁଏତ କାଲି ପୁଣି ପ୍ରଧାନମନ୍ତ୍ରୀ ହୋଇଥାନ୍ତେ । ଗଣତାନ୍ତ୍ରିକ ପ୍ରକ୍ରିୟାରେ ଜଣେ ବ୍ୟକ୍ତିର ଉତ୍ଥାନ ପତନ ବଡ଼ କଥା ନୁହେଁ । କିନ୍ତୁ ଏଇ ପ୍ରକ୍ରିୟାର ମଝିରେ ଆତତାୟୀର ନିଷ୍ଠୁର ହାତ ହେଉଛି ବଡ଼ କଥା, ବେଦନାର କଥା । କାରଣ ଏହି ପ୍ରକ୍ରିୟାରେ ଜଣେ ବ୍ୟକ୍ତିକୁ ହତ୍ୟା କରାଯାଇ ନାହିଁ, କରାଯାଇଛି ଏକ ଧାରାକୁ । ଏହି ଧାରାକୁ ଭାରତବର୍ଷ ଗ୍ରହଣ କରିଛି ବହୁ ତ୍ୟାଗର ବିନିମୟରେ, ବହୁ ସଂଗ୍ରାମର ଫଳ ସ୍ୱରୂପ । ସେଇଥିପାଇଁ ରାଜୀବ ଗାନ୍ଧୀଙ୍କର ହତ୍ୟା ତାଙ୍କର ସମର୍ଥକ ଏବଂ ତାଙ୍କର ବିରୋଧୀ, ସମସ୍ତଙ୍କୁ ଦୁଃଖାଭିଭୂତ କରିଛି । ସେ ହୋଇ ଉଠିଛନ୍ତି ଏକ ସଙ୍କେତ, ଏକ ସିମ୍ବଲ, ଭାରତୀୟ ଗଣତାନ୍ତ୍ରିକ ଧାରାର ।

ତା' ପରଦିନ ସକାଳେ, ସ୍ୱିଜରଲ୍ୟାଣ୍ଡରେ ବସିଛନ୍ତି ଇଂଲଣ୍ଡର ଚାନ୍ସେଲିର କୁମାରୀ ଲଓ୍ୱସନ । ସେ କହୁଛନ୍ତି । କଣ୍ଠ ବାଷ୍ପାକୁଳ । ଇମିତି ଘଟଣା ଆଫ୍ରିକା ବା ଲାଟିନ୍ ଆମେରିକାରେ ଘଟେ । ଏବଂ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ପୃଥିବୀର ସର୍ବବୃହତ୍ ଗଣତନ୍ତ୍ରରେ ଯେ ଏପରି ଦୁଇ ଦୁଇଟା ଘଟଣା ଘଟିବ, ଏହା "ଆମ ପାଇଁ ଭାବିବା ମଧ୍ୟ କଷ୍ଟ ।"

ମନେ ପଡ଼ୁଛି । ଜର୍ମାନୀ କନ୍‌ସୁଲେଟରେ ବସିଛୁ । ହଠାତ୍ ସମ୍ବାଦ ଆସି ପହଞ୍ଚିଲା । ଇନ୍ଦିରା ଗାନ୍ଧୀଙ୍କୁ ତାଙ୍କର ଦେହରକ୍ଷୀ ଗୁଳି କରି ହତ୍ୟା କରିଛି । ସମସ୍ତେ ସ୍ତବ୍‌ଧ । ଶକିଂ, ଶକିଂ, ଶକିଂ । ସେଇ ଅବିଶ୍ୱାସ୍ୟ ସମ୍ବାଦ । ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିଲେ । ଜରୁରୀ ଅବସ୍ଥା ଜାରି କଲେ । ତାଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ହେଲା । ଭାରତୀୟ ଜନସାଧାରଣ କ୍ଷମା କରି ନାହାନ୍ତି ତାଙ୍କୁ । ସେ ଗଲେ ଏବଂ ପୁଣି ଆସିଲେ । ଉଭୟ ଘଟିଛି ଗଣତାନ୍ତ୍ରିକ ପ୍ରକ୍ରିୟାରେ । କିନ୍ତୁ ତାଙ୍କୁ ପଶୁ ଶକ୍ତିର ସାହାଯ୍ୟରେ ବିଲୁପ୍ତ କରିଦିଆଯିବ, ଏହା ତାଙ୍କର ସବୁଠାରୁ ବଡ଼ ବିରୋଧୀ ମଧ୍ୟ ଚାହିଁବେ ନାହିଁ । କିନ୍ତୁ ସେଇଆ ହେଲା ଏବଂ ଆରମ୍ଭ ହେଲା ଏକ ପର୍ବ, ଯାହାର ଶିକାର ହେଲେ ରାଜୀବ ଗାନ୍ଧୀ ମଧ୍ୟ ।

କିନ୍ତୁ ସେଥିରେ ହାତ କାହାର ? ଏବଂ ସେଥିପାଇଁ ଦାୟୀ କିଏ ? ରାଜୀବ ଗାନ୍ଧୀଙ୍କ ମୃତ୍ୟୁ ପରେ ଏଇ ପ୍ରଶ୍ନ ଭାରତବର୍ଷର ଜାତୀୟ ଜୀବନକୁ ଉଦ୍‌ବେଳିତ କରୁଛି ବା

କ'ଣ ଏହାର ସମାଧାନର ବାଟ ? ଜାତୀୟ ସରକାର, ରାଷ୍ଟ୍ରପତିମୂଳକ ଶାସନ ? କିନ୍ତୁ ସର୍ବୋପରି ଭାରତୀୟ ଜନଜୀବନରୁ ତ ଏହି ବିଷର ମୂଳୋତ୍ପାଟନ କରିବାକୁ ହେବ । ସେଥିପାଇଁ ଯେତିକି ଆଜି ସମୀକ୍ଷା ଆବଶ୍ୟକ,ଯେତିକି କଠୋର ନିଷ୍ପତ୍ତି ଆବଶ୍ୟକ ତାହା ବୋଧହୁଏ ହୋଇ ନାହିଁ । କେବଳ ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁ ପରେ ଯେଉଁଭଳି କାନ୍ଦଣାର ପର୍ବ ଚାଲିଥିଲା, ଯେପରି ଚାଲିଥିଲା ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପରେ, ଆଜି ମଧ୍ୟ ସେଇପରି କାନ୍ଦଣା ଚାଲିଛି । କିନ୍ତୁ ଯେଉଁ ହାତ ଆଜି ରାଜୀବ ଗାନ୍ଧୀ ବା ଗଲା କାଲି ସନ୍ଥ ଲଙ୍ଗୋୱାଲଙ୍କୁ ହତ୍ୟା କରିଥିଲା, ତାହାର ଉଦ୍ୟତ କୃପାଣ ଯେ ବହୁ ଜନନାୟକଙ୍କ ମୁଣ୍ଡ ଉପରେ ଝୁଲୁଛି ବା କାଲି ଝୁଲିପାରେ, ଏହା ଆମର ଜନସାଧାରଣ ବା ରାଜନୈତିକ ଦଳମାନେ ବିଚାର କରିବାକୁ ଆରମ୍ଭ କରିଛନ୍ତି ତ ! ଜାତୀୟ କଂଗ୍ରେସ ଏକ ରାଜନୈତିକ ପ୍ରବାହ, ଧାରା । ଏହା ସ୍ଥାବର ସମ୍ପତ୍ତି ନୁହେଁ ।

ରାଜୀବ ଗାନ୍ଧୀ କାହାର ପୁଅ କାହାର ନାତି ସେଇଟା ମଧ୍ୟ ବଡ଼ କଥା ନୁହେଁ । ରାଜୀବ ଗାନ୍ଧୀ ଗଲା କାଲିର ନିର୍ବାଚିତ ପ୍ରଧାନ ମନ୍ତ୍ରୀ, ରାଜୀବ ଗାନ୍ଧୀ ଗଣତାନ୍ତ୍ରିକ ପ୍ରକ୍ରିୟାରେ ନିର୍ବାଚିତ ସର୍ବବୃହତ ରାଜନୈତିକ ଦଳର ସଭାପତି ଏବଂ ସର୍ବୋପରି ଏଇ ମହାନ ଗଣତାନ୍ତ୍ରିକ ପ୍ରକ୍ରିୟାର ମଧ୍ୟରେ ନିହତ । ଏ ଆକ୍ରମଣ ଏକ ବ୍ୟକ୍ତି ବିରୁଦ୍ଧରେ ନୁହେଁ ଏହା ଭାରତ ବର୍ଷର ପରମ୍ପରା, ଜାତୀୟ ନିଷ୍ପତ୍ତି ବିରୁଦ୍ଧରେ । ରାଜୀବଗାନ୍ଧୀ ଆଜି ତାହାର ସନ୍ତକ । ସମଗ୍ର ଜାତି ସେଇଥିପାଇଁ ମ୍ରିୟମାଣ ।

କିନ୍ତୁ ଦେଶକୁ ଆଗକୁ ଯିବାକୁ ହେବ । ଭାରତବର୍ଷ ବଞ୍ଚି ରହିବ କଠୋର ଅଗ୍ନି ପରୀକ୍ଷା ଭିତରେ, ଦାରୁଣ ଜାତୀୟ ଦୁଃଖ ଭିତରେ । ଏବଂ ତାହାହିଁ ତ ଏ ଜାତିର ମହାନତା । ଭାରତବର୍ଷର ଉଜ୍ଜ୍ୱଳ ପରମ୍ପରା ସେଇଯୋଗୁଁ ଆପଣାର ବିରୋଧୀ ବ୍ୟକ୍ତିର ବିଦାୟରେ ମଧ୍ୟ ଅଭିଭୂତ କରୁଛି ସମସ୍ତଙ୍କୁ । ଜ୍ୟୋତିବସୁଙ୍କଠାରୁ ଅଟଳ ବିହାରୀ ବାଜପେୟୀ, ଏନ୍. ଟି. ରାମାରାଓଙ୍କଠାରୁ ରାମକୃଷ୍ଣ ହେଗଡ଼େଙ୍କ ପର୍ଯ୍ୟନ୍ତ । ଏହି ଶୋକ, ଏହି କ୍ଷତି ଭାରତୀୟ ଜାତୀୟ କଂଗ୍ରେସର ସରହଦ ଟପି ଗ୍ରାସ କରିଯାଇଛି ସମଗ୍ର ଜାତିକୁ ।

ଏତିକି ଯଥେଷ୍ଟ ନୁହେଁ । ଏତିକି ଭୁଲାନ ନୁହେଁ । ଭାରତବର୍ଷ ଠିଆ ହୋଇଛି ଏକ ବିରାଟ ସଙ୍କଟର ଛକ ଉପରେ । ଏଇ ଜାତିକୁ ମିଳିତ ଭାବରେ ଏହି ସଙ୍କଟରୁ ଉଦ୍ଧାର ପାଇବାର ମୂଲ୍ୟବାନ ବାଟ ସ୍ଥିର କରିବାକୁ ପଡ଼ିବ ଏବଂ ଏହି ଦାୟିତ୍ୱ ମୁଖ୍ୟତଃ ଭାରତର ସବୁ ଦେଶପ୍ରେମୀ ରାଜନୈତିକ ଦଳମାନଙ୍କ ଉପରେ ଏବଂ ସର୍ବୋପରି ଭାରତର ଦେଶପ୍ରେମୀ ଜନସାଧାରଣଙ୍କ ଉପରେ ।

ଆତତାୟୀର ଶିକାର ହୋଇ ରାଜୀବ ଗାନ୍ଧୀ ଦେଶ ଉପରେ ଏଇ ଗୁରୁ ଦାୟିତ୍ୱ ଅର୍ପଣ କରି ଯାଇଛନ୍ତି ।



# ପ୍ରତିଭାର ଅବସାନ

ମଇ ମାସ ୩୦ ତାରିଖ ଉଷାର ଆକାଶରେ ଉଜ୍ଜ୍ୱଳ ରକ୍ତିମରେଖା ଲେଖା ହେବା ପୂର୍ବରୁ କଟକ-ଭୁବନେଶ୍ୱରରେ 'ମୃତ୍ୟୁଚକ୍ର' ପାଞ୍ଚନମ୍ବର ଜାତୀୟ ରାଜପଥ ଓଡ଼ିଶାର ଆଉ ଏକ ବରପୁତ୍ରଙ୍କୁ ମୃତ୍ୟୁ ମୁହଁକୁ ଟାଣି ନେଇଛି । ସୁପ୍ରିମ କୋର୍ଟର ବରିଷ୍ଠ ରାଧାଚରଣ ପଟ୍ଟନାୟକ ଆଉ ନାହାନ୍ତି ଏବଂ ତାଙ୍କର ମୃତ୍ୟୁ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି କରିଗଲା ତାହା ପୂରଣ ହେବାପାଇଁ ବହୁତ ସମୟ ଲାଗିଯିବ । ରାଧାଚରଣଙ୍କର ମୃତ ଦେହକୁ 'ଅନଆଇଡ଼େଣ୍ଟିଫାଏଡ଼' ଭାବରେ କୌଣସି ଜଣେ ବ୍ୟକ୍ତି ଦେଇଗଲେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର କାଜୁଆଲିଟି ବିଭାଗରେ । କିଏ ଦେଇ ଗଲା ତାହାର ମଧ୍ୟ ଠିକଣା ନାହିଁ । ଇମିତି ଏକ 'ଅନଆଇଡ଼େଣ୍ଟିଫାଏଡ଼' ଭାବରେ କିଛି ବର୍ଷ ତଳେ ସାମ୍ବାଦିକମାନଙ୍କର ଉଏନ ଦା ମଉଡ଼ମଣି ଚନ୍ଦ୍ରପତି ରାଓଙ୍କର ମୃତ ଦେହକୁ ଆବିଷ୍କାର କରାଯାଇ ଥିଲା ଦିଲ୍ଲୀର ମୋର୍ଗରୁ ?

ମରଣ ଆସିବ । କିନ୍ତୁ ଇମିତି କଣ ମରଣ ଆସେ ? ଏବଂ ଆସେ କାହିଁକି ? ରାଧାଚରଣ ସମ୍ବେଦନଶୀଳ ମଣିଷ ଥିଲେ । ପ୍ରାଣର ଅଫୁରନ୍ତ ସ୍ପନ୍ଦନ ତାଙ୍କ ଦେହରେ ଭରି ରହିଥିଲା । ସଂସାର ପାତି ନ ଥିଲେ । ବିବାହ କରି ନ ଥିଲେ । କିନ୍ତୁ ପରିବାର ପ୍ରତି, ସମାଜ ପ୍ରତି ତାଙ୍କର ମମତା ଥିଲା, ବନ୍ଧନ ଥିଲା ନିବିଡ଼ । ସେଇ ମମତା ହିଁ ତାଙ୍କୁ ଟାଣି ଆଣିଥିଲା ଦିଲ୍ଲୀରୁ ଗ୍ରୀଷ୍ମଛୁଟିରେ । ଗ୍ରାମରୁ କଟକକୁ ଯାତ୍ରା ଯେ ମହାଯାତ୍ରାରେ ପରିଣତ ହେବ ଏକଥା କିଏ ଜାଣିଥିଲା ? ଜାଣି ହେଉ ନାହିଁ ବୋଲି ତ ସେଇ ସତ୍ୟକୁ ସନ୍ଧାନ କରିବା ପାଇଁ ଗୌତମ ପାଲଟିଥିଲେ ବୁଦ୍ଧ ।

ରାଧାଚରଣ କୃତୀ ଛାତ୍ର ଥିଲେ । ଓକିଲାତି ତାଙ୍କର ଥିଲା ପେଷା । ପରେ ସେଇ ପେଷାରେ ପ୍ରତିଷ୍ଠା ତାଙ୍କୁ ଓଡ଼ିଶା ହାଇକୋର୍ଟର ବରିଷ୍ଠପଦ ଏବଂ ପରେ ସୁପ୍ରିମକୋର୍ଟର ବରିଷ୍ଠପଦ କରିଥିଲା । ଆଗରେ ଥିଲା ସମ୍ଭାବନାର ବିରାଟ ସିଂହଦ୍ୱାର । ଜୀବନ ଅଧା ହୋଇ ନାହିଁ ବୋଲି ଧାରଣା ଜନ୍ମିଥିଲା । କିନ୍ତୁ ସେଇ ସିଂହଦ୍ୱାରର ପ୍ରଥମ ପାହାଚରେ ହିଁ ଯେ ଏଇ ଜୀବନର ସମାପ୍ତି ହୋଇଯିବ ଏକଥା କିଏ ଜାଣିଥିଲା ?

ରାଧାଚରଣ ଓକିଲ ଥିଲେ । ବରିଷ୍ଠପଦ ଥିଲେ । ଆପଣା ଘରକୁ ନିଜେ ସଜାଇ ରଖିଥିଲେ ବୁଦ୍ଧେଇ ଘର ପରି । ବଗିଚା ଶୋଭା ପାଉଥିଲା ବଟାନିକାଲ ଗାର୍ଡ଼ନ ପରି । ରାଧାଚରଣଙ୍କର ସାମାଜିକ ସମ୍ପର୍କ ଥିଲା ଜୀବନ୍ତ । ବହୁତ ଅନୁଷ୍ଠାନ, ବହୁତ

କାର୍ଯ୍ୟକ୍ଷମ ତାଙ୍କର ଅଭିଲେଖ ବହନ କରିଛି । ବିଚାରପତି ହେଲାପରେ ସେ ଷ୍ଟିଫ ନେକେଡ଼ ହୋଇ ଯାଇ ନ ଥିଲେ । ବିଚାରପତିମାନେ ସମାଜଠାରୁ ଦୂରେଇ ରହନ୍ତି । କିନ୍ତୁ ସେ ଥିଲେ ସ୍ୱତନ୍ତ୍ର ଧରଣର ମଣିଷ । ସଭା, ସେମିନାରକୁ ଡାକିଲେ ଯାଆନ୍ତି । ଗୋଡ଼ ଲମ୍ବାନ୍ତି ନାହିଁ । ଆଲୋଚନାରେ ଅଂଶ ଗ୍ରହଣ କରନ୍ତି । କହନ୍ତି ଅନ୍-କନଭେନ୍ସନାଲ୍ । ଠିକ୍ ସେଇପରି ଥିଲେ ବାର ଆସୋସିଏସନରେ ଏବଂ ପରେ ବିଚାରପତି ଭାବରେ । ଡ୍ରାଇଭରକୁ କଷ୍ଟ କାହିଁକି ଦେବେ, ଏଥିପାଇଁ ସେ ନିଜେ ଗାଡ଼ି ଚଳାଇ ଯିବାକୁ ଭଲ ପାଆନ୍ତି । ବ୍ୟାକ୍ ସିଟ୍ ଡ୍ରାଇଭିଂ ତାଙ୍କୁ ଭଲ ଲାଗେନା । ସେଇଯୋଗୁଁ ବ୍ୟସ୍ତ ଓକିଲ ଭାବରେ ବା ବିଚାରପତି ଭାବରେ ମଧ୍ୟ ସେ ନିଜ ଗାଡ଼ି ଚଳାଇ ଯାଆନ୍ତି । ଆଜି ମଧ୍ୟ ଯାଇଥିଲେ ବାରଣ ସତ୍ତ୍ୱେ । କାହିଁକି ଯାଇଥିଲେ ସେକଥା କିଏ କହିବ ? ବିନୋଦ କାନୁନ୍‌ଗୋ କାହିଁକି ଔଷଧ ଖାଇବାରେ ଅସମ୍ମତ ହେଲେ, ରଣଜିତ ମହାନ୍ତି କାହିଁକି ମୃତ୍ୟୁ ଅପେକ୍ଷା ଜୀବନକୁ ବେଶୀ ଭଲ ପାଇଲେ ତାହାର କୈଫିୟତ ଯେମିତି ମିଳିବ ନାହିଁ ଠିକ୍ ସେଇପରି ରାଧାଚରଣ କାହିଁକି ଏକୁଟିଆ ଗାଡ଼ି ଚଳାଇ ଯାଉଥିଲେ ତାହାର କୈଫିୟତ ମିଳିବ ନାହିଁ ।

ଡାକ୍ତରଖାନାରେ ଅସମ୍ଭବ ଭିଡ଼ ଜମିଛି । ବନ୍ଧୁ ବାନ୍ଧବର ଲୋକ । ଆବାଳ ବୃଦ୍ଧ ବନିତା । ଆଖିରୁ କାହାରି ଲୁହ ସରୁ ନାହିଁ । ସମସ୍ତେ ସ୍ତବ୍ଧ ହୋଇ ଯାଇଛନ୍ତି । ଦୁଃଖ ଲୁହର ସୀମା ଟପି ଯାଇଛି । ସେମାନେ ପଖାଳୁଛନ୍ତି ସ୍ମୃତି ।

ରାଧାଚରଣ ଆଉ ନାହାନ୍ତି । ବୟସରେ ସାନ ଥିଲେ । କିନ୍ତୁ ପ୍ରତିଭା ଓ ପ୍ରତିଷ୍ଠାରେ ଥିଲେ ବହୁତ ଉଚ୍ଚରେ । ସେ ଚାଲିଯିବେ । ଅଥଚ ? ସେଇ ପ୍ରଶ୍ନର ଉତ୍ତର ଖୋଜି ଅସରନ୍ତି ଦୁଃଖ ଏବଂ ଲୁହରେ ।



# ମର୍ଯ୍ୟାଦା ପୁରୁଷ

ଦେଖାହୁଏ । ସେ ସାଇକେଲରେ ବୁଲନ୍ତି । ଗାଡ଼ି ସେ ଚଢ଼ୁଥିଲେ । ଗାଡ଼ି ତାଙ୍କ ଉପରେ ସବାର ହୋଇ ନାହିଁ । ତେଣୁ ସେ ସାଇକେଲରେ ହିଁ ବୁଲିବାକୁ ଭଲ ପାଆନ୍ତି । ସେଦିନ ହଠାତ୍ ଦେଖାହେଲା ଗେଟ୍ ପାଖରେ । ସେ ସ୍କୁଟର ପଛରେ ? ହଁ, କିଛିଦିନ ପାଇଁ । ପ୍ରୋଷ୍ଟେଟ୍ ବାହାରିଛି ବୋଲି ଶୁଣୁଛି । ଅପରେଶନ୍ ପର୍ଯ୍ୟନ୍ତ ସାଇକେଲ ଚଢ଼ୁନି । ପୁଣି ଚଢ଼ି ବୁଲିବିନି ?

ଶ୍ରୀରାମଚନ୍ଦ୍ର ମହାନ୍ତି ଆଉ ବୁଲିବେ ନାହିଁ । ତାଙ୍କୁ ବାରବାଟୀ ଷ୍ଟାଡିୟମ ପାଖରେ, ଚଣ୍ଡୀ ମନ୍ଦିର ପାଖରେ ବା ତାଙ୍କ ଘର ଗୋରାକବର ରୋଡ଼ରେ ଆଉ କେହି ସାଇକେଲରେ ବୁଲିବାର ଦେଖିବେ ନାହିଁ । କିନ୍ତୁ ତାଙ୍କର କଣ୍ଠର ପ୍ରତିଧ୍ୱନି ଶୁଭିବ, ଶୁଭିବ ବହୁକାଳଧରି । ତାଙ୍କର ଛାଇ ଦେଖିବେ ବହୁ ବନ୍ଧୁ କ୍ରିକେଟ ଖେଳ ଭିତରେ, ଫୁଟବଲ ମ୍ୟାଚରେ । ଚଣ୍ଡୀ ମନ୍ଦିରରେ ଅଳତି ସମୟର ଘଣ୍ଟି ଶ୍ରୀରାମଚନ୍ଦ୍ର ମହାନ୍ତିଙ୍କର ସାଇକେଲ ଘଣ୍ଟି ବୋଲି ଭ୍ରମିବେ । ବ୍ରିଜ୍ ଖେଳରେ ଗୋଟାଏ ରବର ପରେ ଆଉ ବାଜି ବେଳକୁ ଶ୍ରୀପାଲ୍‌ଜୀ ଚମକି ପଡ଼ିବେ । ଶ୍ରୀରାମ ଗଲା କୁଆଡ଼େ ?

ଜନ୍ମ ହୋଇଥିଲେ ପୁରୀରେ । କିନ୍ତୁ ପାଠପଢ଼ା ଆଉ ଚାକିରି ଭିତରେ କଟକକୁ ହିଁ ଘର କରି ନେଇଥିଲେ । ରେଭେନ୍‌ସା କଲେଜ, ବାରବାଟୀ ଖେଳପଡ଼ିଆ, କଟକର କଚେରୀ, ଚଣ୍ଡୀ ମନ୍ଦିର ତାଙ୍କର ଅସ୍ଥିମଜ୍ଜାଗତ ହୋଇଯାଇଥିଲା । କିନ୍ତୁ ଜଗନ୍ନାଥ ବିଗ୍ରହ, ପୁରୀ ବଡ଼ଦାଣ୍ଡ, ଜନାସ୍ତଗଛ ଲେନ୍, କୁଣ୍ଢେଇ ବେଣ୍ଟସାହି ସେ କିଛି ଭୁଲି ନଥିଲେ । ନୀଳମଣି ମହାନ୍ତିଙ୍କର ମର ଦେହକୁ ସ୍ୱର୍ଗଦ୍ୱାରରେ ଚିତାଗ୍ନିରେ ଶୁଆଇଦେଲା ବେଳେ ଖେଦୋକ୍ତି ତାଙ୍କର । ମୁଁ ବି ଏଇଠି ଯିବ ।

ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ଓଡ଼ିଶା ଆସିଥାନ୍ତି । ଆଜି ଯେଉଁଠି ରକ୍ତ ଭଣ୍ଡାର, ସେଇଠି ବୈଠକ ଚାଲିଥାଏ । ଷଢ଼େଇକଳା, ଖରସୁଆଁ ପାଇଁ ଉତ୍ୟକ୍ତ ଛାତ୍ରମାନେ ପନ୍ଥଙ୍କୁ ଘେରାଉ କଲେ । ଲାଠିଚାଳନା, ଲୁହବୁହା ବାଷ୍ପ ପ୍ରୟୋଗ ହେଲା । ପୁଲିସର ଗିରଫ ପରବାନା ଜାରି ହେଲା । ଗିରଫ ପରବାନାକୁ ଏଡ଼ାଇଦେଇ ଆମେ କେତେଜଣ ସାଜିଲୁ ପଳାତକ । ତା'ପରେ ପୁଲିସ ଆଖିରେ ଧୂଳି ଦେଇ ପହଞ୍ଚିଲୁ କଟକ ଏସ୍. ଡି. ଓ.ଙ୍କ କୋର୍ଟରେ ଜାମିନ୍ ପାଇଁ । ପୁଲିସ ତଡ଼ି ତଡ଼ି ହାଜର । ମନେହେଲା ହୁଏତ ପୁଲିସ ଟାଣି ନେଇଯିବ ଆମକୁ କୋର୍ଟ ଦ୍ୱାର ମୁହଁରୁ ।

ଗର୍ଜନ ଶୁଭିଲା ହାକିମଙ୍କର । ହଟ, ହଟ, କୋର୍ଟ ଭିତରୁ । ଜାମିନ୍ ମଞ୍ଜୁର । ପୁଲିସର ଆପତ୍ତି ଉଠିଲା ତୀବ୍ର । ଏମାନେ ପଳାତକ, ଏମାନେ ଏବେ ସୀମା ଆନ୍ଦୋଳନ ସମୟରେ ପ୍ରବଳ ଗଣ୍ଡଗୋଳ କରିଥିଲେ । ମାଜିଷ୍ଟ୍ରେଟଙ୍କର ହୁକୁମ··· ସେକ୍‌ସନ ବେଲେବଲ୍ ବା ଜାମିନ୍‌ଯୋଗ୍ୟ । ତେଣୁ ଜାମିନ୍ ମଞ୍ଜୁର । ଏସ୍. ଡି. ଓ. ହିସାବରେ ସେ ଅଧସ୍ତନ, କିନ୍ତୁ ମାଜିଷ୍ଟ୍ରେଟ ଭାବରେ ବିଚାର କଲାବେଳେ ସେ କାହାରି ନୁହଁନ୍ତି, ସେ ନିରପେକ୍ଷ ।

ବନ୍ୟା, ବନ୍ୟା, ଚତୁର୍ଦ୍ଦିଗରେ ପ୍ରଳୟ ପ୍ଲାବନ । ହୀରାକୁଦର ବନ୍ଧ ଉଚ୍ଛୁଳିବ । ସ୍ଲୁଇସ ଗେଟ୍ ବନ୍ଦକରି ଦିଆଯିବ ନା ନାହିଁ ? ବିଜୁ ପଟ୍ଟନାୟକ ନିର୍ଦ୍ଦେଶ ଦେଲେ ବନ୍ଦକର ସ୍ଲୁଇସ୍ ଗେଟ୍ । ହୀରାକୁଦ ବନ୍ଧ ବିପଦାପନ୍ନ । ଇଞ୍ଜିନିଅରମାନଙ୍କର ଆପତ୍ତି । ଗଭର୍ଣ୍ଣର ସୁଖଥାଙ୍କରଙ୍କ ସହିତ ବିଜୁ ପଟ୍ଟନାୟକଙ୍କର ମତଭେଦ । କାହାର କଥା ରହିବ । ଇଞ୍ଜିନିୟରମାନଙ୍କର ନା ରାଜନୈତିକ ନେତାଙ୍କର ?

ଏକ ବିରାଟ ବିତର୍କ କଚେରୀ ହଲାରେ । ସେପଟରୁ ହଠାତ୍ ଏକ ବିରାଟ ହାସ୍ୟରେ ବିତର୍କ ସ୍ଥଳ କମ୍ପିତ ହୋଇଉଠିଲା । ଦେଶରେ ଏଭଳି ପରିସ୍ଥିତି ଅସେ ଯେତେବେଳେ ଟେକ୍‌ନିକାଲ ବା ବ୍ୟୁରୋକ୍ରାସୀର ନିର୍ଦ୍ଦେଶର ଊର୍ଦ୍ଧ୍ୱରେ ରାଜନୈତିକ ନିଷ୍ପତ୍ତି ନିଆଯାଏ । ଏ କଥା କଣ ଆପଣମାନେ ଜାଣି ନାହାନ୍ତି ? ସେ ନିଷ୍ପତ୍ତି ଭୁଲ୍ ବା ଠିକ୍ ହୋଇପାରେ, କିନ୍ତୁ ତାହାର ଯଥାର୍ଥ୍ୟକୁ କେହି ଚ୍ୟାଲେଞ୍ଜ କରିପାରିବେ ନାହିଁ । ଶ୍ରୀରାମଚନ୍ଦ୍ର ମହାନ୍ତି ସରକାରୀ ଅଫିସର । ତାଙ୍କର ଉକ୍ତି ।

ପଞ୍ଚହତ୍ତା ମର୍ଦ୍ଦ । ବିଶାଳ ପୁରୁଷ । ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ପାରିବାରିକ ସମ୍ପର୍କ । ପୂର୍ବତନ ଚିଫ୍ ସେକ୍ରେଟେରୀ ସୁଧାଂଶୁ ମୋହନ ପଟ୍ଟନାୟକ, ପ୍ରସନ୍ନ କୁମାର ପଟ୍ଟନାୟକ, ଡକ୍ଟର ରମାନାଥ ମହାନ୍ତି, ଲଲାଟେନ୍ଦୁ ପରିଜା, ମଦନ ମୋହନ ମହାନ୍ତି । ଏହାଛଡ଼ା ପାରିବାରିକ ନିବିଡ଼ତା ମଧ୍ୟ ଅନେକଙ୍କ ସହିତ । ସତ୍ୟରଞ୍ଜନ ପାଲ୍‌ଙ୍କଠାରୁ ଆରମ୍ଭ କରି ନନ୍ଦିନୀଙ୍କ ପର୍ଯ୍ୟନ୍ତ । ଚାହିଁଥିଲେ ଅବସର ପରେ ବି ଚାକିରିଟିଏ ଯୋଗାଡ଼ କରିପାରିଥାନ୍ତେ ଅନାୟାସରେ । ନା, ରିଟାୟାର୍ଡ଼ ମାନେ ରିଟାୟାର୍ଡ଼ । ଏଣିକି ଖେଳ, ଧର୍ମ କାର୍ଯ୍ୟ, ସାମାଜିକ କାର୍ଯ୍ୟ । ଅଉ ଚାକିରି ନୁହେଁ ।

କଣ ଶ୍ରୀରାମ ବାବୁ, ଆପଣ ଆଇ. ଏ. ଏସ୍. ହେଲେ, ଆଉ··· । ପାଟିରୁ କଥା ନ ସରୁଣୁ ସେପଟରୁ ଉତ୍ତର । ହୁଁ, ହେଲି । ଆଇ. ଏ. ଏସ୍. (ରିଟାୟାର୍ଡ଼) ଲେଖିବା ପାଇଁ । ଲଭଟା କଣ ହେଲା ଯେ ସେଥିରେ ଏତେ ଆନନ୍ଦ ।

କଟକ ଚଣ୍ଡୀ ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି । ଅନେକ ସ୍ୱପ୍ନ, ଅନେକ କଳ୍ପନା । ହଲ୍ ତିଆରି ହେବ, ଲାଇବ୍ରେରୀ ହେବ, ଗେଷ୍ଟ ହାଉସ ହେବ । ମାଷ୍ଟର ପ୍ଲାନ ତିଆରି ହେବ । ଚଣ୍ଡୀ ମନ୍ଦିରର ପରିବେଶ ଦେଖିଲା ଭଳି ହେବ । ସବୁ ସ୍ୱପ୍ନ ରହିଗଲା ଅଧାରେ ? ଶ୍ରୀରାମଚନ୍ଦ୍ର ମହାନ୍ତି ଛୁଟି ନେଇଗଲେ । କାହିଁକି ? ସେ ପ୍ରଶ୍ନର ଉତ୍ତର କିଏ ଦେବ ?

ଜୀବନ କାହିଁକି ସରିଯାଏ ? କାହିଁକି ମଣିଷର ସ୍ୱପ୍ନ ଅଧାରେ ରହିଯାଏ ? ଶ୍ରୀରାମଚନ୍ଦ୍ର ମହାନ୍ତିଙ୍କର ମୃତ୍ୟୁ ସମ୍ବାଦ କାହିଁକି ତାଙ୍କର ଅଗଣିତ ବନ୍ଧୁଙ୍କ ପାଖରେ ଠିକ୍ ସମୟରେ ପହଞ୍ଚିପାରେ ନାହିଁ । ଅନେକ ଅସମାହିତ ପ୍ରଶ୍ନ ରହିଯିବ ଅନନ୍ତକାଳ ଧରି ଶ୍ରୀରାମ ବାବୁଙ୍କର ସବୁ ବନ୍ଧୁମାନଙ୍କର ହଜିଯିବା ପର୍ଯ୍ୟନ୍ତ । ଆଉ ତା'ପରେ ?

ଶ୍ରୀରାମ ବାବୁଙ୍କର ହସର ପ୍ରତିଧ୍ୱନି ଶୁଭୁଛି । ଦେଖାଯାଉଛି ତାଙ୍କର ସେଇ ବିରାଟ ପୌରୁଷର ଛବି । ସେ ଯେମିତି ସବୁଜ ରହିଛନ୍ତି ଆମ ଭିତରେ ।



# ଶିଖରେଶ୍ୱରଙ୍କର ସର୍ବୋଚ୍ଚ ଶିଖରକୁ ଯାତ୍ରା

ଶିଖରେଶ୍ୱରଙ୍କର ଘର ଢେଙ୍କାନାଳରେ । କପିଳାସର ତୁଙ୍ଗ ଶିଖରର ଚୂଳର ଅଧିଷ୍ଠିତ ମହାଦେବ । ସେ ଅଞ୍ଚଳର ଆରାଧ୍ୟ ଦେବତା । ପୁଣି ବହୁ ତପସ୍ୱୀଙ୍କର ସାଧନାରେ ପୂତ ସେ ମାଟି । ବାପା ମା' ସେଇଯୋଗୁଁ ନାଁ ଦେଇଥିଲେ ପୁଅର ଶିଖରେଶ୍ୱର । ଜୀବନର ଯେଉଁ ବିଭବକୁ ସେ ଗ୍ରହଣ କରିବ ତାହାର ଶିଖରକୁ ଯେପରି ଯାଏ । ବାପା ମା'ଙ୍କର ସେ କାମନା ସାର୍ଥକ ହୋଇଥିଲା । ଅଗ୍ନିଶମ ସଂସ୍ଥାର ଅଫିସର ଭାବରେ କାର୍ଯ୍ୟ ଆରମ୍ଭ କରି ସେ ଓଡ଼ିଶାର ମୁଖ୍ୟ ଅଗ୍ନିଶମ ଅଫିସର ପର୍ଯ୍ୟନ୍ତ ଯାଇଥିଲା ।

ପିଲାଦିନେ ଶିଖରେଶ୍ୱର ଆଦର୍ଶବାଦୀ ଥିଲେ । ଢେଙ୍କାନାଳ ପ୍ରଜା ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନର ଛାପ ତାଙ୍କ ଉପରେ ପଡ଼ିଥିଲା ଏବଂ ସେଇଯୋଗୁଁ ହିଁ ତାଙ୍କ ସାଙ୍ଗରେ ମୋର ପରିଚୟ ଘଟେ । ଓଡ଼ିଶାର ଛାତ୍ର ଆନ୍ଦୋଳନ ସହିତ ସେ ଜଡ଼ିତ ହୋଇପଡ଼ିଥିଲେ ଏବଂ ଗଡ଼ଜାତ ପ୍ରଜା ଆନ୍ଦୋଳନ ବିଶେଷତଃ ସାରଙ୍ଗଧର ଦାସ, ବୈଷ୍ଣବ ପଟ୍ଟନାୟକ ଏବଂ ସର୍ବୋପରି 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ପ୍ରଭୃତି ମହାରଥୀମାନଙ୍କର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ପୁଲିସ ଅଫିସରମାନେ ରାଧାନାଥ ବାବୁଙ୍କୁ ସାକ୍ଷାତ କରିବାକୁ ଆସିଲେ ନମସ୍କାର କରନ୍ତି ବା ସାଲ୍ୟୁଟ୍ କରନ୍ତି । କିନ୍ତୁ ଶିଖରେଶ୍ୱର ତାର ଏକ ବ୍ୟତିକ୍ରମ ଥିଲେ । ସେ ଆସନ୍ତି । ମୁଣ୍ଡରୁ ଟୋପି କାଢ଼ି ରଖି ଦିଅନ୍ତି ପାଖ ଟେବୁଲ ବା ଚୌକିରେ ଏବଂ ରାଧାନାଥ ବାବୁଙ୍କ ପାଦ ତଳେ ମୁଣ୍ଡିଆ ମାରନ୍ତି । ସମସ୍ତଙ୍କୁ ଏହା ବିସ୍ମିତ କରେ, କିନ୍ତୁ ସେ ତାଙ୍କୁ ଏକ ଧର୍ମ ଭାବରେ ଗ୍ରହଣ କରନ୍ତି ।

ଉତ୍ତର ଜୀବନରେ ପାଠ ପଢ଼ା ସାରି ଶିଖରେଶ୍ୱର ଯୋଗ ଦିଅନ୍ତି ଚାକିରିରେ, ଅଗ୍ନିଶମ ସଂସ୍ଥାର ଅଫିସର ଭାବରେ । ଛାତ୍ର ଜୀବନର ଆଦର୍ଶବାଦ ତାଙ୍କ ପାଖରେ ଅତୁଟ ଥିଲା ଅନେକ ଦିନ ପର୍ଯ୍ୟନ୍ତ ଏବଂ ମୋ'ଭଳି ବହୁ ବ୍ୟକ୍ତିଙ୍କୁ ସେ ବିଭିନ୍ନ ସମୟରେ ନିଜର ଚାକିରି ପ୍ରତି ଖାତିର ନ କରି ସାହାଯ୍ୟ କରିଛନ୍ତି । ପଳାତକ ଜୀବନରେ ମଧ୍ୟ ତାଙ୍କର ସାହାଯ୍ୟ ମୋ'ଭଳି ଅନେକ ବନ୍ଧୁ ପାଇଛନ୍ତି ।

ଆସିକା ସହରରେ ସେ ଥାଆନ୍ତି ଫାୟାର ଅଫିସର । ତାଙ୍କ ଘରେ କିଛି ଦିନ ଆଶ୍ରୟ ପାଇଥିଲି ମୁଁ । ପଚାରିଥିଲି । ଶିଖରେଶ୍ୱର, କେତେଦିନ ଅତୁଟ ରହିବ ତମର

ଏଇ ଅଗ୍ନି ? ବସ୍ତୁ ଅଗ୍ନିକୁ ତ ତମେ ଉପଶମ କରି ପାରୁଛ, ତମର ଭିତରର ଏଇ ଅଗ୍ନି ଉପଶମ ହୋଇଯିବ ନାହିଁ ତ ? ସେ ହସି ଦେଉଥିଲେ ।

ତାପରେ ସମସ୍ତଙ୍କ ବାଟଚଲାରେ ତାଙ୍କ ସାଙ୍ଗରେ ମୋର ଆଉ ବହୁଦିନ ଧରି ସାକ୍ଷାତ ହୋଇନାହିଁ । ହଠାତ୍ ଦେଖାହୁଏ ଅନେକ ବର୍ଷ ପରେ । ଚିଫ୍ ଫାୟାର ଅଫିସର ଭାବରେ ସେ ରାଧାନାଥ ବାବୁଙ୍କୁ ଦେଖା କରିବାକୁ ଆସିଲାବେଳେ । ପୁଣି ପଚାରିଥିଲି ପ୍ରତିଷ୍ଠା ପାଇଛ । ପ୍ରମୋଶନ ପାଇଛ, କିନ୍ତୁ ଭିତରର ସେ ଅଗ୍ନି ଉପଶମ ହୋଇଯାଇଛି ନା ନାହିଁ ? କିନ୍ତୁ କିଛି ଉତ୍ତର ପାଇନାହିଁ । ସମସ୍ତଙ୍କ ବାଳରେ ବସ୍ତୁ ଲୋକଙ୍କର ବାଟ ହଜି ଯାଇଛି । ସ୍ୱେଚ୍ଛାବାଲରେ ସେମାନେ ହଜି ଯାଇଛନ୍ତି । ଅନେକ ବନ୍ଧୁ । ସେଇଯୋଗୁଁ ଏ ପ୍ରଶ୍ନ । ଏ ପ୍ରଶ୍ନ କେବଳ ତାଙ୍କର ନୁହେଁ, ଏ ପ୍ରଶ୍ନ ଆପଣାକୁ ମଧ୍ୟ ।

ଶିଖରେଶ୍ୱର ଜନ୍ମ ହୋଇଥିଲେ ୧୯୩୩ ମସିହା ନଭେମ୍ବର ୮ ତାରିଖରେ । ସର୍ବୋଚ୍ଚ ଶିଖରକୁ ଚାଲିଗଲେ ୧୯୯୪ ମସିହା ଜୁଲାଇ ୩୧ ତାରିଖରେ । ସେ ଶିଖରରୁ ତ ଆଉ କେହି ତଳକୁ ଆସିନାହାନ୍ତି । ସେ ମଧ୍ୟ ଆସିବେ ନାହିଁ । ରହିଯିବ ସ୍ମୃତି ମାତ୍ର ।

ଅଗ୍ନିଶମ ସେବା ସଂସ୍ଥାରେ ତାଙ୍କର ଆଲେଖ୍ୟ ବିବିଧ । ଏହାର ମାନୁଆଲ ଏବଂ ଫାୟାର ସର୍ଭିସେସ ଆକ୍ଟ ତାଙ୍କର ଆଲେଖ୍ୟ ବହନ କରେ । ଓଡ଼ିଶାର ଅଗ୍ନିଶମ ସେବା ସଂସ୍ଥାର ଆଧୁନିକୀକରଣ ମଧ୍ୟ ତାଙ୍କର ଆଲେଖ୍ୟ ବହନ କରେ । ସେଥିପାଇଁ ସେ ସ୍ୱୀକୃତ ପାଇଛନ୍ତି । ପାଇଛନ୍ତି ରାଷ୍ଟ୍ରପତି ପଦକ । ସଫଳତା ଆସିଛି, ପ୍ରତିଷ୍ଠା ଆସିଛି । କିନ୍ତୁ ମୁଁ ଜାଣେ ଅନୁଭବ କରିଛି ସେ ତାଙ୍କ ଭିତରର ଅଗ୍ନି ମଧ୍ୟ ବୟସ ଏବଂ କାର୍ଯ୍ୟ ଭିତରେ ନିର୍ବାପିତ ହୋଇଯାଇଛି କି ଆଉ ?

ଅବସର ନେବାର ପୂର୍ବ କିଛି ବର୍ଷ ମଧ୍ୟ ତାଙ୍କୁ ଭେଟିଛି ଅନେକବାର । ବନ୍ଧୁ ବତ୍ସଳ । ଅବସର ନେଲାପରେ କଟକ ବା ଭୁବନେଶ୍ୱରରେ ନ ରହି ଜନ୍ମସ୍ଥାନ ଢେଙ୍କାନାଳକୁ ଫେରିଯିବେ ବୋଲି ସବୁବେଳେ କହନ୍ତି । ଫେରିଲେ । ଏବଂ ଆଉ କୁଆଡ଼କୁ ନ ଯାଇ ବିଭିନ୍ନ ସାମାଜିକ, ଧାର୍ମିକ ଏବଂ ସାଂସ୍କୃତିକ କାର୍ଯ୍ୟରେ ଲାଗିଲେ ।

ବିଧିର ବିଧାନ ବିଚିତ୍ର । ଠାକୁରଙ୍କ ପାଇଁ ଫୁଲ ତୋଳିବାକୁ ଯାଇ ଘର ଉପରୁ ଖସିପଡ଼ି ମହାଯାତ୍ରା । ଯାତ୍ରା ସର୍ବୋଚ୍ଚ ଶିଖରକୁ । ସମସ୍ତେ ସେମିତି ଅଛନ୍ତି । କିନ୍ତୁ ଶିଖରେଶ୍ୱର ଆଉ ନାହାନ୍ତି । ମୃତ୍ୟୁ ବି ଇମିତି ଆସେ ? ରହିଗଲା କେବଳ ଉଜଳା ସ୍ମୃତି । ଦୁଲୁ ଦୁଲୁ ହୋଇ ତାହା ଜଳୁଛି ।

□

# ହେକିମ୍ ଭଳି
# ହଜି ଯାଇଥିବା ମଣିଷଟିଏ

ମୃତ୍ୟୁର ମାତ୍ର କିଛି ମାସ ପୂର୍ବରୁ ଶ୍ରୀ ଶ୍ରଦ୍ଧାକର ସୁପକାରଙ୍କ ସହ ଦେଖା ହୁଏ ସମ୍ବଲପୁରର ଏକ ସଭାରେ । ସେ ଓ ମୁଁ ବକ୍ତା । ଆୟୋଜକମାନେ କମିତ ଆମ ଦୁଇ ଜଣଙ୍କୁ ବାଛିଥିଲେ କହି ପାରିବି ନାହିଁ । ତେବେ ସୁଯୋଗ ମିଳିଥିଲା ତାଙ୍କୁ ଶେଷଥର ଭେଟିବା ପାଇଁ । କାରଣ ଆଉ ଥରେ ଗଲାବେଳକୁ ସମ୍ବଲପୁର ତାଙ୍କୁ ଆଉ ଭେଟି ହେବ ନାହିଁ । ସେ ହଠାତ୍ ଆଉ ନାହାନ୍ତି । ସେଦିନ କେଜାଣି କାହିଁକି ସେ ପ୍ରଗଲ୍ଭ ହୋଇଥିଲେ । ଅନେକ ଦିନର ଅନେକ ସ୍ମୃତି ପଖାଳୁ ଥିଲେ । ତାଙ୍କୁ ମୁଁ ଜାଣିଥିଲି ପିଲା ଦିନରୁ । ଜଣେ ବିଶିଷ୍ଟ ଆଇନଜ୍ଞ, ଜଣେ ପଣ୍ଡିତ ଏବଂ ସର୍ବୋପରି ଜଣେ ଭଲ ଉଦାର ମଣିଷ ଭାବରେ ତାଙ୍କର ଖ୍ୟାତି ଥିଲା । ଯଦିଓ ଜାତୀୟ ପଦବୀରେ ଥିଲେ କିନ୍ତୁ ରାଜନୀତିର ଅଗ୍ରଭାଗରେ ମୁଁ ତାଙ୍କୁ ସେତେବେଳେ ଦେଖିଲି ପରି ହେରୁ ହେଉନାହିଁ । ବୋଧହୁଏ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ତାଙ୍କୁ ନେଇ ଆସିଲା ସାମାଜିକ ଜୀବନର ଝଂଜା ଭିତରକୁ । ଗଣତନ୍ତ୍ର ପରିଷଦ ଏବଂ ପରେ ସ୍ୱତନ୍ତ୍ର ପାର୍ଟିର ନେତୃତ୍ୱକୁ । ବିଧାନ ସଭାର ସଭ୍ୟ ହୋଇଛନ୍ତି, ଲୋକସଭାର ସଭ୍ୟ ହୋଇଛନ୍ତି । ବିଭିନ୍ନ ଦେଶ ବୁଲିଛନ୍ତି ଏବଂ ଲେଖିଛନ୍ତି ଆପଣାର ଭ୍ରମଣ କାହାଣୀ । ଖୁବ୍ ସେନସିଟିଭ ବା ସ୍ପର୍ଶକାତର ମଣିଷ ଥିଲେ ସେ । ଚିଠିଟିଏ ଦେବେ, ନିଶ୍ଚୟ ଉତ୍ତର ପାଇବାକୁ ଆଶା କରିବେ । ଲେଖାଟିଏ ପଠାଇବେ । ପ୍ରାପ୍ତି ସ୍ୱୀକାରଟିଏ ଆଶା କରିବେ । ଏଇ ସର୍ବନିମ୍ନ ସୌଜନ୍ୟ ବା ଯାହା ବୁଝାଯାଉନା କାହିଁକି, ନ ପାଇଲେ ସେ କ୍ଷୁର୍ଣ୍ଣ ହେବେ ଏବଂ ମନେ ରଖିବେ । ଠିକ୍ ଯେପରି ମନେ ରଖିବେ ଉତ୍ତରଟିଏ ବା ପ୍ରାପ୍ତି ସ୍ୱୀକାରଟିଏ ପାଇଲେ । ବିଧାନସଭାରେ ତାଙ୍କର ପାଣ୍ଡିତ୍ୟ ପ୍ରକାଶ ପାଇଛି କିନ୍ତୁ ତା'ଠାରୁ ବେଶୀ ପାଣ୍ଡିତ୍ୟ ପ୍ରକାଶ ପାଇଛି ସାଧାରଣ ଜୀବନରେ । ଭାରତୀୟ ସଂସ୍କୃତି, ଭାରତୀୟ ଦର୍ଶନକୁ ସେ ଅଧ୍ୟୟନ କରିଥିଲେ କେବଳ ନିଜ ପାଇଁ ନୁହେଁ ଅନ୍ୟ ମଣିଷଙ୍କ ପାଇଁ ମଧ୍ୟ । ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ ତାହା ଜଣାପଡ଼େ । ଏବଂ ସେ ଦୃଷ୍ଟିରୁ ସେ କିଛି ପରିମାଣରେ ରକ୍ଷଣଶୀଳ ଥିଲେ ବୋଲି ବୁଝାଯାଇପାରେ । ଯାଇଥିଲେ ତତ୍କାଳୀନ ସୋଭିଏଟ ରୁଷ ପରିଭ୍ରମଣରେ । ରକ୍ଷଣଶୀଳ ମଣିଷ ହେଲେହେଁ ଆଖିବୁଜା ଅଭ୍ୟାସ ତାଙ୍କର ନଥିଲା । ଯାହା ଭଲ ଲାଗିଥିଲା ତାକୁ ଉନ୍ମୁକ୍ତ କଣ୍ଠରେ କହିଥିଲେ, ଲେଖିଥିଲେ । ଯାହା ଭଲ ଲାଗି ନଥିଲା ତାହା ମଧ୍ୟ ସ୍ପଷ୍ଟ ଭାଷାରେ କହିଥିଲେ ।

ଅନ୍ୟମାନଙ୍କ ପରି ପାର୍ଟିର ଫନ୍ଦିଆ ବା ରାଜନୈତିକ ଆଫିଲିଏସନ୍‌ର ଝଗଡ଼ ବନ୍ଧନ ତାଙ୍କର ବାକ୍‌ଶକ୍ତି ବା କଲମକୁ ରୁଦ୍ଧ କରିନଥିଲା । ରୁଚି ସମ୍ପନ୍ନ, ସଂସ୍କୃତିବାନ ମଣିଷଟିଏ । ସେଦିନ ଅନେକ ସମସ୍ୟାର ଗଳ୍ପ ଚାଲିଥିଲା । ଖାଲି ରାଜନୀତି ଭିତରେ ତାହା ସୀମିତ ନଥିଲା । ବିଶେଷତଃ ପଶ୍ଚିମ ଓଡ଼ିଶାରେ ଦେଖାଦେଇଥିବା ବିଚ୍ଛିନ୍ନତାବାଦ ମଧ୍ୟ ଉପରେ ଖୋଲା ଖୋଲି ଆଲୋଚନା ହୋଇଥିଲା । ପଶ୍ଚିମ ଓଡ଼ିଶାରେ ବହୁ ବର୍ଷ କାଟିବା ସତ୍ତ୍ୱେ ମୋର ନଜର କେବେହେଲେ ଏଭଳି ମନୋଭାବ ହୋଇନାହିଁ ବା ଏଭଳି ମନୋଭାବର ଶିକାର ହୋଇନାହିଁ କହିବାରେ ସେ ଆନନ୍ଦିତ ହୋଇଥିଲେ । ଏହି ବିଚ୍ଛିନ୍ନତାବାଦର ବୀଜମଞ୍ଜି ଉପର ସ୍ତରରେ ରହିଛି ଏବଂ ଏହାକୁ ସେମାନେ ସାଧାରଣ ମଣିଷ ସ୍ତରକୁ ଗ୍ରୁଡ଼ି ଦେଉଛନ୍ତି, ସାମୂହିକ ସ୍ୱାର୍ଥ ପାଇଁ ନୁହେଁ, ବ୍ୟକ୍ତିଗତ ଏବଂ ଗୋଷ୍ଠୀଗତ ସ୍ୱାର୍ଥ ପାଇଁ ମୋର ଏହି ଉକ୍ତିରେ ସେ ଚମକିତ ହୋଇ ନୀରବ ରହିଥିଲେ ଏବଂ ଏକ ଦୀର୍ଘଶ୍ୱାସ ପରିତ୍ୟାଗ କରି କହିଥିଲେ ଯେ ହୁଏତ ତମ କଥା ଅନେକାଂଶରେ ସତ୍ୟ, କିନ୍ତୁ ବର୍ତ୍ତମାନ କଣ କରାଯାଇପାରିବ ?

ଶ୍ରଦ୍ଧାକର ବାବୁଙ୍କର ବୟସ ହୋଇଯାଇଛି ବୋଲି ସେଇଦିନ ମନେହେଲା । କଣ୍ଠରେ କିମିତି ଏକ ଅସହାୟର ଦୁଃଖ । ମନେହେଲା ଯେମିତି, ସେ ଜାଣିଛନ୍ତି ଯେ ଏହି ବିଷ ସାମାଜିକ, ରାଜନୈତିକ, ସାଂସ୍କୃତିକ ସଂହତିକୁ ଖାଇ ଯାଉଛି କିନ୍ତୁ ସେ କିଛି କରି ପାରିବା ଭଳି ଅବସ୍ଥାରେ ନାହାନ୍ତି । ଦେହ ଓ ମନ ଦୁର୍ବଳ ହୋଇଗଲାଣି ।

ଶ୍ରଦ୍ଧା, ସ୍ନେହର ଆକର ଥିଲେ ସେ । ସେ ଦୃଷ୍ଟିରୁ ବାପାମା ଦେଇଥିବା ନାଁ ତାଙ୍କୁ ଠିକ୍ ମାନିଥିଲା । କଠୋର କଥା କହନ୍ତି ନାହିଁ । ଏକମତ ନହେଲେ ମଧ୍ୟ । ସୂପକାର ପଦବୀଟିକୁ ତାଙ୍କ ପରିବାରକୁ କିମିତି ମିଳିଥିଲା ଜାଣିନାହିଁ । ଜାଣିବା ପୂର୍ବରୁ ସେ ଚାଲି ଯାଇଛନ୍ତି । ଜଗନ୍ନାଥଙ୍କ ମହୋଦ୍ଧି ପ୍ରସ୍ତୁତ କରିବା ବ୍ୟକ୍ତି ଓ ଗୋଷ୍ଠୀକୁ ସୂପକାର କୁହାଯାଏ ବୋଲି ଜାଣିଛି । ସେଇମାନଙ୍କର ହାତର ଅମୃତ ପରଶରେ ସାଧାରଣ ସାମଗ୍ରୀ ସୁସ୍ୱାଦୁ ପାଲଟି ମହାପ୍ରସାଦ ହୋଇଯାଏ । ଆମର ପରମ୍ପରା ଆମର ଐତିହ୍ୟ, ଆମର ସଂସ୍କୃତିକୁ ଏକାଠି କରି ସାଧାରଣ ମଣିଷ ପାଖରେ ମନ ବୁଝିଲାପରି ଥୋଇବାର ଦକ୍ଷତା ବା ସୂପକାରତ୍ୱ ତାଙ୍କର ନିଶ୍ଚୟ ଥିଲା । ଲେଖକ ଭାବରେ ତାଙ୍କର ଖ୍ୟାତି ଥିଲା ଏବଂ ତାହାହିଁ ତାଙ୍କୁ କାଳବକ୍ଷରେ ଅମର କରି ରଖିବ ।

ଆଜିଠାରୁ ବହୁ ବର୍ଷ ପରେ କେତେ ରାଜନୈତିକ ନେତା, ବିରୋଧୀ ଦଳର ନେତା ଏମ୍. ଏଲ୍. ଏ., ପାର୍ଲାମେଣ୍ଟ ସଭ୍ୟ ସ୍ମୃତି ପଟରୁ ପୋଛି ହୋଇ ଯାଇଥିବେ କିନ୍ତୁ ଶ୍ରଦ୍ଧାକର ସୂପକାର ବଞ୍ଚି ରହିବେ ବହୁକାଳ, ଲେଖକ, ଭାବୁକ ଭାବରେ ।



# ଶେଷ ଚଣ୍ଡାଳ

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ଭାଗ । ବମ୍ବେର ଏକ ପ୍ରତିଷ୍ଠିତ କଲେଜରୁ ଚାରିଜଣ ମେଧାବୀ ଛାତ୍ର ବହିଷ୍କୃତ ହୁଅନ୍ତି । ସେମାନଙ୍କର ଅପରାଧ, ପୋପଙ୍କର ଫଟୋକୁ ସଲାମ ମାରିବା ପାଇଁ ସେମାନେ ମନାକରି ଦେଇଛନ୍ତି । ବହିଷ୍କୃତ ଚାରିଜଣଙ୍କୁ କର୍ତ୍ତୃପକ୍ଷ 'ଚାରିଚଣ୍ଡାଳ' ନାମରେ ଅଭିହିତ କରନ୍ତି ଏବଂ ଉନ୍ନତ ମସ୍ତକ ଏଇ ଯୁବକମାନେ ସେଥିପାଇଁ ଆପଣାକୁ ଗର୍ବିତ ମନେ କରନ୍ତି । ଏଇ ଚାରିଚଣ୍ଡାଳ-ମାନଙ୍କ ମଧ୍ୟରୁ 'ଶେଷ ଚଣ୍ଡାଳ ହେଉଛନ୍ତି ଏସ୍. ଏ. ଡାଙ୍ଗେ । ଅନ୍ୟମାନେ ଆଗରୁ ବାହୁଡ଼ି ଯାଇଛନ୍ତି । ପାଠ ପଢ଼ା କଲେଜରେ ଇତି ହେଲା । କିନ୍ତୁ ଜୀବନ ଯାହାର ପୋଥି, ତା'ପାଇଁ ତ ଅଧ୍ୟୟନ ଆରମ୍ଭ ହେଲା । ଅଧ୍ୟୟନ ଆରମ୍ଭ ହେଲା କୁଲି ବସ୍ତି ଭଙ୍ଗା ଟିଣ ଘରେ, ଆରମ୍ଭ ହେଲା ଲାଇବ୍ରେରୀରେ । ଇତିହାସ ହେଉଛି ଭବିତବ୍ୟର ଆଲୋକବର୍ତ୍ତିକା, ତେଣୁ ଇତିହାସକୁ, ପରମ୍ପରାକୁ ଖୋଜିବାକୁ ହେବ । ଏଇ ଇତିହାସ ଏବଂ ପରମ୍ପରାକୁ ରକ୍ଷଣଶୀଳମାନେ ନିଜର ସ୍ୱାର୍ଥ ପାଇଁ ବ୍ୟବହାର କରିଛନ୍ତି କିନ୍ତୁ ଏହା ହେବ ମେହନତୀ ମଣିଷ ହାତରେ ଆୟୁଧ । ପ୍ରଗତି ପାଇଁ ଅସ୍ତ୍ର । "ଆଦିମ ସାମ୍ୟବାଦରୁ ଦାସତ୍ୱ" ବହି ଯେଉଁମାନେ ପଢ଼ିଛନ୍ତି, ସେମାନେ ତାହାର ସ୍ୱାକ୍ଷର ଦେଖିଛନ୍ତି । ବେଦାନ୍ତ ଉପରେ ବ୍ୟାଖ୍ୟାନ ତାଙ୍କର ସୃଜନୀ ଶକ୍ତିର ଆଲେଖ୍ୟ ବହନ କରେ । ଲୋକସଭାରେ ଜଣେ ରକ୍ଷଣଶୀଳ ପଣ୍ଡିତ ସଭ୍ୟ ତାଙ୍କୁ ଆକ୍ଷେପ କରନ୍ତି । ଭାରତୀୟ ସଂସ୍କୃତି ଏବଂ ପରମ୍ପରା ଉପରେ ଜ୍ଞାନ ସମ୍ପର୍କରେ । ଉତ୍ତର ଦେଇ ଆରମ୍ଭ କରନ୍ତି ଡାଙ୍ଗେ ତାଙ୍କର ଜ୍ୱାଳାମୟୀ ଭାଷଣ । ସମଗ୍ର ଲୋକସଭା ନିସ୍ତବ୍ଧ । ଡାଙ୍ଗେ ଜଣେ ପ୍ରବୀଣ ବକ୍ତା ଭାବରେ ସୁପରିଚିତ । ପ୍ରତିପକ୍ଷକୁ ଆପଣାର ତୀକ୍ଷ୍ଣ ଶାଣିତ ବିଦ୍ରୂପ ପାଇଁ ମଧ୍ୟ ସେ ପ୍ରଖ୍ୟାତ । କିନ୍ତୁ ଆଜି ଏକ ନୂତନ କଥା, ଭାରତୀୟ ସଂସ୍କୃତି ଓ ପରମ୍ପରା ଉପରେ ବ୍ୟାଖ୍ୟାନ ଛୁଟି ଚାଲିଛି ବୁଲେଟ ଭଳି ଦେଢ଼ଘଣ୍ଟା ବ୍ୟାପୀ ଭାଷଣ । ପରେ ରକ୍ଷଣଶୀଳ ପଣ୍ଡିତ ସଭ୍ୟ ତାଙ୍କର ମତକୁ ପ୍ରତ୍ୟାହାର କରନ୍ତି ଏବଂ ଆପଣାର କଳନାର ତ୍ରୁଟି ପାଇଁ କ୍ଷମା ମଧ୍ୟ ମାଗନ୍ତି । ଅବଶ୍ୟ ପାର୍ଲାମେଣ୍ଟରେ ଭାଷଣର ସେ ଷ୍ଟାଣ୍ଡାର୍ଡ ଆଉ ନାହିଁ ବୋଲି ଜଣେ ସଭ୍ୟ ଏବେ ଖେଦୋକ୍ତି କରୁଥିଲେ । ବମ୍ବେର ଲୁଗାକଲ ଶ୍ରମିକର ସଂଗ୍ରାମ ଇତିହାସ ବିଶ୍ରୁତ । ତିଳକଙ୍କ ଗିରଫଦାରୀ ବିରୁଦ୍ଧରେ ପ୍ରତିବାଦ ଧର୍ମଘଟ କରି ଏଇ ମେହନତୀ ମଣିଷ ସାରା ପୃଥିବୀରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ଶ୍ରୀପାଦ ଅମୃତ ଡାଙ୍ଗେ ଏଇ ମେହନତୀ ମଣିଷକୁ ଆପଣାର କର୍ମକ୍ଷେତ୍ର ରୂପେ ବାଛି ନେଇଥିଲେ ସେଇଦିନ । ଏବଂ ତା'ପରେ ସେ ଆଉ ପଛକୁ ଫେରି ଅନାଇ ନାହାନ୍ତି । ଖ୍ୟାତି ଆସିଛି । ଜାତୀୟ ଖ୍ୟାତି, ଆନ୍ତର୍ଜାତିକ ଖ୍ୟାତି, ପୃଥିବୀର ବହୁ

ଜନନାୟକ ସହ ତାଙ୍କର ପ୍ରତ୍ୟକ୍ଷ ପରିଚୟ ଘଟିଛି । ବ୍ୟକ୍ତିଗତ ସମ୍ପର୍କ ପ୍ରତିଷ୍ଠା ହୋଇଛି । ଷ୍ଟାଲିନଙ୍କଠାରୁ ମାଓ-ସେ-ତୁଙ୍ଗ । ବ୍ରେଜନେଭଙ୍କଠାରୁ ଟିଟୋ । କାଷ୍ଟ୍ରୋଙ୍କଠାରୁ ଗୁଏ-ଏନ୍-ଲାଇ ବା ହୋଚିମିନ୍‌ଙ୍କ ପର୍ଯ୍ୟନ୍ତ ।

ଠିକ୍ ସେଇପରି ଅଗ୍ନି ପରୀକ୍ଷା ମଧ୍ୟ ଆସିଛି । କାରାବାସ ପରେ କାରାବାସ । ଷଡ଼ଯନ୍ତ୍ର ମୋକଦ୍ଦମା— ଗୋଟିକ ପରେ ଗୋଟିଏ । ଏଇପରି ଏକ ଉଲ୍ଲେଖନୀୟ ମୋକଦ୍ଦମା ହେଉଛି ମିରଟ୍ ଷଡ଼ଯନ୍ତ୍ର ମୋକଦ୍ଦମା । ଏଇ ମୋକଦ୍ଦମାରେ ତାଙ୍କ ବୟାନ, ବାଗ୍ମିତାରେ, ପାଣ୍ଡିତ୍ୟରେ ଏବଂ ଆଇନ ଜ୍ଞାନରେ ତାଙ୍କ ପାଇଁ ଆଣି ଦେଇଥିଲା ଅଫୁରନ୍ତ ଖ୍ୟାତି । ଠିକ୍ ସେଇପରି ଏଇ ମୋକଦ୍ଦମାରେ ତାଙ୍କର ଭୂମିକା ପରେ, ବହୁ ବର୍ଷ ପରେ ଦୁଇ କମ୍ୟୁନିଷ୍ଟ ପାର୍ଟିର ବିଭେଦ ପାଇଁ ମଧ୍ୟ ବୀଜ ବପନ କଲା । ଅଠର ବର୍ଷରୁ ଊର୍ଦ୍ଧ୍ୱ କାଳ କଟିଛି କାରାବାସରେ, ସ୍ୱାଧୀନତା ପୂର୍ବରୁ ଏବଂ ପରେ ମଧ୍ୟ । ଯେଉଁ ସ୍ୱପ୍ନରେ ବିଭୋର ହୋଇ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ତାହା ସଫଳ ହୋଇ ନାହିଁ । ତେଣୁ ସଂଗ୍ରାମ ମଧ୍ୟ ସରି ନାହିଁ । ଏ ସମ୍ପର୍କରେ ବମ୍ବେ ହାଇକୋର୍ଟରେ ତାଙ୍କର ବୟାନ ତାଙ୍କ ପାଇଁ ଯେପରି ଆଣିଥିଲା ଖ୍ୟାତି ସେଇପରି ସୃଷ୍ଟି କରିଥିଲା ନୂତନ ପରମ୍ପରା ଆଇନର ବୟାନରେ । ଜଷ୍ଟିସ ଚଗଲା ତାଙ୍କର ଐତିହାସିକ ଗ୍ରନ୍ଥରେ ଏଇ କଥା ଉଲ୍ଲେଖ କରନ୍ତି । ମତାନ୍ତର ଥାଉ, କିନ୍ତୁ ମନାନ୍ତର ହୋଇନାହିଁ । ନେହେରୁ ପରିବାର ସହିତ ତାଙ୍କର ଘନିଷ୍ଠତା ନିବିଡ଼ ଶ୍ରମଜୀବୀ ଶ୍ରେଣୀ ଯେ ଆପଣାର ସୃଜନଶୀଳ ପରିଶ୍ରମରେ ଦେଶକୁ, ସମାଜକୁ ଏକ ପଣ୍ଡିତ ଦାନ କରିପାରେ ତାହାର ସନ୍ତକ ଦେଇଛନ୍ତି ଏସ୍. ଏ. ଡାଙ୍ଗେ ।

୯୧ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଛି । ତାଙ୍କର ଜୀବଦଶାରେ ସେ ସମାଜବାଦୀ ଆନ୍ଦୋଳନର ବହୁ ଉତ୍ଥାନ ପତନ ଦେଖିଛନ୍ତି । ଦେଖିଛନ୍ତି ଛୋଟିଆ ଗ୍ରେଟିଆ ଗ୍ରୁପରୁ ଏକ ସର୍ବଭାରତୀୟ ପାର୍ଟିର ଜନ୍ମ । ପୁଣି ଜୀବନର ଅପରାହ୍ନରେ ସେ ଦେଖିଛନ୍ତି ମନୋଲିଥିକ୍ ସମାଜବାଦୀ ଆନ୍ଦୋଳନ ମଧ୍ୟରେ ମତଭେଦ ଏବଂ ବିଭକ୍ତିକରଣ । ଠିକ୍ ସେଇପରି ସେ ଦେଖିଛନ୍ତି ପ୍ରସିଦ୍ଧ ଗିର୍ଣ୍ଣିକାମଗାର ୟୁନିଅନର ଜନ୍ମ । ଦେଖିଛନ୍ତି ପ୍ରସିଦ୍ଧ ନୌ-ବିଦ୍ରୋହ ସହିତ ମିଶି ଏହାର ସଂଗ୍ରାମ । ପୁଣି ଦେଖିଛନ୍ତି ଏହି ଟ୍ରେଡ୍ ୟୁନିଅନ ସଂଗଠନ ଭିତରେ ମତଭେଦ । ବହୁ ସଂଗ୍ରାମର ଶାଣିତ ଏଇ ଯୋଦ୍ଧା, ମହାରଥୀ କ୍ଲାନ୍ତ, ଶ୍ରାନ୍ତ ହୋଇ ପଡ଼ିଛନ୍ତି ବୟସର ତାଡ଼ନାରେ ।

ସେ ଆଉ ନାହାନ୍ତି । କିନ୍ତୁ ଭାରତୀୟ ଟ୍ରେଡ୍ ୟୁନିଅନ ସଂଗଠନ ଏବଂ ସାମ୍ୟବାଦୀ ଆନ୍ଦୋଳନର ଏଇ ଭୀଷ୍ମ ପିତାମହ ବଞ୍ଚି ରହିବେ ଦୀର୍ଘକାଳ ଧରି ଜନମାନସର ସ୍ମୃତିରେ, ଆପଣାର ତ୍ୟାଗ ପାଇଁ, ମେଧା ପାଇଁ ।



# ପ୍ରବାଦପୁରୁଷର ପରଲୋକ

ପ୍ରଚଣ୍ଡ ପ୍ରତିଭାଶାଳୀ ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କର ପରଲୋକ ହୋଇଯାଇଛି । ଏଇମାତ୍ର ପନ୍ଦର/କୋଡ଼ିଏ ଦିନ ତଳେ ଆମେ ଏକାଠି ଦୂରଦର୍ଶନର ଏକ କାର୍ଯ୍ୟକ୍ରମରେ ମିଳିତ ଭାବରେ ଅଂଶ ଗ୍ରହଣ କରିଥିଲୁ । ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଶ୍ରୀ ଭକ୍ତିହରି ମହତାବ ଢେଙ୍କାନାଳର ଓକିଲ ଶ୍ରୀ ନବୀନଚନ୍ଦ୍ର ନାରାୟଣ ଚନ୍ଦ୍ର ଦାସ ଓ ମୁଁ । ସେଇଦିନ । ଡାକ୍ତର ଜ୍ୟୋତ୍ସ୍ନା ଦେଈଙ୍କର ପରଲୋକ ହୋଇ ଯାଇଥାଏ । ଆମେ ମିଳିତ ଭାବରେ ଦୂରଦର୍ଶନ କର୍ତ୍ତୃପକ୍ଷଙ୍କ ପାଖରେ ଡାକ୍ତର ଦେଈଙ୍କର ମୃତ୍ୟୁ ସମ୍ବାଦକୁ ଯଥାଯୋଗ୍ୟ କଭରେଜ୍ ଦେଇ ନଥିବାରୁ ଆପତ୍ତି ଜଣାଇଥିଲୁ ଏବଂ କଟକ, ବ୍ରହ୍ମପୁର, ବାଲେଶ୍ୱର, ରାଉରକେଲ ପ୍ରଭୃତିରେ କ୍ୟାମେରା ୟୁନିଟ ରଖିବା ପାଇଁ ଦାବୀ ଜଣାଇଥିଲୁ । ଡକ୍ଟର ଦାଶ ଆଜି ନାହାନ୍ତି । ଦୂରଦର୍ଶନ ଏଇ ସମ୍ବାଦର ଯଥାଯୋଗ୍ୟ କଭରେଜ୍ କରିବ ତ ?

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଥିଲେ ଆଗ୍ନେୟ ପ୍ରତିଭାର ଅଧିକାରୀ । ସେମାନେ ବିବଦମାନ ହେବାକୁ ବାଧ୍ୟ । ଯାହାର କୌଣସି ମାଦକତା ନାହିଁ, ନାହିଁ ଉଦ୍ଦାମତା ସେ "ଭଲ" ମଣିଷ ଭାବରେ ପରିଚିତି ପାଏ । କିନ୍ତୁ ବିବଦମାନ ବ୍ୟକ୍ତିମାନେ ଗୋଳିଆ ପାଣିକୁ ହିଁ ଗୋଡ଼ ବଢ଼ାନ୍ତି । ସେଇଟା ସେମାନଙ୍କର ଅଭ୍ୟାସ । ସାର୍ ମୋର ଗୁରୁ ଥିଲେ । ବହୁ ବର୍ଷଧରି ସେ ମୋତେ ପଢ଼ାଇଛନ୍ତି । ତାଙ୍କର ପ୍ରିୟ କିନ୍ତୁ ବିଦ୍ରୋହୀ ଛାତ୍ର ଭାବରେ ମୁଁ ପରିଚିତ । ସାର୍ କହନ୍ତି କ୍ଲାସରେ ଖୋଲଖୋଲି, ସେମାନଙ୍କର କ୍ଲାସ କିଏ ପଚ୍ଛାଘରେ, ସେମାନଙ୍କର କ୍ଲାସ ହେଉଛି ପଡ଼ିଆରେ, ମଣିଷର ସମୁଦ୍ର ଭିତରେ । ସେମାନେ ବେଶ୍ କଣ୍ଟ୍ରୋଭର୍ସିଆଲ ଆଉ ସେମାନେ ସେଇଯୋଗୁଁ ମୋର ପ୍ରିୟ ।

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ବିବଦମାନ ହୋଇଉଠିଥିଲେ ପିଲାଦିନୁ , ପ୍ରତିଭା ସହିତ । ଜନ୍ମ ୧୯୧୮ ମସିହା ନଭେମ୍ବର ଏଗାର ତାରିଖରେ । ବାଲିକୁଦା ଥାନା ଅନ୍ତର୍ଗତ ବୀର ନରସିଂହପୁର ଗ୍ରାମରେ । ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ଗାଁକୁ ତାଙ୍କ ଗାଁ ଲାଗିଛି । ପରିଜା ସାହେବ ଏଇ ପ୍ରତିଭାବାନ ଛାତ୍ରର ଶିକ୍ଷାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି । ସେ କଥା ଡକ୍ଟର ଦାଶ ଜୀବନବ୍ୟାପୀ ଗର୍ବର ସହିତ ସ୍ମରଣ କରନ୍ତି । ଗାଁ ସ୍କୁଲ ଛାଡ଼ି ୧୯୩୨ ମସିହାରେ ଶ୍ରୀରାମଚନ୍ଦ୍ର ଆସନ୍ତି ରେଭେନ୍‌ସା କଲେଜିଏଟକୁ । ଏବଂ ୧୯୩୫ ମସିହାରେ ସମଗ୍ର ପାଟଣା ବିଶ୍ୱବିଦ୍ୟାଳୟରେ ମାଟ୍ରିକ

ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରନ୍ତି । ତାଙ୍କର ଖ୍ୟାତି ବଢ଼ୁଥିବାର ଆଦ୍ୟପର୍ବ ଆରମ୍ଭ ହୁଏ । ଶବଦମାନ ହେବା ସାରଙ୍କର ଏକ ପ୍ରକାର ନିଶା । ଅଗ୍ନିମୁଖ ଯାହା ଶୁଣନ୍ତି ତାହା କହନ୍ତି ଏବଂ ତାର ପ୍ରତିକ୍ରିୟା, ପରିଣତି ହାନିଲାଭ କିଛିକୁ ଖାତିର କରନ୍ତି ନାହିଁ । ଧାଡ଼ିରେ ପଢ଼ିବା ତାଙ୍କୁ ପୋଷାଏନି । ଉଜାଣି ପହଁରିବା ବୋଧହୁଏ ତାଙ୍କୁ ଭଲ ଲାଗେ । ଅନୁକୂଳ ବା ପ୍ରତିକୂଳ ସେଥିପ୍ରତି ତାଙ୍କର ନଜର ନଥାଏ । ଏବଂ ସେଇଥିପାଇଁ ତାଙ୍କୁ ବେଶି ମୂଲ୍ୟ ଦେବାକୁ ପଡ଼ିଛି । ରାଜଭୟ, ଶାରୀରିକ କ୍ଳେଶ ସବୁ ଭୋଗ କରିବାକୁ ପଡ଼ିଛି । କିନ୍ତୁ ତଥାପି ଅଭ୍ୟାସ ସେମିତି ଅତୁଟ ରହିଛି ।

ସେଦିନ କିନ୍ତୁ ଦୂରଦର୍ଶନରେ ସାରଙ୍କର କଣ୍ଠ ଆଉ ପୂର୍ବପରି ନଥିଲା । ପାଦ ଶିଥିଳ ହୋଇ ଯାଇଥିଲା ପରି ମନେହେଲା । ଶ୍ରୀରାମଚନ୍ଦ୍ର ଦାଶ ପାଦ ଗଣି ଗଣି ପକାଇବେ ଏହା କେମିତି ମାନୁ ନଥିଲା । ଆମେ ସବୁ କଥା ହେଉଥିଲୁ । ମାଟ୍ରିକ ପାଶ କରି ଶ୍ରୀରାମଚନ୍ଦ୍ର ଦାଶ ଆସିଲେ ରେଭେନ୍ସା କଲେଜକୁ । ପ୍ରତିଭା ଏବଂ ବିବାଦ ଉଭୟଙ୍କୁ ସାଥୀ କରି । ତାଙ୍କର ପ୍ରଥମ ସଂଘର୍ଷ ହୁଏ କଟକରେ ଛାତ୍ର ସମ୍ମିଳନୀରେ । ସମ୍ମିଳନୀର ଗୃହୀତ ପ୍ରସ୍ତାବର ବିରୋଧ କରି ସେ ଭାଷଣ ଦିଅନ୍ତି ଏବଂ ପ୍ରବଳ ପ୍ରତିବାଦ ସତ୍ତ୍ୱେ ତାଙ୍କର ମତକୁ ଉପସ୍ଥାପିତ କରନ୍ତି । ତା'ପରେ ୧୯୪୦ ମସିହାର ଛାତ୍ର ଧର୍ମଘଟ । ଠିକ ସେଇ କାହାଣୀ । ୧୯୬୧ର ଛାତ୍ର ଧର୍ମଘଟ ସମୟରେ ଉତ୍କଳର ଦାଶ ଅଧ୍ୟାପକ । କିନ୍ତୁ ସେଇ ପୁରାତନ ଅଭ୍ୟାସ । କିନ୍ତୁ ତାଙ୍କର ଅସୂୟା, ବିରୋଧ ଖୁବ୍ କ୍ଷଣସ୍ଥାୟୀ । ଆଜି ରାଗିଛନ୍ତି, ଯାହା ମୁହଁକୁ ଆସିଛି କହିଛନ୍ତି । ଫଳ ଯାହା ହେଉନା କାହିଁକି । କିନ୍ତୁ କାଲିକି ସବୁ ଭୁଲିଗଲେଣି । ତାଙ୍କ ସହିତ କେତେ ସଂଘର୍ଷ, କେତେ ଗଣ୍ଡଗୋଳ । ପୁଣି କେତେ ସ୍ନେହ, କେତେ ଆଦର ? ସବୁ ମନେପଡ଼େ । ଆଖି ମନ ସବୁ ଲୁହ ହୋଇଯାଏ ।

ଉତ୍କଳର ଶ୍ରୀରାମଚନ୍ଦ୍ର ଦାଶଙ୍କର ସ୍ମୃତି ଶକ୍ତି ପ୍ରଚଣ୍ଡ । ଆଉ ତା' ଉପରେ ସାରଙ୍କର ଭରସା ଏବଂ ବିଶ୍ୱାସ ବହୁତ ବେଶୀ । ଭାଷଣ ଓଜସ୍ୱିନୀ । କ୍ଲାସ ନେଲାବେଳେ ପାଖ କ୍ଲାସରୁମର ଶିକ୍ଷକମାନେ କ୍ଲାସ ବନ୍ଦ କରି ଚାଲିଯାଆନ୍ତି । ସଭାରେ ଉତ୍କଳର ଦାଶଙ୍କୁ ପ୍ରାୟତଃ ଶେଷରେ କହିବାକୁ କୁହାଯାଏ, କାରଣ ସେ ଆଗରୁ କହିଲେ ପରବର୍ତ୍ତୀ ବକ୍ତା-ମାନଙ୍କର ଭାଷଣ ରସହୀନ ଶୁଷ୍କ ହୋଇଯାଏ । ତାରିଖ, ଘଣ୍ଟା, ମିନଟ ପ୍ରଭୃତି ଠିକଣାଖି ବିବରଣୀ ଦେଇ ସେ ଆପଣାର ଭାଷଣକୁ ଇମିତି ରସାଳ କରନ୍ତି ଯେ ଶ୍ରୋତା ସେ ସବୁ ଠିକଣାଖି ବିବରଣୀ ମନେ ରଖିପାରେ ନାହିଁ, କଥାଟି ବୁଝିଯାଏ । ଭାରତୀୟ ସମ୍ବିଧାନ ତାଙ୍କର ପ୍ରିୟ ବସ୍ତୁ । ସେ ଉପରେ କହିବା ପାଇଁ ତାଙ୍କର ବହି ଖୋଜିବା, ନୋଟ ଦେଖିବା କିଛି ଦରକାର ନାହିଁ । ସବୁ କହି ଯାଆନ୍ତି ମନରୁ ।

ପାଠ ପଢ଼ିଲେ କଲେଜରେ । ଯୁଗେ ଯୁଗେ ବୁଦ୍ଧି ଓ ପରିଶ୍ରମ ଭିତରେ ସଂଘର୍ଷ ବା ବିବାଦ ଦେଖା ଦେଇଛି । ଏଇପରି ସଂଘର୍ଷ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ

ଭିତରେ ମଧ୍ୟ ଦେଖା ଦେଇଛି । ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଡକ୍ଟର ବିଦ୍ୟାଧର ମିଶ୍ର, ଡକ୍ଟର ରାଧାନାଥ ରଥ ଏବଂ ଡକ୍ଟର ଗଣେଶ୍ୱର ମିଶ୍ର ସହପାଠୀ । ଠିକ୍ ସେଇପରି ଅଧ୍ୟାପକ ବିଧୁଭୂଷଣ ଦାସ ଏବଂ ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତି ସହପାଠୀ । ଶ୍ରୀରାମ-ବାବୁ ରାଜନୀତି ବିଜ୍ଞାନକୁ ଗ୍ରହଣ କଲେ ଆପଣାର ବିଷୟ ଭାବରେ । ରେଭେନ୍‌ସା କଲେଜ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗ ତାଙ୍କର ମହାନ ଅବଦାନ । ସାରଙ୍କ କ୍ଲାସରେ ଛାତ୍ରମାନଙ୍କର କିଛି ସୀମା ନଥାଏ । ସେଇଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ସବୁଠାରୁ ବେଶୀ ଛାତ୍ରଛାତ୍ରୀ ହେଉଛନ୍ତି ରାଜନୀତି ବିଜ୍ଞାନରେ ।

ବିବାଦ ତାଙ୍କୁ ଗୋଡ଼ାଇଥିଲା କି ସେ ବିବାଦକୁ ଗୋଡ଼ାଇଥିଲେ କହିହେବ ନାହିଁ । କଲେଜ ୟୁନିଅନର ସଭାପତିଙ୍କୁ ସେ ସମ୍ବୋଧନ କରିବେ ସ୍ୱତନ୍ତ୍ର ଏଥିପାଇଁ ଦୟାନିଧି ଚୌଧୁରୀଙ୍କ ସହିତ ସଂଘର୍ଷ । ସଂଘର୍ଷର ସୀମା ନାହିଁ । ବିଭିନ୍ନ ଘଟଣାରେ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କର ପ୍ରିନ୍‌ସିପାଲମାନଙ୍କ ସହିତ ସଂଘର୍ଷ । ସୀମାହୀନ ତାଙ୍କର ସଂଘର୍ଷ । କିନ୍ତୁ ପୁଣି ଆତ୍ମବିସ୍ମୃତା । ବାପା ସାଙ୍ଗରେ ସଂଘର୍ଷ କିନ୍ତୁ ଝିଅକୁ ଫାଷ୍ଟକ୍ଲାସ ଦେବାରେ ଉଦାର । ଡକ୍ଟର ଦାଶ ଅନନ୍ୟ । ଆଇ.ଏ.ଏସ୍. ପାଇଁ ବଛା ଯାଇଥିଲେ ଏମର୍‌ଜେନ୍‌ସି ରିକ୍ରୁଟମେଣ୍ଟରେ, ୧୯୪୮ ମସିହାରେ । ସେ କୁହନ୍ତି ତାଙ୍କୁ "କମ୍ୟୁନିଷ୍ଟ" ଆଖ୍ୟା ଦିଆଯାଇ ସେଥିରୁ ବଞ୍ଚିତ କରାଗଲା । ସେତେବେଳେ ସେଇ ଅଭିଯୋଗଟା ଗୋଟାଏ ଫେସନ ଥିଲା । ଯାହା ମନକୁ ନ ଲାଗିଲା, ଯାହାକୁ ବିରୋଧ କରିବାକୁ ଇଚ୍ଛା ହେଲା, ଦଣ୍ଡ ଦେବାପାଇଁ ଇଚ୍ଛା ହେଲା, କହିଦିଅ ଯେ ସେ ଜଣେ "କମ୍ୟୁନିଷ୍ଟ" ଡକ୍ଟର ଦାଶ ଯେ କମ୍ୟୁନିଷ୍ଟ ନଥିଲେ ଏକଥା ତତ୍‌କାଳୀନ ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ, ଶିକ୍ଷା ସଚିବ ଏବଂ ଘରୋଇ ସଚିବ ଜାଣିଥିଲେ । ଠିକ୍ ସେଇପରି, କଂଗ୍ରେସ ପରିଷ୍ଥିତି ସମୟରେ "କମ୍ୟୁନିଷ୍ଟ"ମାନଙ୍କ ଷଡ଼ଯନ୍ତ୍ର ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ତାଙ୍କର ଚାକିରି ଗଲା ଏହା ସତ୍ୟ ନୁହେଁ । କାରଣ ତତ୍କାଳୀନ ମନ୍ତ୍ରୀମଣ୍ଡଳ ଏକ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲା ଏବଂ ଉକ୍ତ ସରକାର ଅନେକ କମ୍ୟୁନିଷ୍ଟଙ୍କୁ ବନ୍ଦୀ କରିଥିଲେ ମଧ୍ୟ । ତାଙ୍କର ବିବଦମାନତା ତାଙ୍କୁ ବିଶ୍ୱବିଦ୍ୟାଳୟର ପ୍ରଫେସର ପଦରୁ ରାଜରାସ୍ତାକୁ ଫୋପାଡ଼ି ଦେଇଛି । କିନ୍ତୁ ମାଟିରୁ ଶକ୍ତି ସଂଗ୍ରହ କରି ଗ୍ରୀକ୍ ଉପକଥାର ହିରୋ ପରି ସେ ପୁଣି ଉଠିଛନ୍ତି । ପ୍ରତିଷ୍ଠିତ ହୋଇଛନ୍ତି । ଅଧ୍ୟାପନା ପାଇଁ ଯଥା, ଆଇନଶାଳା ପାଇଁ ଲଭରେ ପରିଣତ ହୋଇଛି । ସର୍ଭିସେସ୍ ମୋକଦ୍ଦମାରେ ତାଙ୍କର ବ୍ୟୁତ୍ପତ୍ତି ପୁଣି ପ୍ରବାଦରେ ପୂଜିତ ହୋଇଛି ।

ଉତ୍ତର ଜୀବନରେ ସାର୍ ହଠାତ୍ ଆଧ୍ୟାତ୍ମିକ ପାଲଟି ଯାଇଛନ୍ତି । ସତ୍ୟସାଇ ବାବାଙ୍କର ଭକ୍ତ ହୋଇଛନ୍ତି । ତାଙ୍କର ଦୟାରୁ ପୁଅଟିଏ ହୋଇଛି ବୋଲି ସାର୍‌ଙ୍କର ବିଶ୍ୱାସ । ମଝିରେ ଡକ୍ଟର ଦାଶ ରାଜନୀତିର ପିଚ୍ଛିଳ ପଥରେ ଚାଲିବାକୁ ଚେଷ୍ଟା

କରିଛନ୍ତି । ସେ ଚେଷ୍ଟା ସକ୍ଷିପ୍ତ । ଅଧ୍ୟାପକ ବିଚରା ବାଟବଣା ହୋଇଯାଇଛି । ପାଦ ଛପି ଖଣ୍ଡିଆ ଖାବଡ଼ା ଅବସ୍ଥା । ସେ ରାଜନୀତି ଛାଡ଼ିଛନ୍ତି ।

ବହୁ ଅନୁଷ୍ଠାନ, ବହୁ କାର୍ଯ୍ୟ ସହିତ ତାଙ୍କର ସମ୍ପର୍କ । ଲେଖିଯାଇପାରି ନାହାନ୍ତି ବେଶି, କହିଛନ୍ତି ବହୁତ । ସ୍ୱଳ୍ପ ଲେଖା ହେଲେ ବି ତାଙ୍କର ପୁସ୍ତକ ସ୍ୱୀକୃତି ଲାଭ କରିଛି । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ, ସିଣ୍ଡିକେଟର ସଭ୍ୟ ହୋଇଛନ୍ତି । କିନ୍ତୁ କୁଳପତି ହୋଇପାରି ନାହାନ୍ତି । ଇତିହାସ କହିବ ତା'ର କାରଣ ।

ବହୁମୂତ୍ର, ସ୍ନାୟୁ ରୋଗରେ ପୀଡ଼ିତ । ଶୁଣାଯାଇଛି ଶେଷରେ ଏକ ହୃଙ୍କୋଷ୍ଟସମର ଛାପା ଦେଖା ଦେଇଛି ଧୂଇବର୍ଣ୍ଣ ହେଲା । ଏହା କଣ ? ବ୍ରଙ୍କାଇଟିସ୍, ଯକ୍ଷ୍ମା, କ୍ୟାନ୍‌ସର ? ହଠାତ୍ ଅଜ୍ଞାନ ଏବଂ ତା'ପରେ ଯାତ୍ରା ସେଇଠିକୁ, ଯେଉଁଠାରୁ କେହି ଫେରି ନାହାନ୍ତି । ଶୁଣାଯାଏ ଯେ ଏଇ ପ୍ରତିଭାଶାଳୀ ସ୍ମୃତିଧର ପ୍ରବାଦ ପୁରୁଷଙ୍କର ମସ୍ତିଷ୍କର ଫଟୋ ଉଠାଯାଇଥିଲା ମୃତ୍ୟୁର କିଛିଦିନ ପୂର୍ବରୁ । ଦେଖାଗଲା ଯେ ତାଙ୍କର ମସ୍ତିଷ୍କ ଆଉ ନାହିଁ । କେବଳ ଧାରଟିଏ ଭଳି ରହିଛି ମାତ୍ର । ତା'ପରେ କ'ଣ ତାଙ୍କର ଆଉ ବଞ୍ଚିବା ଉଚିତ ଥିଲା ?

କିନ୍ତୁ, ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତା' ପୂରଣ ହେବ କିପରି ? ସଭିଙ୍କୁ କହିବା ପାଇଁ ଆଉ ସେଇଭଳି ମଣିଷଟିଏ ମିଳିବ ତ ? ନା । ଏ ଦେଶ ହଠାତ୍ ଦରିଦ୍ର ହୋଇଯାଇଛି ।



# ଅବସାନ ଯୁଗାବସାନ

ମୋର ମୃତ୍ୟୁରେ କୌଣସି କ୍ରିୟାକର୍ମ ହେବ ନାହିଁ । ସତ୍ୟଜିତ୍ ରାୟଙ୍କର ଏଇ ଥିଲା ଶେଷ ଇଚ୍ଛା । ସେ ନାସ୍ତିକ ନଥିଲେ, କିନ୍ତୁ ଥିଲେ ଆଗ୍ନୋଷ୍ଟିକ । ଅନ୍ତିମ ବିଦାୟର ବେଳା ଉପସ୍ଥିତ । "ବିଗତ ଦଶନ୍ଧିର ସବୁଠାରୁ ବଡ଼ ଘଟଣା କଣ ?" ଇଣ୍ଟରଭିଉରେ ପ୍ରଶ୍ନ । "ଭିଏଟ୍‌ନାମର ମୁକ୍ତି ସଂଗ୍ରାମ" ପ୍ରାର୍ଥୀଙ୍କ ଉତ୍ତର । "କ'ଣ ମଣିଷର ଚନ୍ଦ୍ର ପୃଷ୍ଠରେ ଅବତରଣଠାରୁ ଏହା ବଡ଼" ପୁଣି ପ୍ରଶ୍ନ । "ହଁ, କାରଣ ଚନ୍ଦ୍ର ପୃଷ୍ଠରେ ଅବତରଣ ବୈଜ୍ଞାନିକ ପରାକାଷ୍ଠା ; କିନ୍ତୁ ଭିଏଟନାମର ମୁକ୍ତି ସଂଗ୍ରାମ ହେଉଛି ମଣିଷର ବଞ୍ଚିବା ପାଇଁ ସଂଗ୍ରାମର ସମବେତ ପ୍ରଚେଷ୍ଟା" ପ୍ରାର୍ଥୀଙ୍କ ଉତ୍ତର । "ତମେ କଣ କମ୍ୟୁନିଷ୍ଟ ?" ସତ୍ୟଜିତ୍ ରାୟଙ୍କର ଏକ ଚଳଚ୍ଚିତ୍ରରେ ଏଇ ହେଉଛି ଡାଏଲଗ୍ । ସତ୍ୟଜିତ୍ ରାୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥିଲେ, କିନ୍ତୁ ଥିଲେ ସମାଜବାଦୀ । ମଣିଷ ଥିଲା ତାଙ୍କର ପ୍ରେରଣାର ଉତ୍ସ । ଭାରତର ଦାରିଦ୍ର୍ୟକୁ ସେ ଆପଣାର ଚଳଚ୍ଚିତ୍ରରେ ସମ୍ପ୍ରସାରିତ କରି ପ୍ରସିଦ୍ଧି ଲାଭ କରିଛନ୍ତି ବୋଲି ଜଣେ ପ୍ରଖ୍ୟାତ ଅଭିନେତ୍ରୀ ଅଭିଯୋଗ କରନ୍ତି । ବ୍ୟଥିତ ଏବଂ ଉତ୍‌କ୍ଷିପ୍ତ ସତ୍ୟଜିତ୍ ରାୟ କହନ୍ତି ଯେ କେବଳ ପଥେର ପାଞ୍ଚାଲି ଛଡ଼ା କୌଣସି ଚଳଚ୍ଚିତ୍ରରେ ତ ଦାରିଦ୍ର୍ୟ ରୂପାନ୍ତରିତ ହୋଇନାହିଁ । 'ସଲାମ୍ ବମ୍ବେ' ଭଳି ଚଳଚ୍ଚିତ୍ର ଦେଖିବା ପାଇଁ ଉକ୍ତ ସମାଲୋଚକା ଆଉ ନାହାନ୍ତି ।

ସତ୍ୟଜିତ୍ ରାୟଙ୍କୁ ଦେଖାଯାଏ ଏକ ପ୍ରସିଦ୍ଧ ବିଜ୍ଞାପନ କମ୍ପାନୀର ଚିତ୍ର ଆଙ୍କିବାରେ । ସେଇଟା ଥିଲା ପେଷା । କିନ୍ତୁ ତାଙ୍କୁ ଦେଖାଯାଏ ଶାନ୍ତି ପାଇଁ ସମାବେଶରେ, ଭାରତୀୟ ଗଣନାଟ୍ୟ ସଂଘର କାର୍ଯ୍ୟକ୍ରମରେ । ସେଇଟା ଥିଲା ନିଶା । ସତ୍ୟଜିତ୍ ରାୟ ଚଳଚ୍ଚିତ୍ର ଜଗତକୁ ଆସିଲେ ମାତ୍ର ୧୯୫୪/୫୫ ମସିହାରେ । ଆକସ୍ମିକ ଭାବରେ । ଚିତ୍ର ଆଙ୍କିବା, ଗଳ୍ପ ଲେଖିବା, ପିଲାଙ୍କ ପାଇଁ ଲେଖିବା ଥିଲା ତାଙ୍କର କାର୍ଯ୍ୟ ଏବଂ ଜୀବିକା । ସତ୍ୟଜିତ୍ ରାୟ ସେଇ ଚିତ୍ର ଆଙ୍କିବାରେ, ଗଳ୍ପ ଲେଖିବାରେ ମଧ୍ୟ ସାଫଲ୍ୟ ଅର୍ଜନ କରିଥିଲେ । ପରେ ପ୍ରତିଷ୍ଠା ଆସିଛି । ସାଫଲ୍ୟ ଆସିଛି ବିପୁଳ ଭାବରେ । କିନ୍ତୁ ସତ୍ୟଜିତ୍ ରାୟ ଭୁଲି ନାହାନ୍ତି ପୁରୁଣା ଦିନକୁ, ପୁରୁଣା କମିଟ୍‌ମେଣ୍ଟକୁ । ବାପାଙ୍କଦ୍ୱାରା ପ୍ରତିଷ୍ଠିତ ଶିଶୁ ପତ୍ରିକା 'ସନ୍ଦେଶ'କୁ ପୁଣି ଜୀବନ୍ୟାସ ଦେଇଛନ୍ତି । ଚଳଚ୍ଚିତ୍ରର କାର୍ଯ୍ୟବ୍ୟସ୍ତତା ଭିତରେ ସେ ଗଳ୍ପ ଲେଖିବା ବନ୍ଦ କରି

କରିଥିଲେ, ସନ୍ଦେଶ ପତ୍ରିକାର ସମ୍ପାଦନା ବୁଲୁଥିଲା । ସେଇଯୋଗୁଁ ସେ ଚୌକିରେ ବସି ରହୁଥିଲେ ଦିନକୁ ବାର ଘଣ୍ଟାରୁ ବେଶି ସମୟ ।

ସତ୍ୟଜିତ୍ ରାୟଙ୍କର ପୂର୍ବକାର୍ଯ୍ୟ ତାଙ୍କୁ ସାହାଯ୍ୟ କରିଥିଲା ସଫଳ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ । ସେ ନିଜେ ସିନାରିଓ, ସଂଳାପ ରଚନା କରୁଥିଲେ, ଅନେକ କ୍ଷେତ୍ରରେ ସଙ୍ଗୀତ ରଚନା କରୁଥିଲେ ଏବଂ ସଙ୍ଗୀତ ନିର୍ଦ୍ଦେଶନା ଦେଉଥିଲେ ମଧ୍ୟ କେତେକ ଚଳଚ୍ଚିତ୍ରରେ । ଚଳଚ୍ଚିତ୍ରକୁ ସମ୍ପୂର୍ଣ୍ଣ ଏବଂ ପୂର୍ଣ୍ଣାଙ୍ଗ କରିବା ପାଇଁ ତାଙ୍କର ଅବଦାନ ଚଳଚ୍ଚିତ୍ରର ସବୁ ବିଭାଗକୁ ପରିବ୍ୟାପ୍ତ ହେଉଥିଲା । ସତ୍ୟଜିତ୍ ରାୟଙ୍କର ଚଳଚ୍ଚିତ୍ର ନ ଦେଖିଥିବା ଅର୍ଥ ସୂର୍ଯ୍ୟ ଚନ୍ଦ୍ରକୁ ନ ଦେଖିବା ସହିତ ସମାନ, ପ୍ରସିଦ୍ଧ ଜାପାନୀ ନିର୍ଦ୍ଦେଶକଙ୍କ ଏଇ ଥିଲା ମତ । ସତ୍ୟଜିତ୍ ରାୟ ବେଳେ ବେଳେ ଆସୁଥିଲେ ଗୋପାଳପୁର ପାମ୍ ବିଚ୍ ହୋଟେଲକୁ । ଏକାନ୍ତରେ ଲେଖୁଥିଲେ ତାଙ୍କର ଚଳଚ୍ଚିତ୍ରର ସଂଳାପ । ପ୍ରତ୍ୟେକ ଦୃଶ୍ୟକୁ ସେ ଟିପି ରଖୁଥିଲେ ଚିତ୍ରରେ, ଟିକିନିଖି କରି ।

ସତ୍ୟଜିତ୍ ରାୟଙ୍କର ପ୍ରଥମ ଚଳଚ୍ଚିତ୍ର ପଥେର ପାଞ୍ଚାଲି । ପ୍ରସିଦ୍ଧ ଲେଖକ ବିଭୂତି ବନ୍ଦୋପାଧ୍ୟାୟଙ୍କ ଉପନ୍ୟାସ ଉପରେ ରଚିତ । ସତ୍ୟଜିତ୍ ରାୟ ଥିଲେ ବାମପନ୍ଥୀ । ଅର୍ଥ ପାଇବା ପାଇଁ ତାଙ୍କୁ ଆପଣାର ସ୍ତ୍ରୀର ଗହଣା ବନ୍ଧକ ଦେବାକୁ ପଡ଼ିଥିଲା । ବଙ୍ଗଳାର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନ୍‌ଚନ୍ଦ୍ର ରାୟଙ୍କର ସାହାଯ୍ୟ ନେବାକୁ ପଡ଼ିଥିଲା । ନିଜର ଜୀବନୀ ଲେଖି ଦେବାକୁ ପଡ଼ିଥିଲା । ଆଜି ସେଇ ଜୀବନୀ ଜାତୀୟ ସମ୍ପତ୍ତିରେ ପରିଣତ ହେବାକୁ ଯାଉଛି । ମୁଖ୍ୟମନ୍ତ୍ରୀ ବିଧାନ୍‌ଚନ୍ଦ୍ର ରାୟ ସାହାଯ୍ୟ କରିଥିଲେ ଏକ ପାରିବାରିକ ପ୍ରସଙ୍ଗରେ । ଏହି ସାହାଯ୍ୟ ବିରୋଧ ମଧ୍ୟ ଲାଭ କରିଥିଲା ତତ୍‌କାଳୀନ କେତେକ ପ୍ରସିଦ୍ଧ ନେତାଙ୍କଠାରୁ । ଏବଂ ସତ୍ୟଜିତ୍ ରାୟ ଅରଣ୍ୟର ଦିବାରାତ୍ରି ଚଳଚ୍ଚିତ୍ରରେ ଏକ ସଟଲ୍ ସାଟାୟାର୍ କରିଛନ୍ତି ସେମାନଙ୍କୁ ।

ସତ୍ୟଜିତ୍ ରାୟ ଆପଣାର ବନ୍ଧୁଗହଣରେ ବେଶ୍ ହ୍ୟୁମରସ୍ । କିନ୍ତୁ ସାଧାରଣତଃ ଜୀବନରେ ସେ ଏକ ଉଇଥ୍‌ଡ୍ରନ୍ ମଣିଷ । ସାଧାରଣତଃ ସଭା ସମିତିରେ ଭାଷଣ ଦେବାକୁ ସେ କୁଣ୍ଠିତ । ପ୍ରାୟ ଯାଆନ୍ତି ନାହିଁ । ଚଳଚ୍ଚିତ୍ର ବା ଶାନ୍ତି ଏଇ ଦୁଇ କାର୍ଯ୍ୟକ୍ରମ ଛଡ଼ା ଅନ୍ୟତ୍ର ତାଙ୍କୁ ଦେଖିବାକୁ ମିଳେନା । ସେଇଯୋଗୁଁ ଅନେକ ସମୟରେ ସେ ବେଶ୍ ମିସ୍‌ଅଣ୍ଡରଷ୍ଟୁଡ୍ ବା ଭୁଲ୍‌ବୁଝାର ସମ୍ମୁଖୀନ ହୁଅନ୍ତି । କିନ୍ତୁ ଜୀବନର କଠୋର ସତ୍ୟ ତାଙ୍କ ପାଇଁ ବେଶ୍ ପ୍ରକଟିତ । "କାଞ୍ଚନଜଙ୍ଘାର ଏଇ ରୋମାଣ୍ଟିକ ପରିବେଶରେ ତମର ମନେ ହେବ ଯେ ପ୍ରେମ ସବୁଠାରୁ ବଡ଼, କିନ୍ତୁ କଲିକତା ଫେରି ତମେ ଯେତେବେଳେ ଦେଖିବ ଯେ ପ୍ରେମଠାରୁ ଆଉ ଗୋଟାଏ ବଡ଼ ଜିନିଷ ଅଛି ଏବଂ ସେଇଟା ହେଉଛି ସିକ୍ୟୁରିଟି (ନିରାପତ୍ତା) । ଆଉରି ମଧ୍ୟ ଦେଖିବ ଯେ ଏଇ ସିକ୍ୟୁରିଟି ହେଇହିଁ ପ୍ରେମ କରିବା ଚଳିବ, ତା'ବିନା ପ୍ରେମ ଚଳିବ ନାହିଁ,

ସେତେବେଳେ ମୋତେ ଖୋଜିବ । ସେପର୍ଯ୍ୟନ୍ତ ଗୁଡ଼୍‌ବାଇ ।" କାଞ୍ଚନଜଙ୍ଘା ଚଳଚ୍ଚିତ୍ରରେ ଏଇ ହେଉଛି ବିଜନେସ୍ ଏକଜିକ୍ୟୁଟିଭର ବକ୍ତବ୍ୟ ଆଦର୍ଶବାଦୀ ତରୁଣୀ ପାଇଁ । ସତ୍ୟଜିତ୍ ରାୟଙ୍କର ସମାଜ ପ୍ରତି ସାଟାୟାର୍ ଶାଣିତ କିନ୍ତୁ ସଟଲ୍ । ସେଇଯୋଗୁଁ ତାଙ୍କର ଚଳଚ୍ଚିତ୍ର ହୁଏତ ଖୁବ୍ "ପପୁଲାର୍" ନୁହେଁ । କିନ୍ତୁ ତାଙ୍କର ସମ୍ମାନ ଆନ୍ତର୍ଜାତିକ । ଲଣ୍ଡନର ଏକ ପ୍ରେକ୍ଷାଳୟରେ ତାଙ୍କର ଚଳଚ୍ଚିତ୍ର ବର୍ଷତମାମ ଚାଲେ । ଋଷଠାରୁ ଆମେରିକା, ଜାପାନ ଠାରୁ ଫ୍ରାନ୍ସ ତାଙ୍କର ଚଳଚ୍ଚିତ୍ର ଆଦୃତ । କାରଣ ତାଙ୍କର ଚଳଚ୍ଚିତ୍ରରେ ଭାଷା କମ୍, ସେତିକି ତାହା ଶାଣିତ, ତୀବ୍ର ଏବଂ ସଟଲ୍ ।

ଜୀବନର ବହୁ ବିଭବକୁ ତାଙ୍କର ଖ୍ୟାତି ପରିବ୍ୟାପ୍ତ । ଏବଂ ସବୁଥିରେ ତାଙ୍କର ସାଫଲ୍ୟ ପ୍ରଚୁର । ଜୀବନର ଅପରାହ୍ଣରେ ତାଙ୍କ ଉପରେ ସମ୍ମାନ ଅଜାଡ଼ି ହୋଇ ପଡ଼ୁଛି । ଅସ୍କାର, ଭାରତରତ୍ନ, ଫରାସୀ ଦେଶର ସର୍ବଶ୍ରେଷ୍ଠ ସମ୍ମାନ, ବିଭିନ୍ନ ଚଳଚ୍ଚିତ୍ର ଉତ୍ସବରେ ପ୍ରାଇଜ୍ । କିନ୍ତୁ ତାଙ୍କର ସବୁଠାରୁ ବଡ଼ ସାଫଲ୍ୟ ହେଉଛି ମଣିଷ, ତାଙ୍କର ଅପୁ । ତାହାହିଁ ତାଙ୍କୁ ଅମର କରି ରଖିବ ଚିରକାଳ ମହାକାଳ ବକ୍ଷରେ ଟୋପାଏ ଲୁହ ପରି ।



# ଗଲେଣି ତୋ ସାଙ୍ଗରୁ ଯେତେକ ଜନ

ସବୁ ରହିଗଲା ପଛରେ । ସ୍ତ୍ରୀ, ପୁତ୍ର, କନ୍ୟା, ଜାମାତା, ଗୃହ, ବନ୍ଧୁ, ସହଯୋଦ୍ଧା ସମସ୍ତେ ରହିଗଲେ । ଅମାନିଆ ଥିଲେ ସେ ପିଲା ଦିନୁ । ପାହାଡ଼ ବୋଲି ଆପଣାକୁ ଗର୍ବିତ ଭାବରେ ସମ୍ବୋଧିତ କରୁଥିଲେ ସେ । ସେଇ ଅମାନିଆଁ ଦୁର୍ଦ୍ଦମନୀୟ ସଦାନନ୍ଦ ମହାନ୍ତି ସମସ୍ତଙ୍କୁ ଛାଡ଼ି ଛୁଟି ଚାଲିଲେ ଦୂରକୁ, ବହୁଦୂରକୁ । ସେଇଠାରୁ ସେ ଆଉ ଫେରିବେ ନାହିଁ । ସେ ଏଇମିତି ଛୁଟି ଆସିଥିଲେ ଜାତୀୟ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଏବଂ ସମାଜବାଦୀ ଆନ୍ଦୋଳନକୁ । ତାଙ୍କର ଗତିବେଗ ସମସ୍ତଙ୍କୁ ଆଚମ୍ବିତ କରିଥିଲା ମିତ୍ର ଏବଂ ଶତ୍ରୁ ଉଭୟଙ୍କୁ । ଚଳିତ ଶତାବ୍ଦୀର ଚତୁର୍ଥ ଦଶକରେ ଯେଉଁ ବାଳକ ଖଲ୍ଲିକୋଟ କଲେଜରେ ଆପଣାର ବହି ବସ୍ତାନି ବାନ୍ଧି ସ୍ୱାଧୀନତା ସଂଗ୍ରାମକୁ ଡେଇଁ ପଡ଼ିଥିଲା ସେ ଯେପରି ଆଉ ପଛକୁ ଫେରି ଅନେଇ ନ ଥିଲା, ଆଜି ଜୀବନରୁ ମୃତ୍ୟୁକୁ ମଧ୍ୟ ସେ ସେଇମିତି ଛୁଟି ଚାଲିଥିଲା ଏବଂ ପଛକୁ ଫେରି ଅନେଇଲା ନାହିଁ । ଦୁର୍ଦ୍ଦମ, ଦୁର୍ଦ୍ଦମନୀୟ ସଦାନନ୍ଦ ମହାନ୍ତିଙ୍କର ଦୀର୍ଘ ଶୀତଳ ଦେହ ପଡ଼ି ରହିଛି ଡାକ୍ତରଖାନାର ଖଟ ଉପରେ । ନରସିଂହ ତ୍ରିପାଠୀ ଆଖି ପୋଛୁଛନ୍ତି । ପୋଛୁଛନ୍ତି ରାଜୁ ପାଣିଗ୍ରାହୀ, ଖବର ପାଇ ଦୌଡ଼ିଛନ୍ତି ପିଲାଦିନର ବନ୍ଧୁ ବି. କେ. ପି. ନେତା ହରିହର ବାହିନୀପତି ରଥ ।

ସ୍ତ୍ରୀ ଡେଇଁ ମାରୁଛି, ଲୁହର ଧାରୁକା ଛୁଟୁଛି । ଏଇ ଦେହ, ଯାହା କାହାକୁ ମାନି ନ ଥିଲା ସେଇ ଦେହ ମୃତ୍ୟୁ ପାଖରେ ପୁନା ପୁଅ ପରି ଶୋଇ ପଡ଼ିଛି । ପଚାଶ ବର୍ଷର କଠୋର ପରିଶ୍ରମ । ଜେଲଖାନା, ଅନଶନ, ଲାଠି, ଉପବାସ, ପଦଯାତ୍ରା । ସବୁଯାକ କ୍ଲାନ୍ତି କଣ ଥିଲା ଠୁଳ ହୋଇ ? ସଦାନନ୍ଦ ମହାନ୍ତି ବ୍ରହ୍ମପୁର ସହରରେ ମେଢ଼ୁ ଭାବରେ ପରିଚିତ ଥିଲେ । ବନ୍ଧୁ ପ୍ରତି ଯେମିତି ଉଦାର, ନମନୀୟ, ଶତ୍ରୁପାଖରେ ସେମିତି କଠୋର, ସାଲିସହୀନ । ସଦାନନ୍ଦ ମହାନ୍ତିଙ୍କର ଯୁକ୍ତି ଥିଲା ଶାଣିତ । ଆପଣାର ପ୍ରଚଣ୍ଡ ବାଗ୍ମିତା ତାଙ୍କର ଶାଣିତ ଯୁକ୍ତିକୁ ରସାଣିତ କରି ପାରିଥିଲା । ବନ୍ଧୁତା ଥିଲା ତାଙ୍କର ଉଦାର, ରାଜନୈତିକ ବନ୍ଧନର ଊର୍ଦ୍ଧ୍ୱରେ । ପାଖରେ ଠିଆ ହୋଇ ମୃତ୍ୟୁକୁ ଦେଖୁଛନ୍ତି 'ବସୁନ୍ଧରା'ର ସମ୍ପାଦିକା ଶୈଳ ବେହେରା । ମୃତ୍ୟୁ କ'ଣ ଏମିତି ଆସେ ? ଯେଉଁ ଦେହ ବ୍ରହ୍ମପୁର ଜେଲରେ ୫୭ ଦିନ ଉପବାସ କରି ଭାଙ୍ଗି ନଥିଲା, ଯେଉଁ ଦେହ ବର୍ଷ ବର୍ଷ ଧରି ବହୁ କଠୋର ପରିଶ୍ରମକୁ ସହ୍ୟ କରି ଆସିଛି ସେ କଣ ଏଇ ମେଲେରିଆର ଆକ୍ରମଣକୁ ରୋକିପାରିବ ନାହିଁ ? କାହାର କେଉଁଠି ଜନ୍ମ ହେବ, କାହାର କେଉଁଠି ହାଦ୍ ହେବ ତାହା କିଏ କହିବ ? ସେ ପ୍ରଶ୍ନର ଅନନ୍ତ, ଚିର

ଅସମାହିତ । ସଦାନନ୍ଦ ମହାନ୍ତି ଯୁବ ସଂଘର ଥିଲେ ଅନ୍ୟତମ ମୁଖ୍ୟ ନାୟକ । ତାଙ୍କର ବଜ୍ରନିର୍ଘୋଷ ଆଜି ବି ଧ୍ୱନିତ ହୁଏ । ଡୁଡୁମା ପାଇଁ ଆନ୍ଦୋଳନ, ୟୁନିୟନ ବ୍ୟାଙ୍କ ବିରୋଧୀ ଆନ୍ଦୋଳନ, ଆଇ. ଏନ. ଏ. ବନ୍ଦୀ ମୁକ୍ତି ଆନ୍ଦୋଳନ । ଗଞ୍ଜାମ ଜିଲାରୁ ତାଙ୍କର କର୍ମ ସାରା ଓଡ଼ିଶାକୁ ସଂପ୍ରସାରିତ ହୁଏ । ସେ କମ୍ୟୁନିଷ୍ଟ ପାର୍ଟି ଓଡ଼ିଶା ଶାଖାର ସାଧାରଣ ସମ୍ପାଦକ ହୁଅନ୍ତି ବହୁ ବର୍ଷ ଧରି ଏବଂ ବିଧାନସଭାରେ କବିସୂର୍ଯ୍ୟନଗରକୁ ପ୍ରତିନିଧିତ୍ୱ କରନ୍ତି ମଧ୍ୟ ବହୁଦିନ ।

ରାଜନୀତି ଏକ ପଶାପାଲି । ଏଇ ପଶାପାଲିରେ ସଦାନନ୍ଦ ମହାନ୍ତି ଥିଲେ ଜଣେ ବିଚକ୍ଷଣ ଖେଳାଳୀ । ଏକ ସମୟରେ ଓଡ଼ିଶାର ରାଜନୀତିରେ ତାଙ୍କର ପ୍ରଭାବ ଥିଲା ପ୍ରଭୂତ । ସରକାରୀ ଏବଂ ବେସରକାରୀ ଉଭୟ ମହଲରେ ତାଙ୍କର ପ୍ରଚଣ୍ଡ ପ୍ରଭାବକୁ ସେ ଆପଣାର ପାର୍ଟି ଏବଂ ସହଯୋଗୀମାନଙ୍କ ପାଇଁ ଆପଣାର ଜନ୍ମମାଟି ଏବଂ ତାହାର ସନ୍ତାନମାନଙ୍କ ପାଇଁ ବିନିଯୋଗ କରି ଯାଇଛନ୍ତି ।

କିନ୍ତୁ ପଶାପାଲିରେ ବାଜି କଣ ସବୁବେଳେ ଠିକ୍ ପଡ଼େ ? ନାଠି କ'ଣ ସବୁବେଳେ ବୋଲ ମାନି ଗଡ଼ିଯାଏ ? ସଦାନନ୍ଦ ମହାନ୍ତି ଅସୁସ୍ଥ ହୋଇ ଉଠିଲେଣି । ଦେହକୁ ବହୁମୂତ୍ର, ରକ୍ତଚାପ, ହୃଦରୋଗ ଗ୍ରାସ କରି ଆସୁଛି । ଚିକିତ୍ସା ହୋ'ଇଛି କଟକ-ଠାରୁ ଦିଲ୍ଲୀ, ମାନ୍ଦ୍ରାଜଠାରୁ ମସ୍କୋ । କିନ୍ତୁ ଦେହ ଯେତେବେଳେ ଆଉ ବୋ'ଲ ନ ମାନିବାକୁ ଆରମ୍ଭ କରିବ ସେ କଣ ଡାକ୍ତର ନାଁ ଔଷଧ କିଛି ମାନିବ ? ସଦାନନ୍ଦ-ବାବୁଙ୍କର ପଶାପାଲିର ଡାକ, ଦେହ କିଛି ଆଉ ବୋଲ ମାନିଲା ନାହିଁ । ସେ ଧୀରେ ଧୀରେ ଆପଣାକୁ ଅପସରେଇ ନେଇଗଲେ ରାଜନୈତିକ ମଞ୍ଚପୃଷ୍ଠରୁ ।

ସବୁବେଳେ ଉଷ୍ମତା ଥିଲା ତାଙ୍କର ସହଜାତ ଗୁଣ । ବିପିନ ବିହାରୀ ରଥ ସେ କଥା ସ୍ମରଣ କରି ଯେମିତି ଆଖିରୁ ଲୁହ ପୋଛୁଛନ୍ତି, ଶୈଳ, ପ୍ରଭା ସେମିତି ସ୍ମରଣ କରି ହତବାକ୍ ହୋଇ ଯାଇଛନ୍ତି । ଏବେ ଆସିଥିଲେ ସେ ମୋତେ ଦେଖିବା ପାଇଁ ଅସ୍ତ୍ରୋପଚାରର ଖବର ଶୁଣି ଆଉ ମୁଁ ତାଙ୍କୁ ଦେଖିବାକୁ ଗଲି କାଲି ସନ୍ଧ୍ୟାରେ ? କେତେ ତଫାତ୍ ? କିନ୍ତୁ ତାହାହିଁ ସତ୍ୟ । ଭୁବନେଶ୍ୱର ଡାକ୍ତରଖାନାରୁ କଟକ ଆସିଛନ୍ତି ଚିକିତ୍ସା ପାଇଁ ସେଠା ଡାକ୍ତରଖାନା ଖୋଜି କଟକରେ ପହଞ୍ଚିଲାକ୍ଷଣି ପ୍ରଥମ ପ୍ରଶ୍ନ ପ୍ରଧାନମନ୍ତ୍ରୀ ଆସିଲେ ନାହିଁ ଲୁହେଁ ? କଣ ଚିନ୍ତା ସେଥିପାଇଁ ? ବହି ହେଲା ମୁଖ୍ୟ । ସହସ୍ର ବର୍ଷ ହେଉଛି ମୁଖ୍ୟ । ବହି କିମିତି ହୋଇଛି, ଜଷ୍ଟିସ ମହାପାତ୍ରଙ୍କୁ କହିବି ମୋତେ ଦେବେ ପଢ଼ିବା ପାଇଁ ।

ସଦାନନ୍ଦ ଆଉ ନାହାନ୍ତି । ଆଉ ଏକ ସହସ୍ର ବର୍ଷ ଜନମାନସରେ ରହିବେକି ନାହିଁ କିଏ କହିବ ? କିନ୍ତୁ ଏଇ ମାଟି, ଏଇ ଯୁବକ ତାଙ୍କୁ ନିଶ୍ଚୟ ହେଜିବ ବହୁକାଳ ଧରି ।



# ସାବୁରେ ଓକିତୋଙ୍କର ପରଲୋକରେ

କିଛି ଦିନ ତଳେ ଡକ୍ଟର ସାବୁରେ ଓକିତୋଙ୍କର ପରଲୋକ ହୋଇଯାଇଛି । ତାଙ୍କର ପରଲୋକରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସମ୍ବଳିତ ଅର୍ଥନୈତିକ ଯୋଜନା ଯୁଗର ପରିସମାପ୍ତି ଘଟିଛି । ଏହା ତାଙ୍କର ଜନ୍ମଭୂମି ଜାପାନ ପାଇଁ ଯେପରି ପ୍ରଯୁଜ୍ୟ ସାରା ପୃଥିବୀ ପାଇଁ ସେଇପରି ପ୍ରଯୁଜ୍ୟ । କାରଣ ଆପଣା ଦେଶକୁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବା ସ୍ତରରେ ପହଞ୍ଚାଇବାର ଦୁର୍ବାର ଅଭିଳାଷାରେ ଜୀବନ ବିତାଇଥିବା ଅର୍ଥନୀତିବିଦ୍‌ମାନଙ୍କ ମଧ୍ୟରେ ସେ ଅନନ୍ୟ ସାଧାରଣ । ଏବଂ ସେଇ କାରଣରୁ ହିଁ ତାଙ୍କର ତିରୋଧାନ ପରେ ତାଙ୍କର ଜୀବନୀ ଓ କର୍ମ ଅନୁସନ୍ଧାନ ଅନୁଧ୍ୟାନ କରିବାର ସମୟ ଆସିଛି । ସାରା ପୃଥିବୀରେ ଯିଏ ଯେଉଁଠି ଆପଣା ଦେଶର ଅର୍ଥନୈତିକ ବିକାଶ ପାଇଁ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ପାଇଁ ସାବୁରେ ଓକିତାଙ୍କର ଜୀବନୀ ଓ ମର୍ମ ଜାଣିବା ଏକାନ୍ତ ଆବଶ୍ୟକ ।

ଜାପାନର ଆନ୍ତର୍ଜାତିକ ବାଣିଜ୍ୟ ଓ ଶିଳ୍ପ ବିଭାଗର ଯୋଜନା ଡିଭିଜନ୍‌ର ସେ ଡାଇରେକ୍ଟର ଥିଲେ । ମାତ୍ର ଦଶ ବର୍ଷ ଭିତରେ ଜାତୀୟ ଉତ୍ପାଦନକୁ ଦୁଇଗୁଣ କରିବା ଯୋଜନାର ସେ ହେଉଛନ୍ତି ବିଧାତା । ଅର୍ଥନୈତିକ ଇତିହାସରେ ଏହା ଯୁଗାନ୍ତକାରୀ । ଜାପାନର ବିକାଶହାର ବା ଗ୍ରୋଥ୍ ରେଟ୍ ହାରାହାରି ଶତକଡ଼ା ଦଶ ହେଲା । ବହୁ ଯୁଗର ଐତିହାସିକ କଳନାରୁ ମଧ୍ୟ ଏହା ସାଢ଼େ ତିନିଗୁଣରୁ ବେଶି । ୧୯୫୬ ରୁ ୧୯୬୬ । ଏହି ଦଶନ୍ଧିରେ ଜାପାନର ଜାତୀୟ ଉତ୍ପାଦନ ଦୁଇ ଗୁଣ ପରିବର୍ତ୍ତିରେ ତିନି ଗୁଣ ହେଲା । ୧୯୬୬-୭୬ ରେ ଦୁଇ ଗୁଣ ଏବଂ ୧୯୭୬-୮୬ ରେ ପୁଣି ଦୁଇ ଗୁଣ ହେଲା । ଦେଖାଗଲା ଯେ ମାତ୍ର ତିରିଶ ବର୍ଷ ଭିତରେ ଜାପାନର ଜାତୀୟ ଉତ୍ପାଦନ ବାର ଗୁଣ ବୃଦ୍ଧି ପାଇଛି । ବାର ଗୁଣ ଉତ୍ପାଦନ ବୃଦ୍ଧି ପାଇଁ ଇଂଲଣ୍ଡକୁ ଲାଗିଗଲା ଶହେ ବର୍ଷରୁ ବେଶି । ଏହି ଅଭୂତପୂର୍ବ ପରିବର୍ତ୍ତନର ବିଧାତା ହେଉଛନ୍ତି ଡକ୍ଟର ସାବୁରେ ଓକିତୋ ।

ଓକିତୋଙ୍କର ପରିକଳ୍ପନାକୁ ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ହିରୋସିମା ଓ ନାଗାସାକିରେ ପରମାଣୁ ବୋମା ପଡ଼ିବାର ଅବ୍ୟବହିତ ପରର କଥା । ବୋମାରୁ ରକ୍ଷା ପାଇବା ସେଲଟର ଭିତରେ ବସିଛନ୍ତି ଓକିତୋ ଏବଂ ତାଙ୍କର କିଛି ସହକର୍ମୀ । ଚତୁର୍ଦ୍ଦିଗରେ ଶ୍ମଶାନର ନୀରବତା ଏବଂ ଭୟାବହ ଦୃଶ୍ୟ । ଓକିତୋ ଏବଂ ତାଙ୍କର ସହକର୍ମୀମାନେ ପ୍ରସ୍ତୁତ କରୁଛନ୍ତି ଏହି ଧ୍ୱଂସସ୍ତୂପ ଭିତରୁ ଏକ ନୂତନ ଜାପାନ ଗଢ଼ିବାର ପରିକଳ୍ପନା । ଆମେରିକାନ୍‌ମାନେ ମଧ୍ୟ ଜାପାନର ଭବିଷ୍ୟତ ପାଇଁ ଏକ ଯୋଜନା ପ୍ରସ୍ତୁତ କରିଥିଲେ । କିନ୍ତୁ ତାହା ଥିଲା ଜାତୀୟତାବାଦୀ ଜାପାନୀମାନଙ୍କ ପାଇଁ ନିମ୍ନ ଧରଣର । ତେଣୁ ଓକିତୋ ଆପଣାର ପରିକଳ୍ପନାକୁ ଏପରିକି ଆମେରିକାନ୍‌ମାନଙ୍କଠାରୁ ଗୁପ୍ତ ରଖିଥିଲେ । ବୈଦେଶିକ ଚିନ୍ତାଧାରା ଏବଂ

ଅନ୍ୟମାନଙ୍କଦ୍ୱାରା ପ୍ରସ୍ତାବିତ ପରିକଳ୍ପନା ପରିବର୍ତ୍ତିରେ ଆପଣା ଦେଶ ପାଇଁ ସେ ନିଜେ ନିଜସ୍ୱ ଖସଡ଼ା ପ୍ରସ୍ତୁତ କରିଥିଲେ । ଜାପାନର ଜାତୀୟ ସ୍ୱାର୍ଥ ହିଁ ଥିଲା ତାର ଏକମାତ୍ର ନିସ୍ୱାମକ । ତାହାକୁ ହିଁ ସବାଗରେ ରଖିଥିଲେ ଓକିତୋ ।

ଡକ୍ଟର ଓକିତୋ ମତ ଦେଉଥିଲେ ଆମେରିକା ଜାପାନକୁ ଅଧିକାର କରିଥିବାର ଆଦ୍ୟ କାଳରେ ଜାପାନର ଅଧିକାଂଶ ଅର୍ଥନୀତିଜ୍ଞ ଥିଲେ ବିଶ୍ୱବିଦ୍ୟାଳୟ-ମାନଙ୍କରେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମାର୍କସବାଦୀ । ଜାପାନର ଶ୍ରେଣୀ ବିନ୍ୟାସ ଉପରେ ଏବଂ ଏହାର ପ୍ରସ୍ତାବ ଉପରେ ଜୀବନର ବିଭିନ୍ନ ବିଭାବକୁ ପ୍ରଭାବିତ କରି ( ବା କରି ନ ପାରିବା ହେତୁ ) ପର୍ଲ ହାର୍ବରର ବୋମା ମାଡ଼ ଘଟଣାରେ ପରିଣତ ହେଲା, ତାହା ଉପରେ ସେମାନେ ବିତର୍କରେ ବ୍ୟସ୍ତ ଥିଲେ । ଫଳରେ ଜାପାନର ଅର୍ଥନୈତିକ ପୁନର୍ଗଠନ ପାଇଁ ଖୋଲା ମଇଦାନ ମିଳିଗଲା ଏବଂ ଏହାର କୌଣସି ପ୍ରତିବନ୍ଧକ ରହିଲା ନାହିଁ ।

ଜାପାନ କାହିଁକି ବୈଦେଶିକ ମୂଳଧନ ଖଟାଇବାକୁ ଉତ୍ସାହିତ କଲାନାହିଁ ସେ ସମ୍ପର୍କରେ ଡକ୍ଟର ଓକିତୋଙ୍କର ଅନୁଧ୍ୟାନ ପ୍ରଣିଧାନଯୋଗ୍ୟ । ତାଙ୍କ ମତରେ ସେମାନେ ସବୁ ଥିଲେ ଉଦଗ୍ର ଜାତୀୟତାବାଦୀ । ପୃଥିବୀର ସବୁଠାରୁ ଉନ୍ନତ ଦେଶ ଭାବରେ ଜାପାନକୁ ଗଢ଼ିବା ପାଇଁ ସେମାନଙ୍କର ଥିଲା ଉଦଗ୍ର କାମନା । ଆମେ କିପରି ଜଣେ ବୈଦେଶିକ, ଯେ ଜାପାନୀ ଭାଷାର ବନ୍ଧୁ ବିସର୍ଗ ଜାଣି ନାହିଁ, ତାକୁ ଆମର କୌଣସି ମୁଖ୍ୟ ଶିଳ୍ପର ପରିଚାଳନା ବୋର୍ଡ଼ରେ ସ୍ଥାନ ଦେଇପାରିଥାନ୍ତୁ ? ଆମେ ତ ଖାଲି ଯୋଜନା କରୁଥିଲୁ । ଜାପାନ କିପରି ପୃଥିବୀର ସବୁଠାରୁ ବୃହତ୍ତମ ଶକ୍ତିରେ ପରିଣତ ହେବ, ତାହା ଥିଲା ଆମର ପରିକଳ୍ପନା ।

କାହାଣୀରେ ମଣିଷ ଗଢ଼ା ହୁଏନା, ଦେଶ ତ କେବେ ନୁହେଁ । କିନ୍ତୁ ଏଇ କାହାଣୀ ପ୍ରତିଫଳିତ କରେ ମଣିଷର ଓ ଦେଶର ସ୍ୱପ୍ନକୁ । ରୂପାୟିତ କରେ ସେମାନଙ୍କର କାର୍ଯ୍ୟକୁ । ଭାରତବର୍ଷର ଯେଉଁମାନେ ଜାତୀୟ ଆନ୍ଦୋଳନର ମହାରଥୀମାନଙ୍କର ପରିକଳ୍ପନାକୁ ଦାଦ୍ ଦେଇ ଅର୍ଥନୈତିକ ପ୍ରଗତି ପାଇଁ ହନୁମାନ ଭଳି ଲମ୍ଫ ପ୍ରଦାନ କରିବାକୁ ଚାହୁଁଛନ୍ତି, ସେମାନଙ୍କ ପାଇଁ ଡକ୍ଟର ଓକିତୋ ଏକ ଚେତାବନୀ ।

ଓକିତୋ ଥିଲେ ନରମ, ଭଦ୍ର, ଅମାୟିକ ଏବଂ ବିଜ୍ଞ । କିନ୍ତୁ ସେଇ ନମ୍ରତା ଭିତରେ ତାଙ୍କର ଲୁଚି ରହିଥିଲା ଜ୍ୱଳନ୍ତ ଜାତୀୟ ଗର୍ବ । ତାଙ୍କର ପରଲୋକରେ ପୃଥିବୀ ଏବଂ ଯୋଜନା ଏଭଳି ଏକ କର୍ତ୍ତାକୁ ହରାଇ ବସିଛି, ଯେ ଥିଲେ ପୁଞ୍ଜିବାଦୀ ଦକ୍ଷତା ଏବଂ ସମାଜବାଦୀ ଲକ୍ଷ୍ୟର ଏକ ସଫଳ ସମନ୍ୱୟ । ସବୁ ଦେଶର ଅର୍ଥନୀତିବିଦ୍ ଏବଂ ଯୋଜନାକାରୀମାନଙ୍କ ପାଇଁ ସେ ହୋଇଛନ୍ତି ଆଦର୍ଶ ଏବଂ ଚେତାବନୀ ।



# ତୁମେ ମନେ ପଡ଼ ବନ୍ଧୁ ଆମ

ଫେବୃୟାରୀ ନଅ ତାରିଖ ସନ୍ଧ୍ୟା । ବାମନମୂର୍ତ୍ତି ଆସିଥାଆନ୍ତି ୟୁନିଭର୍ସକୁ ଏକ ବନ୍ଧୁମିଳନରେ ଯୋଗଦେବା ପାଇଁ । ଅଧ୍ୟାପକ ହରମୋହନ ମଲ୍ଲିକଙ୍କର 'ମାଦଳାପାଞ୍ଜିର ଐତିହାସିକ ମୂଲ୍ୟ' ଉପରେ ଭାଷଣ ଶୁଣିବା ପାଇଁ । ସଭାରେ ବିତର୍କ ହେବାର ଥିଲା । ବାମନମୂର୍ତ୍ତି ଅଂଶଗ୍ରହଣ କଲେ ଏବଂ ଆନ୍ଧ୍ର ତଥା କର୍ଣ୍ଣାଟକରେ ନରସିଂହ ସପ୍ତୃଢ ଉପରେ ପ୍ରାମାଣିକ ତଥ୍ୟ ଉପସ୍ଥାପନ କଲେ । କହିଲେ ଯେ ସେ କାଲି ବିଶାଖାପାଟଣା ଯିବେ ଏବଂ ଚେଷ୍ଟା କରିବେ ନୂତନ ତଥ୍ୟ ସଂଗ୍ରହ କରିବା ପାଇଁ । ଆଗରେ ୟୁନିଭର୍ସର ବାର୍ଷିକୋତ୍ସବ ହେଉଛି ଜାଣି ପକେଟରୁ କିଛି ଦାନ ବାହାର କରି କହିଲେ, ଯାହା ଦେବାର କଥା ସାଙ୍ଗେ ସାଙ୍ଗେ ଦେବା ଉଚିତ । କାରଣ କିଏ ଜାଣିଛି କାଲିକି କିଏ ଥିବ କି ନାହିଁ ? ବାମନମୂର୍ତ୍ତି ଯାଇଥିଲେ ବିଶାଖାପାଟଣା । ଦିନେ ସ୍ୱାଧୀନତା ଆନ୍ଦୋଳନର ନିଶା ଲାଗିଥିଲା ସ୍ୱାଧୀନଚେତା ବାମନମୂର୍ତ୍ତିଙ୍କୁ । ପାରଳାଖେମୁଣ୍ଡି କଲେଜରୁ ସେ ବହିଷ୍କୃତ ହୋଇଥିଲେ । ପଢ଼ିବେ କେଉଁଠି ? ବିଶାଖାପାଟଣା କଲେଜରେ ତାଙ୍କୁ ସ୍ଥାନ ମିଳିଥିଲା । କୃତଜ୍ଞତାସ୍ୱରୂପ ସେ ବାପାଙ୍କ ନାମରେ ଏକ ଫାଉଣ୍ଡେସନ ଖୋଲିଥିଲେ ସେଇଠି । ତାହାରି ପ୍ରଥମ ସମାବର୍ତ୍ତନ ଉତ୍ସବ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ସ୍ଥିରିଥିଲେ ସେ ନିଜେ ହେବେ ଏହାର ବକ୍ତା । ଭାରତର ଉପରାଷ୍ଟ୍ରପତି ହେବେ ମୁଖ୍ୟ ଅତିଥି । ପୁରସ୍କାର ବିଜୟୀମାନଙ୍କୁ ଦେଖିବାକୁ ଯାଇଥିଲେ ସେ । ସମୟ ଅପରାହ୍ଣ ୩-୩୦ ମିନିଟ୍ । ସଭାପାଇଁ ଆଉ ଅଳ୍ପ ସମୟ ବାକି । ବାମନମୂର୍ତ୍ତି ସମ୍ପୂର୍ଣ୍ଣ ସୁସ୍ଥ । ହଠାତ୍ ସବୁ ସ୍ଥିର ହୋଇଗଲା । ବାମନମୂର୍ତ୍ତି ଟଳିପଡ଼ିଲେ । ଜୀବନର ଯବନିକା ପଡ଼ିଗଲା । ଏକ ଉଦ୍‌ବେଳିତ ଜୀବନର ପରିସମାପ୍ତି ।

ସେ ଥିଲେ ଛାତ୍ରାବସ୍ଥାରୁ ଉଦ୍‌ବେଳିତ । ଛାତ୍ରାବସ୍ଥାରୁ ହିଁ ସେ ଛିଟିକି ଆସିଥିଲେ ଲୋକଲୋଚନକୁ ଜଣେ ଛାତ୍ରନେତା ଭାବରେ, ଜଣେ ବକ୍ତା ଭାବରେ, ଜଣେ ଅଭିନେତା ଭାବରେ ଏବଂ ଜଣେ କବି ଭାବରେ । ପାରଳା କଲେଜ, ଖଲ୍ଲିକୋଟ କଲେଜ, ବିଶାଖାପାଟଣା କଲେଜ ଏବଂ ପରିଶେଷରେ ରେଭେନ୍‌ସା କଲେଜ । ମାଜିଷ୍ଟ୍ରେଟ ଭାବରେ କାର୍ଯ୍ୟ ଆରମ୍ଭ କରନ୍ତି । କଲେକ୍ଟର ଚିଠି ଲେଖି ପଠାନ୍ତି କୌଣସି ଏକ ଅଭିଯୁକ୍ତ ଆସାମୀକୁ ଜାମିନ ନ ଦେବା ପାଇଁ । କଲେକ୍ଟର ଭାବିଥିଲେ ନୂଆ ମାଜିଷ୍ଟ୍ରେଟ । ନମାନି ଯିବ କୁଆଡ଼େ ? ମାଜିଷ୍ଟ୍ରେଟ ସେ ଚିଠିକୁ ଗୁଣ୍ଡି

ହାଇକୋର୍ଟକୁ ପଠାଇଦେଲେ । ହାଇକୋର୍ଟ ଜିଲ୍ଲାପାଳଙ୍କୁ ଦଣ୍ଡିତ କଲେ କାରାବାସ ଦେଇ କୋର୍ଟ ଉଠିବା ପର୍ଯ୍ୟନ୍ତ । ଚହଳ ପଡ଼ିଗଲା ସବୁଆଡ଼େ । ପୁଣି ଆଉ ଏକ ଜିଲ୍ଲାପାଳଙ୍କ ସହିତ ତାଙ୍କର ସଂଘର୍ଷ ହୁଏ । ଚାକିରି ଛାଡ଼ି ସେ ଓକିଲାତି ଆରମ୍ଭ କରନ୍ତି ଏବଂ ଓକିଲାତି ଲାଇସେନ୍ସ ପାଇଁ ମଧ୍ୟ ତାଙ୍କର ସଂଘର୍ଷ ହୁଏ ମୁଖ୍ୟ ବିଚାରପତିଙ୍କ ସହିତ ।

ଓକିଲାତିରେ ପ୍ରତିଷ୍ଠା ଲାଭ କରନ୍ତି; କିନ୍ତୁ ସମାଜର ବହୁ ବିଭାବ ସହିତ ସେ ଜଡ଼ିତ ହୋଇ ପଡ଼ନ୍ତି । ନ୍ୟାସନାଲ ମ୍ୟୁଜିକ ଆସୋସିଏସନରୁ ଭାରତ ସୋଭିଏଟ ସାଂସ୍କୃତିକ ସମିତି । ହିନ୍ଦୀ ଶିକ୍ଷାଠାରୁ ଆରମ୍ଭ କରି ସ୍ନୁଦଭର୍ସ । କିଛିକାଳ ପାଇଁ ସେ ରାଜନୀତି ସହିତ ମଧ୍ୟ ଜଡ଼ିତ ହୁଅନ୍ତି । ସୋସାଲିଷ୍ଟ ପାର୍ଟିଠାରୁ ଆରମ୍ଭ କରି ଭାରତୀୟ ଜାତୀୟ କଂଗ୍ରେସ । ନିର୍ବାଚନ ମଧ୍ୟ ଲଢ଼ନ୍ତି; କିନ୍ତୁ ପୁଣି ଫେରିଆସନ୍ତି ଓକିଲାତିକୁ ।

ସବୁ ସଂଘର୍ଷ ଭିତରେ କିନ୍ତୁ ତାଙ୍କର ନିଜସ୍ୱ ଜୀବନ ଥିଲା ମେଥଡ଼ିକାଲ । କିନ୍ତୁ ଜୀବନ ଓ ମୃତ୍ୟୁ ତ କିଛି ମେଥଡ଼ ମାନେନା । ଆଗରୁ ହୃଦ୍‌ଯନ୍ତ୍ରର ଗଣ୍ଡଗୋଳ ଆରମ୍ଭ ହୋଇଥିଲା । ଚିକିତ୍ସା ଅସ୍ତ୍ରୋପଚାର ସବୁ ହୋଇଥିଲା, କିନ୍ତୁ ମୃତ୍ୟୁ ତ ସର୍ବଶକ୍ତିମାନ୍ । ତାକୁ ଏଡ଼ିଦେବ କିଏ ? ମଣିଷ, ଇସ୍ ଢ'କଡ଼ାର ପ୍ରାଣୀ ।

ବାମନମୂର୍ତ୍ତି ଆଉ ନାହାନ୍ତି । ଏକ ଉଦ୍‌ବେଳନମୟ ଜୀବନର ପରିସମାପ୍ତି ଘଟିଛି । ମୃତ୍ୟୁ ଆସିଛି ରାଜକୀୟ ଭାବରେ ଆଉ ସେ ତାକୁ ସେଇପରି ରାଜକୀୟ ଭାବରେ ଗ୍ରହଣ କରି ଚାଲିଯାଇଛନ୍ତି ସେଇଠିକୁ, ଯେଉଁଠୁ ଆଉ କେହି ଫେରି ନାହାନ୍ତି ।



# ସ୍ନେହୀ ମଣିଷଟିଏ

ଦେଖାହୁଏ ଅନେକ ଯାଗାରେ । ମୁହଁରେ ସେଇ ସ୍ମିତହାସ୍ୟ । ଭଦ୍ରୋଚିତ ବ୍ୟବହାର । ସୀତାକାନ୍ତ ପଟ୍ଟନାୟକ ପ୍ରତିଷ୍ଠିତ ଆଇନଜୀବୀ । କିନ୍ତୁ ପ୍ରତିଷ୍ଠା ମୁଣ୍ଡକୁ ଚଢ଼ି ନାହିଁ । ଏହାହିଁ ତାଙ୍କୁ ସ୍ମୃତି କରି ରଖିବ ତାଙ୍କର ବହୁ ବନ୍ଧୁଙ୍କ ପାଖରେ । ଆଇନଶାଳା, ପ୍ରତିଷ୍ଠା, କୋଠା ସବୁ ଭୁଲିଯିବ, କିନ୍ତୁ ମଣିଷର ମଣିଷପଣିଆ ରହିଯିବ ସ୍ମୃତି ପଟ୍ଟରେ ।

ଦେଖା ହୋଇଛୁ ସଭା ସମିତିରେ, ବିବାହ, ବ୍ରତ, ଶ୍ରାଦ୍ଧରେ, ଆଲୋଚନା ଚକ୍ରରେ । ନମସ୍କାରର ସେଇ ସସ୍ମିତ ପ୍ରତି-ନମସ୍କାର ଏବଂ ସାଦର ସମ୍ଭାଷଣ ସ୍ମୃତି ହୋଇ ରହିବ । ପଚାରନ୍ତି ଅନେକ କଥା, ବ୍ୟକ୍ତି, ପରିବାର, ସମାଜ, ଦେଶକଥା । ଖାଲି ମାମୁଲି ପ୍ରଶ୍ନ ନୁହେଁ, କେବଳ ସୌଜନ୍ୟ ଦୃଷ୍ଟିରୁ ନୁହେଁ । ଗଭୀର ଆନ୍ତରିକତାର ସହିତ ପ୍ରଶ୍ନ । ମନ ଜଣା କଥା ।

ଖାଲି ଆଇନଜୀବୀ ନଥିଲେ । କେବଳ ପୋଥିର ନିଗଡ଼ ଭିତରେ ବନ୍ଧା ହୋଇ ପଡ଼ି ରହି ନଥିଲେ । ସେମିତି ତ ଅନେକ ଅଛନ୍ତି । କିନ୍ତୁ ତାହାର ଏକ ବ୍ୟତିକ୍ରମ ଥିଲେ ସୀତାକାନ୍ତ ପଟ୍ଟନାୟକ । ସେଇଯୋଗୁଁ ତାଙ୍କୁ ଭେଟ ମିଳେ ଜୀବନର ବିଭିନ୍ନ କ୍ଷେତ୍ରରେ । ସେଇ ସବୁ ସ୍ମୃତି ହାବୁକା ମାରେ ମନରେ । ମନ, ଆଖି ସବୁ ସଜଳ ହୋଇଯାଏ ।

ସୀତାକାନ୍ତ ପଟ୍ଟନାୟକ ଆଉ ନାହାନ୍ତି । ଡାକ୍ତରି ବିଦ୍ୟାର ଅଭୂତପୂର୍ବ ବିକାଶ ଘଟିଛି । ତା' ସତ୍ତ୍ୱେ କ୍ୟାନସର ରୋଗ, ଏହାର ଉତ୍ପତ୍ତିର କାରଣ ବର୍ତ୍ତମାନ ପର୍ଯ୍ୟନ୍ତ ମଣିଷ ଶକ୍ତିର କରାୟତ୍ତ ହୋଇ ରହି ପାରିନାହିଁ । କ୍ୟାନସର ରୋଗ ଶେଷ ପର୍ଯ୍ୟନ୍ତ ମର୍ମନ୍ତୁଦ । ସୀତାକାନ୍ତବାବୁ ସେ ଯନ୍ତ୍ରଣାରୁ ନିଷ୍କୃତି ପାଇଛନ୍ତି ।

ଯିବା ପୂର୍ବରୁ ଦେଖି ହେଲା ନାହିଁ । ବିଳମ୍ବରେ ଖବର ମିଳିଲା । ଗଲାବେଳକୁ ଘର ଖାଲି, ସବୁ ଶୁନ୍‌ଶାନ୍ । ଏକ ନିସ୍ତବ୍ଧତାର ରାଜୁତି । କାଲି କୋଳାହଳ, ଆଜି ଖାଲି । କାଲି ଫୁଲମାଳ, ଆଜିକୁ ବାସି ।

ସୀତାକାନ୍ତବାବୁ ଆଉ ନାହାନ୍ତି ।



# ଲଙ୍ଗଳା ସେ ହରିହର

"ଲଙ୍ଗଳା ସେ ହରିହର,
ଗୋଟାପାକ ଲଙ୍ଗଳାର"

ଏଇପରି ଗୀତ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଗ୍ରାମରେ ଧ୍ୱନିତ ହୁଏ । ଗାଁ ଗାଁ ଘର ଘର ଖୋଜାପଡ଼ିଥିଲା ହରିହରଙ୍କୁ । ପୁଲିସର ବୁଟ୍ ଏବଂ ବେୟୋନେଟ୍ ତାର କରାମତି ଦେଖାଉଥିଲା । ଦିନପାକ ନାଲିଆଖିର ଉତ୍ପାତ । ତଥାପି ହରିହର ଦାସଙ୍କ ପତ୍ତା ମିଳେନା ପୁଲିସକୁ । ଦିନେ ଆସିକା ସହରର ଉପାନ୍ତରେ ପୁରୁଣା କାଳର ଏକ ଚିନି କାରଖାନା ରହିଛି । ସେଇଠି ହଠାତ୍ ପୁଲିସ ଠାବକଲେ ହରିହର ଦାସଙ୍କୁ । ରାସ୍ତା କଡ଼ର ଏକ ଗୁହା ଦୋକାନରେ ସେ ଗୁହା ପିଉଛନ୍ତି । ଦେହରେ ମାତ୍ର ଅଣ୍ଟା ଧୋତିଟିଏ । ଦେହ ମୁକୁଳା । ଦୁଇଜଣ ପୁଲିସ ତାଙ୍କୁ ଧରି ପକାଇଲେ । ଆଉ ଦୁଇଜଣ ଦୌଡ଼ିଲେ ଆସିକା ପୁଲିସ ଷ୍ଟେସନକୁ । ଯିବ କୁଆଡ଼େ ପଳାତକ । ଭିଡ଼ା ଓଟରି ଲାଗିଲା । ହରିହର ଦାସ ଆପଣାର ଶାରୀରିକ ଶକ୍ତିରେ ନିଜକୁ ମୁକ୍ତ କରିନେଲେ ପୁଲିସର ବାହୁଫାଶରୁ । କିନ୍ତୁ ଧୋତିକୁ ଜାବୋଡ଼ି ଧରିଛନ୍ତି ପୁଲିସ । ସେମାନଙ୍କ ଧାରଣା, ଧୋତି ଛାଡ଼ି ଯିବ କୁଆଡ଼େ ? ହଠାତ୍ ଦେଖାଗଲା ହରିହର ଦାସ ଧୋତିଟିକୁ ପୁଲିସ ହାତରେ ସମର୍ପଣ କରିଦେଇ, ବିଲ୍କୁଲ ଉଲଗ୍ନ ହୋଇ ରାସ୍ତାରେ ଦୌଡ଼ି ଚାଲିଗଲେ । ହଜାର ହଜାର ଲୋକ ଠିଆହୋଇ ଏ ଦୃଶ୍ୟ ଦେଖୁଛନ୍ତି । ହୁଲହୁଲି ପଡ଼ୁଛି । ଲୋକେ ଗାମୁଛା, ଚାଦର ଫିଙ୍ଗି ଦେଉଛନ୍ତି ହରିହର ଦାସଙ୍କ ଉପରକୁ । ପୁଲିସ ଅନେଇଛି ତଟସ୍ଥ ହୋଇ । ଏହା କ'ଣ ସମ୍ଭବ ?

ସେ ପିଲାଦିନେ ଅତ୍ୟନ୍ତ ଗେଡ଼ୁ ଥିଲେ । ତାଙ୍କର ଦୁଷ୍କାମୀ ବହୁ ଅଞ୍ଚଳକୁ ବ୍ୟାପିଥିଲା । କିନ୍ତୁ ସ୍ୱାଧୀନତା ଆନ୍ଦୋଳନର କାଉଁରୀ ସ୍ପର୍ଶରେ ରତ୍ନାକର ପାଲଟିଲା ବାଲ୍ମୀକି । ହରିହର ଦାସ ନିଜର ଜୀବନୀ ଡାକୁଛନ୍ତି । ସେଇଆ ହିଁ ପ୍ରକୃତରେ ତାଙ୍କର ଜୀବନ । ଗେଡ଼ୁ, ଗଉଡ଼, ହରିହର ଦାସଙ୍କର ଶିକ୍ଷାଦୀକ୍ଷା ଥିଲା ବହୁତ କମ୍ । ଜୀବନର ଚୁହାକାଳରେ ହିଁ ସେ ପଢ଼ିଛନ୍ତି ସବୁପାଠ । ପାଲଟିଛନ୍ତି ସ୍ୱାଧୀନତା ସଂଗ୍ରାମୀ । ବ୍ରହ୍ମପୁର ଜେଲରେ ବହୁବର୍ଷ କଟିଛି । ରାଧାନାଥ ରଥ, ନବକୃଷ୍ଣ ଚୌଧୁରୀ, ୀରକିଶୋର ଦାସ, ମୋହନ ଦାସ ପ୍ରମୁଖଙ୍କର ସହଯୋଗିତ୍ୱକୁ ସ୍ମରଣ କରନ୍ତି ଗର୍ବର ସହିତ ।

ସ୍ୱାଧୀନତା ଆସିବ; କିନ୍ତୁ ସେ ସ୍ୱାଧୀନତା କାହାପାଇଁ ? କ'ଣ ହେବ ତାର ସ୍ୱରୂପ । ହରିହର ଦାସ ବ୍ରହ୍ମପୁର ଜେଲରେ କଏଦୀ । ଦ୍ୱିତୀୟ ମହାଯୁଦ୍ଧ ସମୟ । ନାଜୀସୈନ୍ୟବାହିନୀ ସମଗ୍ର ୟୁରୋପକୁ ପଦାନତ କରି ଅବରୁଦ୍ଧ କରିଛନ୍ତି ଷ୍ଟାଲିନଗ୍ରାଡ଼ ସହରକୁ । ସମଗ୍ର ପୃଥିବୀ ଅନେଇ ରହିଛି । ଏଇଠାରୁ ହିଁ ଫେରିବାକୁ ପଡ଼ିବ ନାଜୀ ସୈନ୍ୟବାହିନୀଙ୍କୁ; ନଚେତ୍ ସାରାପୃଥିବୀ ବୁଡ଼ିଯିବ ଗଭୀର ଅନ୍ଧକାର ଭିତରେ । ସେ ସଂଗ୍ରାମର ପଟାନ୍ତର ନାହିଁ । ପ୍ରତ୍ୟେକ ଇଞ୍ଚ ଭୂମି ପାଇଁ ଚାଲିଛି ସଂଗ୍ରାମ । ନୂତନ ସମାଜବାଦୀ ରାଷ୍ଟ୍ରର ମହାଯୋଦ୍ଧାମାନେ ଆପଣାର ଲକ୍ଷ ଲକ୍ଷ ସନ୍ତାନଙ୍କର ପ୍ରାଣ ବଳିମୂଲ୍ୟରେ ରକ୍ଷାକଲେ ପୃଥିବୀକୁ । ବହୁ ଦେଶର ନୂଆ ସ୍ୱାଧୀନତା ସଂଗ୍ରାମୀ ଆକୃଷ୍ଟ ହେଲେ ସମାଜବାଦ ପ୍ରତି । ହରିହର ଦାସ ସେଥିରୁ ମୁକ୍ତ ରହିପାରିଲେ ନାହିଁ । କାରାଗାର ଭିତରୁ ସ୍ୱାଧୀନତା ସଂଗ୍ରାମୀ ହରିହର ଦାସ ଫେରିଲେ ସମାଜବାଦୀ ହୋଇ ।

ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ସ୍ୱାଧୀନତା ଆସିଛି । ଏହା ଆସିବା ଉଚିତ ନିପୀଡ଼ିତ ମଣିଷ ପାଇଁ । ତାହାହିଁ ହେବ ସ୍ୱାଧୀନତାର ପ୍ରକୃତ ସ୍ୱାଦ । ଦ୍ୱିତୀୟ ସ୍ୱାଧୀନତା ଆରମ୍ଭ ହେଲା । ହରିହର ଦାସ ପୁଣି ବନ୍ଦୀହେଲେ କାରାଗାରରେ । ପୁଣି ସାଜିଲେ ପଳାତକ । ବ୍ରହ୍ମପୁର ଜେଲରେ ଐତିହାସିକ ୭୩ ଦିନ ବ୍ୟାପୀ ଅନଶନ ସଂଗ୍ରାମରେ ସେ ପାଲଟିଲେ ଅନ୍ୟତମ ନାୟକ । ଖବର ପାଇଲେ ସ୍ତ୍ରୀ ଅସୁସ୍ଥ । ଦିନକ ପାଇଁ ପାରୋଲ ମିଳିଥିଲା । ହାତକଡ଼ା ପିନ୍ଧି ପୁଲିସ ହେପାଜତରେ ସେ ଯାଇଥିଲେ ଘରକୁ ସ୍ତ୍ରୀଙ୍କୁ ଦେଖିବା ପାଇଁ । ପହଞ୍ଚିଲା ବେଳକୁ ସମୟ ବିଳମ୍ବ ହୋଇଯାଇଥିଲା । ସ୍ତ୍ରୀ ଆଉ ନଥିଲେ । ବହୁ ଦୁଃଖର ସାଥୀ, ଦୁଃଖରେ ସଢ଼ି ସଢ଼ି ଝଡ଼ିଯାଇଛି । ମୂର୍ଚ୍ଛିତ ହୋଇଗଲେ ସ୍ୱାମୀ । ଘର ଭିତରକୁ ଯିବାର ଆବଶ୍ୟକ ପଡ଼ିଲା ନାହିଁ । ଫେରିଲେ କାରାଗାରକୁ ।

ନିର୍ବାଚନ ପର୍ବ ଆରମ୍ଭ ହେଲା । ହରିହର ଦାସ ବହୁବାର ନିର୍ବାଚିତ ହୋଇଛନ୍ତି ବିଧାନସଭାକୁ । ଜୀବନରୁ ହ୍ୟୁମର ବା ରଙ୍ଗରସ ମରିଯାଇଛି । ଜୀବନ ହୋଇଯାଇଛି ରସଶୂନ୍ୟ, ଶୁଷ୍କ । ପ୍ରସିଦ୍ଧ କାର୍ଟୁନିଷ୍ଟ ଶଙ୍କର ଆପଣାର ପ୍ରସିଦ୍ଧ ସାପ୍ତାହିକୀକୁ ବନ୍ଦ କରିଦେଲା ବେଳେ ଏଇ ଉକ୍ତି ପ୍ରକାଶ କରିଛନ୍ତି । ବିଧାନସଭା ବା ଲୋକସଭା ସେଥିରୁ ମୁକ୍ତ ନୁହେଁ । ହ୍ୟୁମର ଆଜିକାଲି ଶୁଣାଯାଏନା । ଶୁଣାଯାଏ କେବଳ ଗାଳି । କିନ୍ତୁ ସବୁଦିନେ ଏହା ନଥିଲା । ବିଧାନସଭା ହାସ୍ୟରୋଳରେ ଫାଟି ପଡ଼ୁଥିଲା । ସ୍ୱର୍ଗତ କୈଳାସଚନ୍ଦ୍ର ମହାନ୍ତି, ସ୍ୱର୍ଗତ ଲକ୍ଷ୍ମୀନାରାୟଣ ମିଶ୍ର, ସ୍ୱର୍ଗତ ଯଦୁମଣି ମଙ୍ଗରାଜ, ସ୍ୱର୍ଗତ ହରିହର ଦାସ ଏଥିପାଇଁ ସ୍ମୃତ ହୋଇ ରହିବେ ଚିରକାଳ । ଦଳମତ ଗୋଷ୍ଠୀ ନିର୍ବିଶେଷରେ ହାସ୍ୟ ରସର ଖଣି ଥିଲେ ସେମାନେ ।

ଆସିକା ଡାକ ବଙ୍ଗଳାର ଏକ ଝାଡ଼ୁଦାରର ଦୁଇଟଙ୍କା ମାସିକ ଦରମା ଉପରେ ହରହର ଦାସଙ୍କ ଭାଷଣ ୬ ଗୋଦାବରୀଶ ମହାପାତ୍ରଙ୍କୁ ଏପରି ମୁଗ୍ଧ କରିଥିଲା ଯେ ସେ ତାଙ୍କର ପ୍ରସିଦ୍ଧ କବିତା—

"ଏ ଜାତର ପୁନାପୁଅ
ଥିଲା ସେ ଧରମା
ଗଢ଼ିଥିଲା କୋଣାରକ
ନ ଖାଇ ଦରମା"

ରଚନା କରିଥିଲେ । ତାଙ୍କର ଏକମାତ୍ର ପୁତ୍ର ସଚ୍ଚିଦାନନ୍ଦ ପାଠ ପଢ଼ୁଥିଲା କଲେଜରେ । କୌଣସି ଏକ ସହପାଠୀ ସହିତ ଗଣ୍ଡଗୋଳ ହେଲା ଏବଂ ସେ ତାଙ୍କୁ ଛୁରୀରେ ଭୁଷିଦେଲା । ସଙ୍କଟାପନ୍ନ ଅବସ୍ଥାରେ ତାଙ୍କର ରୋଗଶଯ୍ୟା ପାଖରେ ବସିଛନ୍ତି ପିତା ହରହର । ପୁଲିସ ଯାଇ ପହଞ୍ଚିଲା ଏବଂ ବାପାଙ୍କୁ ପଚାରିଲା ଆତତାୟୀର ନାମ । ପିତା ନାମ ଦେବାକୁ ସମ୍ମତ ହେଲେ ନାହିଁ । ଆଖିରୁ ଲୁହ ଢାଳି କହିଲେ, ଗୋଟିଏ ପିତାର ଦୁଃଖ ଦେଖୁଛି; ଆଉ ଗୋଟିଏ ପିତା କ'ଣ ମୋଭଳି ସମଦଶା ଭୋଗିବାକୁ ମୁଁ ଚାହିଁବି ? ପିଲାମାନେ ଗଣ୍ଡଗୋଳ କରନ୍ତି । ଇତିହାସର ପୃଷ୍ଠାରେ ଥରେ ବୀର ରାଣୀ ଶୁକ ଦେଈ ସ୍ୱାମୀହନ୍ତା ଖୋରଧାର ରାଜାଙ୍କୁ ଏଇ ଉତ୍ତର ଦେଇଥିଲେ । ଯେତେବେଳେ ସ୍ୱାମୀଙ୍କୁ ହତ୍ୟା କରିଥିବା ଯୋଗୁଁ ବନ୍ଦୀ ଖୋରଧାର ରାଜା ରାଣୀ ଶୁକ ଦେଈଙ୍କୁ ତାଙ୍କୁ ହତ୍ୟା କରିବାକୁ ନିବେଦନ କଲେ । ଶୁକ ଦେଈ ତାଙ୍କୁ ପଚାରିଲେ, ଖୋରଧାର ରାଣୀଙ୍କର ସେଇ ଦଶା କ'ଣ ସେ ଚାହିଁବେ ? ହରହର ଦାସ ସେଇ ପରମ୍ପରାର ଦାୟାଦ ।

ଉତ୍ତର ଜୀବନରେ ବିପ୍ଳବ ବା ସଂଗ୍ରାମର ଝାସ କମିଯିବା ହେତୁ ହରହର ଦାସ ଧୀରେ ଧୀରେ ମିଷ୍ଟିକ ବା ରହସ୍ୟବାଦୀ ହୋଇ ଉଠିଥିଲେ । ଘରେ ମାର୍କସ, ଲେନିନଙ୍କ ସହିତ ଶିବ, ବୁଦ୍ଧ, କୃଷ୍ଣ, ସତ୍ୟସାଇ, ଶ୍ରୀରାମକୃଷ୍ଣ, ଶ୍ରୀ ଅରବିନ୍ଦ, ଶ୍ରୀ ମା ସମସ୍ତଙ୍କର ଫଟୋ ପୂଜା ପାଉଥିଲେ । ସମସ୍ତଙ୍କର ସବୁ ଭଲ କଥାର ନିର୍ଯ୍ୟାସ ଯେପରି ସେ ଖୋଜୁଥିଲେ ଏବଂ ତାହାର ସମନ୍ୱୟ ଲୋଡ଼ୁଥିଲେ ।

ସେ ଆଉ ନାହାନ୍ତି । ସେମିତି ଲୋକଟିଏ ମିଳିବେ ନାହିଁ । ଜୀବନ ରସଶୂନ୍ୟ ହୋଇଯାଇଛି । ହରହର ଦାସ ଥିଲେ ହସର ଖଣି । ସେ ଆଉ ରହିବେ କାହିଁକି ? କିନ୍ତୁ କାଳର କପାଳରେ ସେ ଜୁଳୁ ଜୁଳୁ ହୋଇ ଜଳିବେ ଅନନ୍ତକାଳ ପର୍ଯ୍ୟନ୍ତ ।



# ଭୂମ୍ନ ମରଦେହ ଗ୍ରାସିଛି ଶ୍ମଶାନ

ଜନ୍ମ ହେଲେ ଦିନେ ନା ଦିନେ ସମସ୍ତଙ୍କୁ ଯିବାକୁ ପଡ଼େ । ଜନ୍ମିଲେ ମରଣ ସତ୍ୟ । କିନ୍ତୁ ଏଭଳି ଲୋକ ଜନ୍ମ ହୁଅନ୍ତି, ଯେଉଁମାନେ ଜୀବନର କୌଣସି ନା କୌଣସି ବିଭାବରେ ଆପଣାର ଆଲେଖ୍ୟ ରଖି ଯାଆନ୍ତି । ଜନମାନସରେ ସେମାନେ ବଞ୍ଚି ରହନ୍ତି ବହୁକାଳ ଧରି । ଏଭଳି ଲୋକ କେବେ କେବେ ଜନ୍ମ ହୁଅନ୍ତି, ଯେଉଁମାନେ ଜୀବନର ବିଭିନ୍ନ ବିଭାବକୁ କେବଳ ସ୍ପର୍ଶ କରନ୍ତି ନାହିଁ, ପ୍ରତ୍ୟେକ ବିଭାବରେ ଆପଣାର ଉଜ୍ଜ୍ୱଳ ସ୍ୱାକ୍ଷର ରଖି ଯାଆନ୍ତି ।

ସେହିଭଳି ଜଣେ ମନୀଷ ଥିଲେ ଜଷ୍ଟିସ ହରିହର ମହାପାତ୍ର । ୯୧ ବର୍ଷରେ ସେ ବାହୁଡ଼ିଛନ୍ତି । ଗାଢ଼ ୬୦ ବର୍ଷ କାଳ ସେ ଜୀବନର ବହୁ ବିଭାବ କଳା, ସାହିତ୍ୟ, ସଂସ୍କୃତି, ଆଇନ, ନାଗରିକ ସ୍ୱାଧୀନତା ଇତ୍ୟାଦିକୁ ସ୍ପର୍ଶ କରିଛନ୍ତି । ସେ ଭିତରେ କେବେ ସେ ଝୁଣ୍ଟି ନଥିବେ, କେବେ ଦିଗହରା ହୋଇ ନଥିବେ, କେବେ ସଂଶୟରେ ପଡ଼ି ନଥିବେ, ତାହା କହିହେବ ନାହିଁ । ଯିଏ କାର୍ଯ୍ୟ କରିଯାଏ, ତା'ର ତ୍ରୁଟି ହୁଏ, ଚାଲି ପଥରେ ଭୁଲ ହୁଏ । ସଂଶୟ ଜାତ ହୁଏ । ଯିଏ କିଛି କରେ ନାହିଁ; ତାର କୌଣସି ଭୁଲ ହୁଏ ନାହିଁ ।

ପୁରୀ ଜିଲ୍ଲା ବିଶ୍ୱନାଥପୁର ଗାଁରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିବା ଏକ ଶିଶୁ ଜୀବନରେ ବହୁ ଦୁଃଖ, କଷ୍ଟ ଦାରିଦ୍ର୍ୟ ଉତ୍ଥାନ ପତନ ଭିତର ଦେଇ ଗତି କରି ସାଫଲ୍ୟର ଶୀର୍ଷ ସ୍ଥାନରେ ପହଞ୍ଚି ପାରେ । ତାହାହିଁ ତାଙ୍କର ଅସାଧାରଣତ୍ୱ । ଗାଁ ସ୍କୁଲରୁ ସତ୍ୟବାଦୀ ବନବିଦ୍ୟାଳୟ, ସେଠାରୁ ଉପାନ୍ତ ଅଞ୍ଚଳ ସିଂହଭୂମି । ତାଙ୍କର ସ୍କୁଲ ଶିକ୍ଷା—ପିଲାଦିନରୁ ଗୋପବନ୍ଧୁ, ହରିହର, ନୀଳକଣ୍ଠ, କୃପାସିନ୍ଧୁ ପ୍ରଭୃତିଙ୍କ ପ୍ରଭାବ ଅର୍ଜନ କରିବି, ପ୍ରତିଷ୍ଠା ପାଇଁ ଚେଷ୍ଟା କରିବି, କିନ୍ତୁ ମଣିଷକୁ ଭୁଲିବା ନାହିଁ, ଭୁଲିବି ନାହିଁ ଦେଶକୁ । ସେ ରାଜନୈତିକ ନେତା ନଥିଲେ । କୌଣସି ଦଳର ପତାକା ଧରି ନଥିଲେ । ବିଧାନସଭା ବା ଲୋକସଭାର ଟିକଟ ପାଇଁ କାହାରି ଦ୍ୱାରସ୍ଥ ହୋଇ ନଥିଲେ । କିନ୍ତୁ ସାଧାରଣ ମଣିଷ ପାଇଁ, ତା'ର କଳା, ସାହିତ୍ୟ, ସଂସ୍କୃତି ପାଇଁ, ତା'ର ସୂକ୍ଷ୍ମ ବିଭାବ ପାଇଁ ତାଙ୍କର ଦରଦ ଥିଲା ଅପୂରନ୍ତ, ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଜୀବନର ସନ୍ଧ୍ୟା ଉପଗତ । ବିଦା ହେବା ପାଇଁ ଆଉ ଡେରି ନାହିଁ । ଲମ୍ବା ଲମ୍ବା ଛାଇ ପଡ଼ିଲାଣି । ଯିବାକୁ ହେବ । ସେଥିପାଇଁ ସେ ପ୍ରସ୍ତୁତ

ହୋଇ ଯାଉଛନ୍ତି । ସମସ୍ତଙ୍କଠାରୁ ବିଦାୟ ନେଉଛନ୍ତି ; କିନ୍ତୁ କାର୍ଯ୍ୟରୁ ନୁହେଁ । କାର୍ଯ୍ୟ ଚାଲୁ ରହିବ ଶେଷ ପର୍ଯ୍ୟନ୍ତ ।

"ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ନୂତନ ସଂସ୍କରଣ ଏକାନ୍ତ ଆବଶ୍ୟକ । ଭାରତ ସରକାର ଗ୍ରାଣ୍ଟ ଦେବାକୁ ରାଜି ହୋଇଛନ୍ତି । ବାକିତକ ଖର୍ଚ୍ଚ ଆମକୁ ଉଠାଇବାକୁ ହେବ । ଅଧ୍ୟାପକ କରୁଣାସାଗର ବେହେରା ଓଡ଼ିଶା ଇତିହାସର ସଙ୍କଳନ ସଂକ୍ରାନ୍ତୀୟ ନିବନ୍ଧ ପାଇଁ ଗବେଷକମାନଙ୍କୁ ଚିଠି ଦେଲେଣି ? ମହେଶ ବାବୁ "ବୈଦେଶିକମାନଙ୍କ ବ୍ୟାରେଲ କଟକ"ର ପାଣ୍ଡୁଲିପି ଚୂଡ଼ାନ୍ତ କଲେଣି ?" ଏଇ କଣ ମୃତ୍ୟୁର ପୂର୍ବାଭାସ ? ନାଁ ଏ ହେଉଛି ସ୍ଥିତପ୍ରଜ୍ଞତା । କୌଣସି କଥାରେ ବିଚଳିତ ନ ହେବା, ଏପରିକି ମୃତ୍ୟୁ ସମ୍ମୁଖରେ ମଧ୍ୟ । କେତେଜଣଙ୍କର ଏଇପରି ସ୍ଥିତପ୍ରଜ୍ଞତା ରହିଛି । ପ୍ରଚୁର ସମ୍ପତ୍ତି, ଦେଶବିଦେଶରେ କୋଠାବାଡ଼ି ସବୁ ଛାଡ଼ି ଯାଉଛନ୍ତି । କିନ୍ତୁ ତାକୁ ନ ଅନାଇ ସେ ଅନାଉଛନ୍ତି ଓଡ଼ିଶାର ଇତିହାସ, ସଂସ୍କୃତି ଓ କଳାକୁ ।

ସାହିତ୍ୟ ନା ଓକିଲାତି ଏଇ ସଂଶୟ ନିଷ୍ପତ୍ତି ଦେଖାଦେଇଥିବ ହରିହର ମହାପାତ୍ରଙ୍କ ଜୀବନରେ । ଓକିଲାତି ହେଲା ପେଶା, କିନ୍ତୁ ସାହିତ୍ୟ, ସଂସ୍କୃତି ହେଉଛି ତାଙ୍କର ନିଶା । ଓକିଲାତିରେ ତାଙ୍କର ସାଫଲ୍ୟ ମିଳିଛି, ମିଳିଛି ପ୍ରତିଷ୍ଠା । ବହୁ ଜଟିଳ ଏବଂ ପ୍ରସିଦ୍ଧ ମୋକଦ୍ଦମା ହାତକୁ ନେଇଛନ୍ତି ଏବଂ ସଫଳତା ଲାଭ କରିଛନ୍ତି । କିନ୍ତୁ ସେଥିକିରେ ତାହା ସୀମିତ ନଥିଲା । ସ୍ୱାଧୀନତା ଆନ୍ଦୋଳନରେ ସମର୍ଥ୍ୟ । ସେତେବେଳକାର ପରିସ୍ଥିତି ଆଜି କଳ୍ପନା କରିବା କଠିନ । ମୋକଦ୍ଦମା ଲଢ଼ିବା ପାଇଁ ଓକିଲ ମିଳୁ ନଥିଲେ । ରାଜକିଶୋର ଦାସ, ଗୋପବନ୍ଧୁ ସାହୁ, ବାଞ୍ଛାନିଧି ମହାପାତ୍ରଙ୍କ ଭଳି ଓକିଲ ନଥିଲେ ଅବସ୍ଥା କଣ ହୋଇଥାନ୍ତା । ଆଜି ତାହା ଭାବି ହେବ ନାହିଁ । ଇତିହାସ ପ୍ରସିଦ୍ଧ ଷଡ଼ଯନ୍ତ୍ର ମୋକଦ୍ଦମା ଚତୁର୍ଥ ଦଶକର । ହରିହର ମହାପାତ୍ର କେବଳ ମୋକଦ୍ଦମା ତଦବିର କରୁ ନଥିଲେ କଲିକତାରୁ ଆସିଥିବା ବାରିଷ୍ଟର ତାଙ୍କର ଅତିଥି ଭାବରେ ରହିଥିଲେ ମଧ୍ୟ ।

ସେତେବେଳେ କଟକରେ ଭଲ ହୋଟେଲ ନଥିଲା । ବାହାରୁ ଆସୁଥିବା ବା ବିଦେଶାଗତ ଅତିଥିମାନଙ୍କ ପାଇଁ ଗୋଟିଏ ଅତିଥିଶାଳା ଉନ୍ମୁକ୍ତ ଥିଲା । ତାହା ହେଉଛି ଜଷ୍ଟିସ ହରିହର ମହାପାତ୍ରଙ୍କ ଗୃହ । ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ପାଦ ସେଇ ଘରେ ପଡ଼ି ତାହା ଏକ ଐତିହାସିକ ମନୁମେଣ୍ଟରେ ପରିଣତ ହୋଇଛି । ଇନ୍ଦୋନେସିଆର ଯୁବ ଯୋଦ୍ଧା ଦଳ, ଆଲଜେରିଆର ମୁକ୍ତି ସଂଗ୍ରାମୀ, ମହାପଣ୍ଡିତ ରାହୁଲ ସାଂକୃତାୟନ ସେ ତାଲିକା ସରିବ ନାହିଁ ।

କଳାବିକାଶ କେନ୍ଦ୍ରର ଦାୟିତ୍ୱ ପଡ଼ିଲା ତାଙ୍କ ଉପରେ ବାବୁ ଲାଲ ଯୋଶୀଙ୍କ ପରେ । ଏହାର ସମୃଦ୍ଧି ଏବଂ ଆର୍ଥିକ ସ୍ୱଚ୍ଛଳତା ପାଇଁ ଦାୟୀ ହେଉଛନ୍ତି ସେ । ନିଶ୍ଚିତ ଭାବରେ ସେ କଳାବିକାଶ କେନ୍ଦ୍ରକୁ ଆସିବେ ଏବଂ ସବୁ କଥା ବୁଝିବେ । ବୟସ ହୋ'ର ମାନିଛି ତାଙ୍କର କାର୍ଯ୍ୟ ତତ୍ପରତା ଆଗରେ । ଏକଥା ସମସ୍ତେ ସ୍ୱୀକାର କରିବେ ।

ମୁନ୍ନିଭର୍ସିର ଥିଲେ ସଭାପତି । ହଠାତ୍ କେହି ଜଣେ ପ୍ରଶ୍ନ ଉତ୍ଥାପନ କଲେ । ଏଇ ସହରର ସହସ୍ର ବର୍ଷ ପୂରି ଯାଉଛି । ସହସ୍ର ବର୍ଷ ଭିତରେ ଏଇ ସହର ଆଠ ଶହରୁ ଊର୍ଦ୍ଧ୍ୱ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ହୋଇ ରହି ଆସିଛି । ଏହି ସହର କ୍ରମଶଃ ଅବହେଳିତ ହୋଇ ଯାଉଛି । ଜନସାଧାରଣ, କେବଳ କଟକ ସହରର ନୁହେଁ, ଓଡ଼ିଶାର ଏବଂ ସମଗ୍ର ଭାରତବର୍ଷର କଣ ସଚେତନ ହେବେ ନାହିଁ ଏହାର ପ୍ରାଚୀନତ୍ୱ ଏବଂ ଗୌରବୋଜ୍ଜ୍ୱଳ ଇତିହାସ ସଂପର୍କରେ ?

ସରକାରୀ ସାହାଯ୍ୟ ମିଳିବ ନାହିଁ । ଯାହା ମିଳିବାର ପ୍ରତିଶ୍ରୁତି ମିଳିଥିଲା ତାହା ରାଜନୈତିକ ପରିବର୍ତ୍ତନ ସହି କୁଆଡ଼େ ଉଭେଇଗଲା । ବୁଝିଲେ ସରକାରୀ ସାହାଯ୍ୟ ଉପରେ ନିର୍ଭର କରିବା ଉଚିତ ନୁହେଁ । ଆମର ଶକ୍ତି ହେଉଛନ୍ତି ଜନସାଧାରଣ । ସେମାନେ ହିଁ ଠିଆ ହେବେ ଏଇ କାର୍ଯ୍ୟ ପାଇଁ ।

ପାଳିତ ହେଲା କଟକ ନଗରର ସହସ୍ର ବାର୍ଷିକୀ । ଏହା ପରେ ହାଇଦ୍ରାବାଦ, ବନାରସ ଏବଂ କଲିକତା ସେମାନଙ୍କର ଛଅ ଶହବର୍ଷ, ଆଠଶହ ବର୍ଷ, ତିନିଶହ ବର୍ଷ ପାଳନ କରିଛନ୍ତି । ବିପୁଳ ସରକାରୀ ଅବଦାନ ମିଳିଛି । କିନ୍ତୁ ବିନା ସରକାରୀ ସାହାଯ୍ୟରେ କେବଳ କଟକ ସହର ହିଁ ଆପଣାର ସହସ୍ର ବାର୍ଷିକୀ ପାଳନ କରିଛି । ଭାରତୀୟ ବ୍ୟୋମ ବାହିନୀ ଏକ ଅଭୂତପୂର୍ବ ଜନସମାବେଶ ମଧ୍ୟରେ କଟକ ନଗରକୁ ସମ୍ମାନ ଜଣାଇଛନ୍ତି । ଏହା ଅନ୍ୟ ସହରମାନଙ୍କ ପାଇଁ ସମ୍ଭବ ହୋଇ ନାହିଁ ।

କଟକ ନଗର ଉପରେ ଦୁଇ ହଜାର ପୃଷ୍ଠାର ବହି ହେଉଛି ତାଙ୍କର ଅନବଦ୍ୟ ଅବଦାନ । ଏହା ହେଉଛି ଏକ ଆହ୍ୱାନ । ଆଗାମୀ କେତେ ବର୍ଷ ଭିତରେ ଏଇଧରି ଏକ ବହି ପ୍ରକାଶ ପାଇ ପାରିବ ତାହାର ଦାୟିତ୍ୱ ସରକାରଙ୍କ ଉପରେ ଏବଂ ଜନସାଧାରଣଙ୍କ ଉପରେ । ପ୍ରତିବର୍ଷ ଓଡ଼ିଶାର ସଂସ୍କୃତି ଉପରେ ଏକ ବହି ପ୍ରକାଶ କରିବାର ଦାୟିତ୍ୱ ସେ ଆମ୍ଭମାନଙ୍କ ଉପରେ ଦେଇ ଯାଇଛନ୍ତି । ତାହାର ଉତ୍ତରରେ ତାଙ୍କର ୯୦ ତମ ଜନ୍ମ ଦିବସରେ ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ଉପରେ ବହି ପ୍ରକାଶିତ ହୋଇଛି । ଜଷ୍ଟିସ ହରିହର ମହାପାତ୍ର ତାଙ୍କର ଅସମାପ୍ତ କାର୍ଯ୍ୟକୁ

ସଂସ୍କୃତି କରିବା ଦାୟିତ୍ୱ ଦେଇଯାଇଛନ୍ତି ଓଡ଼ିଶାବାସୀଙ୍କୁ । ତାଙ୍କର ବଯ୍ନୋଗରେ ମହାନ ଅବର୍ଜନ ହୋଇଲା କି ନାହିଁ, ତାଙ୍କର ଚରିତ୍ର ପାଖରେ ଲାଷ୍ଟପୋଷ୍ଟ ବାଜିଲା କି ନାହିଁ ସେ ଅଲଗା କଥା । ଜନମାନସର ସମ୍ମାନ ସେ ପାଇଛନ୍ତି ବହୁ ଆଗରୁ । ଦଳ, ମତ, ଗୋଷ୍ଠୀ, ନିର୍ବିଶେଷରେ ସମସ୍ତଙ୍କର ସମ୍ମାନ ପାଇଛନ୍ତି । ସେଇ ତ ହେଉଛି ଜାତୀୟ ସମ୍ମାନ । ଏପରି ଭାଗ୍ୟ କେତେ ଲୋକଙ୍କୁ ମିଳେ ?

# ଜଷ୍ଟିସ୍ ହରିହର ମହାପାତ୍ର

## ( ଏକ ସଂକ୍ଷିପ୍ତ ଜୀବନୀ )

ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ଅନ୍ୟତମ ପ୍ରତିଷ୍ଠାତା, ବିଶିଷ୍ଟ ଆଇନଜ୍ଞ, ପାଟନା ହାଇକୋର୍ଟର ପୂର୍ବତନ ବିଚାରପତି, ଓଡ଼ିଶା ସଂସ୍କୃତିର ବିଶିଷ୍ଟ ପ୍ରବକ୍ତା ଜଷ୍ଟିସ୍ ହରିହର ମହାପାତ୍ରଙ୍କର ପବିତ୍ର ଦୋଲ ପୂର୍ଣ୍ଣିମା ସନ୍ଧ୍ୟା ୭-୨୫ ମିନିଟରେ ତାଙ୍କର ଗ୍ରୀନ୍‌ବୌଲ ବାସଭବନରେ ପରଲୋକ ହୋଇଯାଇଛି । ଗଲା କେତେଦିନ ଧରି ସେ ଅସୁସ୍ଥ ଥିଲେ, କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ ସେ ସଚେତନ ଓ ସଜାଗ ଥିଲେ ।

ଆଜକୁ ୯୧ ବର୍ଷ ତଳେ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ବିଶ୍ୱନାଥପୁର ଗ୍ରାମରେ ଜଷ୍ଟିସ୍ ହରିହର ମହାପାତ୍ର ଏକ ବ୍ରାହ୍ମଣ ପରିବାରରେ ନଭେମ୍ବର ୮, ୧୯୦୪ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ କାଶୀନାଥ ମହାପାତ୍ର । ଆପଣା ଗାଁରେ ପ୍ରାଥମିକ ଶିକ୍ଷା ସମାପ୍ତ କରି ସେ ଇତିହାସପ୍ରସିଦ୍ଧ ସତ୍ୟବାଦୀ ସ୍କୁଲରେ ଅଧ୍ୟୟନ କଲେ । ସେଠାରେ ଛଅ ବର୍ଷ ପଢ଼ିବା ପରେ ତାଙ୍କ ବାପାଙ୍କର ଉତ୍କଳ ସମ୍ମିଳନୀର ଆହ୍ୱାନରେ ଚକ୍ରଧରପୁରରେ ଶିକ୍ଷକ ଭାବରେ ନିଯୁକ୍ତ ହେବାରୁ ସେ ଗୁଁଡିବାସାରେ ପଢ଼ିବାକୁ ଗଲେ ଏବଂ ସେଠାରୁ ୧୯୨୧ ମସିହାରେ ମାଟ୍ରିକ୍ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ । ଏହି ସମୟରୁ ହିଁ

ତାଙ୍କ ଉପରେ ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଂଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ପ୍ରଭୃତିଙ୍କ ପ୍ରଭାବ ପଡ଼ିଥିଲା ଏବଂ ଦେଶସେବା ପାଇଁ ତାଙ୍କର ଅପରସୀମ ଆଗ୍ରହ ଦେଖା ଦେଇଥିଲା, ଯାହା ପରବର୍ତ୍ତୀ ଜୀବନରେ ପ୍ରତିଭାତ ଏବଂ ପରିବ୍ୟାପ୍ତ ହୋଇଥିଲା । ୧୯୧୯ ମସିହାରେ ମାତ୍ର ୧୫ ବର୍ଷ ବୟସରେ ତତ୍କାଳୀନ ପରମ୍ପରା ଅନୁଯାୟୀ ତାଙ୍କର ବିବାହ ହୋଇଥିଲା ।

ମାଟ୍ରିକ୍ ପାସ୍ କରିବା ପରେ ଜଷ୍ଟିସ୍ ହରିହର ମହାପାତ୍ର କଟକରେ ପଢ଼ିବାକୁ ଆସିଲେ, ରେଭେନ୍‌ସା କଲେଜକୁ । ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସରେ ତାଙ୍କର ସହପାଠୀ ଭାବରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜି ଏବଂ ଅନ୍ନଦା ଶଙ୍କର ରାୟଙ୍କ ସହିତ ସେ ସବୁଜ ସାହିତ୍ୟ ସମିତି ଗଠନ କରନ୍ତି ଏବଂ ତାହା ଓଡ଼ିଶାରେ ଏକ ନୂତନ ସାହିତ୍ୟ ଯୁଗ ସୃଷ୍ଟି କରେ । ଏହି ଗୋଷ୍ଠୀର ସମବେତ ବନ୍ଧୁତ୍ୱର ପ୍ରତିଫଳନ ପରେ ଯେଉଁ କ୍ଲବ୍ ସୃଷ୍ଟି ହୋଇଥିଲା, ଇତିହାସ ପୃଷ୍ଠାରେ ତାହା 'ନନ୍‌ସେନ୍‌ସ କ୍ଲବ' ନାମରେ ବିଦିତ ଏବଂ ଏହା ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ଜନ୍ମଦାତା । ସତ୍ୟବାଦୀ ବନ ବିଦ୍ୟାଳୟରେ କିଛି ସମୟ ଶିକ୍ଷକତା କରିଲା ପରେ ସେ ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍ ଏ. ଏବଂ ଆଇନ ପାସ୍ କଲେ ।

କଟକରେ ଓକିଲାତି ଆରମ୍ଭ କଲେ ଏବଂ ଆପଣାର ଅଧ୍ୟବସାୟ ବଳରେ ପ୍ରତିଷ୍ଠା ଲାଭ କଲେ । ଚତୁର୍ଥ ଦଶକରେ ପ୍ରସିଦ୍ଧ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମା, ପ୍ରସିଦ୍ଧ ଢେଙ୍କାନାଳ ଆନ୍ଦୋଳନଜନିତ ମୋକଦ୍ଦମା, ଗୋପାଳଚନ୍ଦ୍ର ପ୍ରହରାଜ ମୃତ୍ୟୁ ମୋକଦ୍ଦମା ପ୍ରଭୃତି ବହୁ ବଡ଼ ବଡ଼ ମୋକଦ୍ଦମାରେ ସେ ଅଂଶଗ୍ରହଣ କରିଥିଲେ ଏବଂ ଯଶ ଲାଭ କରିଥିଲେ । ଅନେକ ସମୟରେ ସେ ଆପଣା ହାତରୁ ଖର୍ଚ୍ଚ କରି ଏହି ସବୁ ମୋକଦ୍ଦମା ଚଳାଉଥିଲେ । ସାହେବୀ ପୋଷାକ, ମାର୍ଜିତ ବ୍ୟବହାର ଏବଂ ସମୟାନୁବର୍ତ୍ତିତା ପାଇଁ ତାଙ୍କର ଖ୍ୟାତି ଥିଲା ।

୧୯୫୧ ମସିହାରେ ହରିହର ପାଟନା ହାଇକୋର୍ଟରେ ବିଚାରପତି ଭାବରେ ନିଯୁକ୍ତି ପାଆନ୍ତି ଏବଂ ସେଠାରୁ '୧୯୬୦ ମସିହାରେ ଅବସର ଗ୍ରହଣ କରନ୍ତି । ଓଡ଼ିଶାରେ ସେ ରୋଟାରୀ କ୍ଲବ୍‌ର ପ୍ରତିଷ୍ଠାତା-ସମ୍ପାଦକ ଏବଂ ଏହାର ବିକାଶ ପାଇଁ ତାଙ୍କର ଅବଦାନ ପ୍ରଭୂତ । ତାଙ୍କ ନେତୃତ୍ୱରେ ରୋଟାରୀ କ୍ଲବ ଆନୁକୂଲ୍ୟରେ କଟକରେ ଏକ ଅତ୍ୟାଧୁନିକ ଚକ୍ଷୁ ଡାକ୍ତରଖାନା ପ୍ରତିଷ୍ଠା ହୋଇଛି । ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ସେ ପ୍ରଜାତନ୍ତ୍ର ପ୍ରଚାର ସମିତିର ସଭାପତି ଥିଲେ ଏବଂ ବିଷୁବ ମିଳନ ସାଂସ୍କୃତିକ ସମାବେଶ ପାଇଁ ତାଙ୍କର ଅବଦାନ ଅବିସ୍ମରଣୀୟ । ଗୋପବନ୍ଧୁ ଭବନର ନିର୍ମାଣ ପାଇଁ ତାଙ୍କର ମଧ୍ୟ ଅବଦାନ ଥିଲା । 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ,

ଉତ୍କଳର ହରେକୃଷ୍ଣ ମହତାବ ସମେତ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ତାଙ୍କର ସୌଖ୍ୟ ଥିଲା । କଳାବିକାଶ କେନ୍ଦ୍ରର ସେ ମୃତ୍ୟୁ ପର୍ଯ୍ୟନ୍ତ ସଭାପତି ଥିଲେ ଏବଂ ଏହାର ସମ୍ପ୍ରସାରଣ ତଥା ବିକାଶ ପାଇଁ ତାଙ୍କର ଅବଦାନ ବିପୁଳ । ‘ସୂଜଭର୍ସ’ର ସଭାପତି ଭାବରେ ସେ କଟକ ନଗର ସହସ୍ର ବାର୍ଷିକୀ କମିଟିର ସଭାପତି ଥିଲେ ଏବଂ କଟକ ନଗରର ଐତିହାସିକ ସହସ୍ର ବର୍ଷ ପାଳନ ତାଙ୍କରି ନେତୃତ୍ୱରେ ହୋଇଥିଲା । ବିଶ୍ୱ ଓଡ଼ିଆ ସମ୍ମିଳନୀର ସେ ସଭାପତି ଥିଲେ । କିଛିକାଳ ପାଇଁ ସେ ସଙ୍ଗୀତ ନାଟକ ଏକାଡେମୀର ସଭାପତି ଥିଲେ । ରୋଟାରୀ କ୍ଲବର ଗଭର୍ଣ୍ଣର ଭାବରେ ସେ ପୃଥିବୀର ବହୁ ଦେଶ ପରିଭ୍ରମଣ କରିଛନ୍ତି । ଓଡ଼ିଶାର ପ୍ରମୁଖ ସାହିତ୍ୟ ପତ୍ରିକା ଝଙ୍କାରର ମଧ୍ୟ ସେ ମୁଖ୍ୟ ସମ୍ପାଦକ ଥିଲେ ।

ତାଙ୍କର ଧର୍ମପତ୍ନୀ, ତିନି ପୁଅ ଓ ଦୁଇ ଝିଅ, ବୋହୂ, ନାତିନାତୁଣୀ ଏବଂ ଅସଂଖ୍ୟ ବନ୍ଧୁଙ୍କର ସ୍ମୃତିର ସ୍ୱାରକୀ ହୋଇ ସେ ୨୮ ମାର୍ଚ୍ଚ, ୧୯୯୪ ସନ୍ଧ୍ୟା ୭-୨୫ ମିନିଟ୍‌ରେ ପରଲୋକ ଗମନ କରିଛନ୍ତି । ଏକ ବିରାଟ କର୍ମମୟ ଜୀବନର ଅବସାନ ଘଟିଛି ।



# ସବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ

"କେହି ରହି ନାହିଁ    ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ,
ସବେ ନିଜ ନିଜ    ଅଭିନୟ ସାରି
ବାହୁଡ଼ିବେ କାଳବଳେ ।"

କ୍ଷେତ୍ରପାଳ ମିଶ୍ରଙ୍କର ଅଭିନୟ ସରିଗଲା ଅକାଳରେ । ଦେଖାହୁଏ ମଝିରେ ମଝିରେ । ଶ୍ୱାସରୋଗର ପ୍ରଚଣ୍ଡ ଆକ୍ରମଣରେ ବ୍ୟତ୍ୟାହତ କ୍ଷେତ୍ରପାଳ । ସେ ବଜ୍ରଗମ୍ଭୀର କଣ୍ଠସ୍ୱର, ଅଭିନୟର ସେ ଦୃପ୍ତ ଠାଣି ଆଉ ନାହିଁ । ନଇଁ ଗଲେଣି । କିନ୍ତୁ ମୁହଁରେ ବସା ବାନ୍ଧିଛି ସେଇ ନାଟକୀୟ ହସ, ଯାହା ବହୁ ଦର୍ଶକଙ୍କୁ ବିମୁଗ୍ଧ କରିଛି । ଫୁସ୍‌ଫୁସ୍‌ର ଆକୁଞ୍ଚନ-ସଙ୍କୋଚନ ଶକ୍ତି ହ୍ରାସ ପାଇଯାଇଛି । ତଥାପି କଣ୍ଠରେ ମନ୍ଦ୍ରିତ ହେଉଛି ଗୁରୁଗମ୍ଭୀର ସ୍ୱର । ପୁରୁଣା ସୋଫା ପୁରୁଣା ଚୌକି । ବାପା ଜଷ୍ଟିସ୍ ପୀତାମ୍ବର ମିଶ୍ର ଯାହା ଛାଡ଼ି ଯାଇଥିଲେ ସେତିକି । ଆଉ ନୂଆ କରି ପାରି ନାହିଁ । କ୍ଷେତ୍ରପାଳଙ୍କ ମୁହଁ ଉପରେ ହସର ଏକ ମ୍ଳାନ ରେଖା ଉକୁଟି ଲିଭିଗଲା । ଚାକିରି କରିଛନ୍ତି ଫାଇନାନ୍ସ ବିଭାଗରେ । କିନ୍ତୁ ନିଜର ଫାଇନାନ୍ସ ଗଣ୍ଡଗୋଳ ହୋଇ ଯାଇଛି । ଯାହାକୁ ସେ ସୁଧାରି ପାରି ନାହାନ୍ତି । ସୁଧାରିବାର ସ୍ପୃହା ବି ତାଙ୍କର ନାହିଁ । ଜୀବନ ଅନ୍ୟ ଭୁଆଡ଼କୁ ମୁହାଁଇଛି । କ୍ଷେତ୍ରପାଳ ପିଲାଦିନରୁ ରଙ୍ଗମଞ୍ଚ ଏବଂ ଅଭିନୟ ପ୍ରତି ଆକୃଷ୍ଟ ହୋଇଥିଲେ । ବିରାଟ ଚେହେରା, ପ୍ରୋଜ୍ଜ୍ୱଳ ଆଖି, ଷ୍ଟେଣ୍ଟୋରିଆନ୍ କଣ୍ଠ । ରଙ୍ଗମଞ୍ଚ କାନ୍ଦୁଥିଲା ତାଙ୍କର ରକ୍ତରେ, ତାଙ୍କର କଣ୍ଠରେ । କ୍ୟାରେକ୍ଟର ରୋଲ୍ ଏବଂ ଐତିହାସିକ ରୋଲ୍ ଥିଲା ତାଙ୍କର ବିଶେଷତ୍ୱ । ପେଶା ଥିଲା ତାଙ୍କର ଚାକିରି, ନିଶା ଥିଲା ଅଭିନୟ । ଆମେ ଥିଲୁ ଗୋଟିଏ ଟିମ୍‌ରେ । କ୍ଷେତ୍ରପାଳ ନାଟ୍ୟ ସମ୍ପାଦକ, ପ୍ରଶାନ୍ତ କୁମାର ମିଶ୍ର କ୍ରୀଡ଼ା ସମ୍ପାଦକ ଏବଂ ମୁଁ କଲେଜ ୟୁନିଅନର ସଭାପତି । ରେଭେନ୍‌ସା କଲେଜରେ ନାଟକ ହେଉଥିଲା ଯେମିତି କ୍ରୀଡ଼ା ବି ହେଉଥିଲା ସେମିତି । ନାଟକରେ କମ୍ପୁଥିଲା ରେଭେନ୍‌ସା କଲେଜ ହଲ୍ । କ୍ଷେତ୍ରପାଳ ପାଠପଢ଼ା ସାରି ଚାକିରି କଲେ । କିନ୍ତୁ ତାଙ୍କର ଅଭିନୟ ନିଶା ଅତୁଟ ରହିଲା । ବଡ଼ ସାନର ବିଚାର ନାହିଁ । ନାଟକ ହେବ । କ୍ଷେତ୍ରପାଳ ନିଶ୍ଚୟ ହାଜର । ଧୀରେ ଧୀରେ ଅଭିନୟକୁ

ନିର୍ଦ୍ଦେଶନାକୁ ଗଲେ । ନଜର ଅସ୍ପଷ୍ଟତା ବଢ଼ିଲା । କଣ୍ଠ ଆଉ ବୋଲ ମାନିଲା ନାହିଁ । କିନ୍ତୁ କ୍ଷେତ୍ରପାଳ ପରାଜୟ ମାନିବାକୁ ନାରାଜ । ଶାର ପଣ ସେ ଲଢ଼ିଛନ୍ତି ଷ୍ଟେଜ ଉପରେ । ଅନମନୀୟ ଚରିତ୍ର ଭାବରେ ସେ ମୁଣ୍ଡ ନୁଆଁଇ ନାହାନ୍ତି କାହାରି ପାଖରେ ଆପଣାର ଅଭିନୟରେ । ଆଉ ସେ ହାର ମାନିବେ ଏଇ ସାମାନ୍ୟ ରୋଗ ପାଖରେ । ଅସମ୍ଭବ ।

କ୍ଷେତ୍ରପାଳ ଭାଙ୍ଗିଯିବେ ସିନା ନଇଁଯିବେ ନାହିଁ । ନାଟକ ଆଉ ସେ ଅଭିନ୍ନ । ଗଲାବର୍ଷ ଦେଖା ହୋଇଥିଲା । ଶ୍ୱଶୁର ଫକୀର ମିଶ୍ର ବନ୍ଧୁ, ଜୋଇଁ ବି ବନ୍ଧୁ । ଫକୀର ବାବୁ ସେଇକଥା କହି ଅଭ୍ୟର୍ଥନା ଜଣାଇଥିଲେ । ପାର୍କିନସନ୍ ରୋଗରେ ପୀଡ଼ିତ । ଜୋଇଁ ରୋଗାକ୍ରାନ୍ତ । ତଥାପି ଫକୀର ଭାଇନା ମୁହଁରେ ଯେମିତି ହସ, ସେଇପରି ଦୃପ୍ତ ହସ କ୍ଷେତ୍ରପାଳଙ୍କ କଣ୍ଠରେ ।

କ୍ଷେତ୍ରପାଳ ଆଉ ନାହାନ୍ତି । ଜୀବନର ଅଭିନୟ ତାଙ୍କର ସରିଯାଇଛି । କିନ୍ତୁ ବହୁକାଳଧରି ସେ ସ୍ମୃତ ହୋଇ ରହିବେ ମଣିଷର ସ୍ମୃତିରେ । ରଙ୍ଗମଞ୍ଚର ପର୍ଦ୍ଦା ପାଖରେ ତାଙ୍କର ହସ ଶୁଭିବ, ଶୁଭିବ ଦୃପ୍ତ କଣ୍ଠ । ପ୍ରତିଧ୍ୱନି ଶୁଭିବ ତାଙ୍କର ସ୍ୱରର । ଅଭିନୟରେ ସେ ଲୁହ ଭରି ଦେଇଥିଲେ ଦର୍ଶକର ଆଖିରେ, ଆଜି ତାଙ୍କର ପରଲୋକରେ ଅସଂଖ୍ୟ ଦର୍ଶକଙ୍କର ଲୁହ ଟୋପା ତାଙ୍କ ପାଇଁ ଅର୍ଘ୍ୟ ଢାଳିବ । ଫକୀର ଭାଇନା, ସେଇତ ତମର କ୍ଷେତ୍ରପାଳର ସାର୍ଥକତା ।



# ଲେଖକଙ୍କର ପରିଚୟ

'ଶ୍ରଦ୍ଧାଞ୍ଜଳି' ପୁସ୍ତକରେ ସନ୍ନିବେଶିତ ଲେଖାଗୁଡ଼ିକର ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ଜନ୍ମ ହୋଇଥିଲେ ୧୯୩୧ ମସିହା ଫେବୃଆରୀ ୯ ତାରିଖରେ ଓଡ଼ିଶାର ଗହନ ଅରଣ୍ୟାଞ୍ଚଳ ଭିତରେ । ବାପା ଥିଲେ ଜଙ୍ଗଲ ବିଭାଗର କର୍ମଚାରୀ । ବାପାଙ୍କର ବଦଳି ସହିତ ପୁଅର ପାଠପଢ଼ା ହୋଇଛି ଓଡ଼ିଶା, ବିହାର, ମଧ୍ୟପ୍ରଦେଶର ବିଭିନ୍ନ ସ୍ଥାନରେ । ଦାଦା ସ୍ୱାଧୀନତା ଆନ୍ଦୋଳନ ସହିତ ଜଡ଼ିତ ଥିଲେ ଏବଂ ଲେଖକଙ୍କ ଉପରେ ତାଙ୍କର ପ୍ରଭାବ ପଡ଼ିଥିଲା ପିଲାଦିନରୁ । ସନ୍ତ୍ରାସବାଦୀମାନଙ୍କ ପାଇଁ ବୋମା ବହନ କରି ଯାଇ ଯାଇ ବୋମା ଫୁଟି ସାଙ୍ଘାତିକ ଭାବରେ ଆହତ ହୁଅନ୍ତି ସ୍କୁଲ ଛାତ୍ର ଥିଲାବେଳେ । ସ୍କୁଲ ପାଠ ସାରି ଆସନ୍ତି ରେଭେନ୍ସା କଲେଜକୁ । ଛାତ୍ର ଆନ୍ଦୋଳନ ଏବଂ ବାମପନ୍ଥୀ ଆନ୍ଦୋଳନ ସହିତ ଜଡ଼ିତ ହୁଅନ୍ତି । ସେହି ସମୟରେ ବିଭିନ୍ନ ପ୍ରସ୍ତାବ, ଲିଫଲେଟ ଏବଂ ବୁକ୍‌ଲେଟ୍ ଲେଖୁ ଲେଖୁ ତାଙ୍କର କଲମ ଫିଟିଯାଏ । ବିଭିନ୍ନ ସମୟରେ ବର୍ଷ ବର୍ଷ ଧରି କାରାବାସ ସମୟରେ ଏବଂ ପଳାତକ ଭାବରେ ଆତ୍ମଗୋପନରେ ରହିଲା ବେଳେ ମଧ୍ୟ ଲେଖିବା କାମ ଅବ୍ୟାହତ ରହେ । ବିଭିନ୍ନ ଦେଶ ପରିଭ୍ରମଣରେ ଗଲାବେଳେ ଆପଣାର ଭ୍ରମଣ କାହାଣୀ ମଧ୍ୟ ପ୍ରକାଶିତ ହୁଏ ବିଭିନ୍ନ ପତ୍ରପତ୍ରିକାରେ । ଓଡ଼ିଶାର ଜନଜୀବନର ବିଭିନ୍ନ ବିଭାବକୁ ପ୍ରଭାବିତ କରିଥିବା ବ୍ୟକ୍ତିମାନେ ଧରାପୃଷ୍ଠରୁ ବିଦାୟ ନେଲା ପରେ ସେମାନଙ୍କ ପ୍ରତି 'ଶ୍ରଦ୍ଧାଞ୍ଜଳି' ବିଭିନ୍ନ ପତ୍ରପତ୍ରିକାରେ ସେ ପ୍ରକାଶିତ କରି ଆସିଛନ୍ତି । ଛୋଟ ଛୋଟ ବାକ୍ୟ, ସାନ ସାନ କଥାରେ ଏହି ଲେଖାଗୁଡ଼ିକର ଶୈଳୀ ଅଭିନବ । ସହଜରେ ମନକୁ ଛୁଇଁଯାଏ ଏବଂ ସେଇଯୋଗୁଁ ଅନେକ ପାଠକଙ୍କର ସନିର୍ବନ୍ଧ ଅନୁରୋଧର ଫଳ ହେଉଛି ଏହି ବହି 'ଶ୍ରଦ୍ଧାଞ୍ଜଳି' ।